# ଶ୍ରୀକ୍ଷେତ୍ରରେ ଗୋସାଣୀ ଉପାସନା ପରମ୍ପରା

ପଙ୍କଜ ସାହୁ
ଗବେଷକ

ଉତ୍କଳୀୟ ଧର୍ମଧାରଣା ତଥା ସାଂସ୍କୃତିକ ପରମ୍ପରାରେ ଶ୍ରୀକ୍ଷେତ୍ର ସଂସ୍କୃତିର ସ୍ଥାନ ସ୍ୱତନ୍ତ୍ର ଏବଂ ଏହାର ସ୍ୱକୀୟତା ଅନନ୍ୟ ସାଧାରଣ । ସର୍ବଧର୍ମସମନ୍ୱୟର ମହାନପୀଠ ଶ୍ରୀକ୍ଷେତ୍ର : ସମସ୍ତ ଧର୍ମ ସଂସ୍କୃତିର ମହନୀୟ ବିଭାବକୁ ଉଦାର ଆଲିଙ୍ଗନପୂର୍ବକ ମୌଳିକ ରୂପରେ ତାକୁ ମାନବ ସମାଜକୁ ଉପହାର ଦେବା ହେଉଛି ଶ୍ରୀକ୍ଷେତ୍ରର ସାଂସ୍କୃତିକ ବୈଶିଷ୍ଟ୍ୟ । ତେଣୁ ସର୍ବଦା ଶ୍ରୀକ୍ଷେତ୍ର ସଂସ୍କୃତିର ସ୍ୱାଦ, ଚମକ ଅଲଗା ବାରି ହୋଇ ଉଠେ । ଶ୍ରୀକ୍ଷେତ୍ର ଶାକ୍ତ ପରମ୍ପରାର ଏକ ପ୍ରଧାନ ପୀଠ । ଏହି ପୀଠରେ ଶାକ୍ତ ଦର୍ଶନର ବହୁ ଦିଗ, ପରୀକ୍ଷା ନିରୀକ୍ଷା ଦେଇ ବିକାଶ ଲାଭ କରିଆସିଛି । ଯେପରିକି ଶିବଶକ୍ତି ଉପାସନା ସର୍ବତ୍ର ଆଦୃତ ହୋଇଥିବା ସ୍ଥଳେ କୌଳଭୂମି ଶ୍ରୀକ୍ଷେତ୍ରରେ ଶାରଦୀୟ ଦୁର୍ଗାପୂଜା ସମୟରେ ଏକ ଅଭିନବ ସମୀକରଣ ବଳରେ ଦୁର୍ଗାମାଧବ ଉପାସନା ଅନୁଷ୍ଠିତ ହେଉଅଛି । ପୁନଶ୍ଚ ଶାକ୍ତପୀଠ ଶ୍ରୀକ୍ଷେତ୍ରରେ ଶାରଦୀୟ ଦୁର୍ଗୋତ୍ସବ ପ୍ରଚଳିତ, ମାତ୍ର ଏହାର ସ୍ୱାତନ୍ତ୍ର୍ୟ ଲକ୍ଷଣୀୟ । ଦଶହରାର ମହାପୂଜା ସମୟରେ ସୌମ୍ୟକାନ୍ତ କମନୀୟ ଗଠନ ବିଶିଷ୍ଟ ମୃଣ୍ମୟୀ ମହିଷାମର୍ଦ୍ଦିନୀ ଦୁର୍ଗା, ସର୍ବତ୍ର 'ଦେବୀ' ରୂପେ ପରିଗୃହୀତା ହୋଇଥିବାସ୍ଥଳେ ଇତ୍ୟବସରରେ ଶ୍ରୀକ୍ଷେତ୍ରରେ ବୃହଦାବୟବ ବିଶିଷ୍ଟ କଳାପାଟବତା ଶୂନ୍ୟ ମହିଷହନ୍ତ୍ରୀ ମୃତ୍ତିକା ନିର୍ମିତ ବିଗ୍ରହ ସମୂହ 'ଗୋସାଣୀ' ନାମରେ ଉପାସିତ ହୋଇଥାନ୍ତି । ସେହି ଦୃଷ୍ଟିରୁ ଓଡ଼ିଶାର ମୃଣ୍ମୟୀ ଦେବୀ ଉପାସନା ପରମ୍ପରାରେ ଶ୍ରୀକ୍ଷେତ୍ରର 'ଗୋସାଣୀ' ଉପାସନା ଏକ ବ୍ୟତିକ୍ରମ । ଶ୍ରୀକ୍ଷେତ୍ରର ଏହି ଗୋସାଣୀ ପୂଜା ଅନ୍ୟ କୌଣସି ପ୍ରଭାବରେ ପ୍ରଭାବିତ ନୁହେଁ । ପୁନଶ୍ଚ 'ଯାତ' କହିଲେ ସାଧାରଣତଃ ଦେବଦେବୀଙ୍କର ପୂଜାପାର୍ବଣକୁ ବୁଝାଇଥାଏ । ଯେପରିକି ଚୈତ୍ରମାସରେ ରାମଜନ୍ମ ଉପଲକ୍ଷେ ଅନୁଷ୍ଠିତ ସାହିଯାତ, ବୈଶାଖ ମାସରେ ଚନ୍ଦନଯାତ, ଆଷାଢ଼ ମାସରେ ରଥଯାତ, ଶ୍ରାବଣ ମାସରେ ଝୁଲଣଯାତ ସେହିପରି ଆଶ୍ୱିନ ଦଶହରାରେ 'ଗୋସାଣୀଯାତ' ଶ୍ରୀକ୍ଷେତ୍ର ଶାକ୍ତପରମ୍ପରା ତଥା ଶକ୍ତିବିଶ୍ୱାସର ଏକ ବଳିଷ୍ଠ ବିଭାଗ । ଏହା ହେଉଛି ଶ୍ରୀକ୍ଷେତ୍ରର ସମ୍ପୂର୍ଣ୍ଣ ମୌଳିକ ପରମ୍ପରା ତଥା ଶ୍ରୀକ୍ଷେତ୍ରବାସୀଙ୍କର ଏକାନ୍ତ ନିଜସ୍ୱ ସାଂସ୍କୃତିକ ପରିକଳ୍ପନା । କାରଣ ଶ୍ରୀକ୍ଷେତ୍ର ବ୍ୟତୀତ ଅନ୍ୟ



କୁତ୍ରାପି ଗୋସାଣୀ ପୂଜା ଅନୁଷ୍ଠିତ ହେଉଥିବାର ଦୃଷ୍ଟାନ୍ତ ମିଳେ ନାହିଁ । ଅନ୍ୟତ୍ର ଅନୁଷ୍ଠିତ ଶାରଦୀୟ ଦୁର୍ଗାପୂଜା ପ୍ରକରଣକୁ ଦେବୀଯାତ କୁହାଯାଉଥିଲାବେଳେ ଶ୍ରୀକ୍ଷେତ୍ରରେ ଏହା ଗୋସାଣୀଯାତ ନାମରେ ପ୍ରସିଦ୍ଧ । ଅତଏ ଦୁର୍ଗା: ଗୋସାଣୀ ନାମରେ, ଦୁର୍ଗାପୂଜା: ଗୋସାଣୀ ପୂଜା ନାମରେ ଓ ଦେବୀଯାତ, ଗୋସାଣୀଯାତ ନାମରେ ଶ୍ରୀକ୍ଷେତ୍ର ସଂସ୍କୃତିର ସ୍ୱାତନ୍ତ୍ର୍ୟ ଉଦ୍‌ଘୋଷଣା କରିଥାଏ । ଏହି ପରିପ୍ରେକ୍ଷୀରେ ପ୍ରାସଙ୍ଗିକତା ଦୃଷ୍ଟିରୁ ପାଠକମାନଙ୍କ ଅବଗତି ନିମନ୍ତେ 'ଗୋସାଣୀର ଶାବ୍ଦିକ ପରିଭାଷା ସମ୍ବନ୍ଧରେ ଆଲୋକପାତ କରିବା ଅପରିହାର୍ଯ୍ୟ ମନେହୁଏ ।

ସ୍କନ୍ଦ ପୁରାଣୋକ୍ତ ଆଖ୍ୟାୟିକା ଅନୁଯାୟୀ ସ୍ୱୟଂ ବିଷ୍ଣୁ ସ୍ୱୀୟ ଆୟୁଧରାଜ ସୁଦର୍ଶନ ଚକ୍ରର ପ୍ରତିଷ୍ଠା ନିମନ୍ତେ ପ୍ରସିଦ୍ଧ କୌଳପୀଠ ଶ୍ରୀକ୍ଷେତ୍ରର ଐଶାନ୍ୟକୋଣରେ ମହୋଦଧି ତଟରେ ଯେଉଁ ଚକ୍ରତୀର୍ଥ ସ୍ଥାପନ କରିଥିଲେ, ସେଠାରେ ଆଦ୍ୟାଶକ୍ତି ତପସ୍ୟା ନିମଗ୍ନ ଥିବା





ଅବସରରେ ଦେବର୍ଷି ନାରଦଙ୍କ ଦ୍ୱାରା ପ୍ରରୋଚିତ ହୋଇ ଦେବକଣ୍ଟକ ମହିଷାସୁର ସଦଳବଳେ ସେଠାରେ ପହଞ୍ଚି ରୂପଲାବଣ୍ୟମୟୀ ଦେବୀଙ୍କର ଅଲୌକିକ ସୌନ୍ଦର୍ଯ୍ୟରେ ପ୍ରଲୁବ୍‌ଧ ହୋଇ ତାଙ୍କୁ ପତ୍ନୀ ରୂପେ ପାଇ ଉପଭୋଗ କରିବା ନିମିତ୍ତ ଗର୍ବୋଦ୍ଧତ ଭାବେ ପ୍ରସ୍ତାବ ଦେବାକ୍ଷଣି ଦେବୀ ଅଟ୍ଟହାସ କରିବାକୁ ଲାଗିଲେ । ତାଙ୍କର ସେହି ଅଟ୍ଟହାସରୁ ଅସ୍ତ୍ରଶସ୍ତ୍ର ଧାରିଣୀ ଶତସହସ୍ର ଯୋଗିନୀ ଆବିର୍ଭୂତ ହୋଇ ଅସୁରବଳଙ୍କୁ ସଂହାର କଲେ । ତଥାପି ଦେବୀଦୁର୍ଗା ମହିଷା ନିଧନରେ କୃତକାର୍ଯ୍ୟ ହୋଇନପାରି ପ୍ରଚଣ୍ଡ କ୍ରୋଧ ପ୍ରକାଶ କଲେ । ଦେବୀଙ୍କର ଏହି କ୍ରୋଧସମ୍ଭୂତା ଭୟଙ୍କର ରକ୍ତପାୟୀ ଦୁଷ୍ଟାଦେବୀମାନଙ୍କ ସହାୟତାକ୍ରମେ ମହାମାୟା ଦୁର୍ଗା, ମହିଷାସୁର ହନନରେ ସଫଳୀକୃତ ହେଲେ । ଅସୁର ବିନାଶ ପରେ ମହାମାୟାଙ୍କ ନିର୍ଦ୍ଦେଶକ୍ରମେ ଉକ୍ତ ପାର୍ଶ୍ୱଚରୀ/ଅନୁଚରୀ ଦେବୀଗଣ ଓଡ଼ିଶାର ବିଭିନ୍ନ ସ୍ଥାନରେ ଅବସ୍ଥାନ ପୂର୍ବକ ସେହି ଦିନଠାରୁ ପୂଜାପାଇ ଆସୁଛନ୍ତି । ଜ୍ୟେଷ୍ଠ ପୂର୍ଣ୍ଣିମା ପରେ ଅଣସର କାଳରେ ଶ୍ରୀଜଗନ୍ନାଥ ମହାପ୍ରଭୁ ନିରୋଧନ ଗୃହରେ ଅବସ୍ଥାନ କରୁଥିବା ସମୟରେ ଶ୍ରୀକ୍ଷେତ୍ରରେ ଏହି ଦେବୀମାନଙ୍କର ଅଦୃଶ୍ୟ ସମାବେଶ ହୋଇଥାଏ । ସେମାନଙ୍କ ମଧ୍ୟରୁ କ୍ରୋଧସମ୍ଭୂତା ଦୁଷ୍ଟାଦେବୀମାନେ ରଥଯାତ୍ରାପରେ ଅଧରପଣା ଖାଇ ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ କରୁଥିବା ସ୍ଥଳେ ଦେବୀଙ୍କର ଅଟ୍ଟହାସରୁ ଉଦ୍ଭବ ଅନୁଚରୀଗଣ ଶ୍ରୀକ୍ଷେତ୍ରରେ ଅଶରୀରୀ ଭାବରେ ଅପେକ୍ଷା କରିଥାନ୍ତି । ଏହି ଅଶରୀରୀ ଯୋଗିନୀମାନଙ୍କୁ ସ୍ଥୂଳ ରୂପରେ ରୂପାୟିତ କରି ଅର୍ଥାତ୍ ମୃତ୍ତିକା ନିର୍ମିତ ଗୋସାଣୀ ବିଗ୍ରହଙ୍କୁ ପୂଜା କରିବା ପରେ ଦଶହରା ପରିସମାପ୍ତିରେ ବିଦାୟ ଦିଆଯାଇଥାଏ । ତେଣୁ ଭାଷାକୋଷ ପ୍ରଣେତା ଏହି 'ଗୋସାଣୀ' ଶବ୍ଦଟିକୁ ମାତୃ ରୂପରେ ରକ୍ତମୁଖୀ ଦେବୀଙ୍କର ପାର୍ଶ୍ୱଚରୀ, ପିଶାଚୀ, ଡାହାଣୀ ପ୍ରଭୃତି ଦୁଷ୍ଟାଦେବୀ ବିଶେଷ ବୋଲି ଅଭିହିତ (୧) କରିଛନ୍ତି । ମାଦଳାପାଞ୍ଜି ଅନୁଶୀଳନରୁ ଜଣାଯାଏ ଯେ 'ଚୁଡ଼ଗଙ୍ଗ କର୍ଣ୍ଣାଟ ଦେସରୁ ଆସି ଓଡ଼ିଶା ଗୋସାଣୀଙ୍କୁ ସମସ୍ତ କିଲିଲେ' (୨) ଅର୍ଥାତ୍ ଦୁଷ୍ଟାଦେବୀଙ୍କୁ ତନ୍ତ୍ର ପ୍ରୟୋଗରେ ବନ୍ଧନ କଲେ । ଏହି ଗୋସାଣୀ ଶବ୍ଦଟି ଭୟ ଉତ୍ପାଦନକାରୀ ଶକ୍ତି । କୌଣସି ଭୂତପ୍ରେତ ଶରୀର ପ୍ରବେଶ/ଶରୀର ଗ୍ରାସ କଲେ ବ୍ୟକ୍ତିର ଅସ୍ୱାଭାବିକ ତଥା ଉଦ୍ଭଟ କାର୍ଯ୍ୟକଳାପ ଦେଖି ଲୋକମାନେ ସ୍ୱତଃ ଆଶଙ୍କା ପ୍ରକଟକରି କହିଥାନ୍ତି 'ତାକୁ ଗୋସାଣୀ ଲାଗିଛି' । ଭୂତନାଥ ଅର୍ଥ ଶ୍ମଶାନବାସୀ ଶିବ, ତେଣୁ ତାଙ୍କର ଭୂତପ୍ରେତ ରୂପିଣୀ ଶକ୍ତି ଗୋସାଣୀ ହେବା ଅନୁମେୟ ।

'ଗୋସ୍ୱାମିନୀ' ଶବ୍ଦରୁ ଗୋସାଣୀ ହୋଇଅଛି (୩) । ଗୋସ୍ୱାମୀ ଶବ୍ଦରେ ସ୍ତ୍ରୀ ଲିଙ୍ଗରେ ଈନ୍ ପ୍ରତ୍ୟୟ ଯୋଗରେ ଗୋସ୍ୱାମିନୀ ଶବ୍ଦର ସୃଷ୍ଟି । ଗୋସ୍ୱାମୀ ଅର୍ଥ ବୃଷାରୋହୀ ଶିବ, ତେଣୁ ଗୋସ୍ୱାମିନୀ ପରମଶିବା ଦୁର୍ଗା ଅଟନ୍ତି । ପୁନଶ୍ଚ ଗୋସ୍ୱାମୀ ଅର୍ଥ ଯେହେତୁ ମାଧବ, ଗୋସ୍ୱାମିନୀ, ମାଧବୀ ବା ଦୁର୍ଗା ହେବା ନିଶ୍ଚିତ । ପ୍ରକାଶ ଥାଉ କି, ଦୁର୍ଗାମାଧବ ଉପାସନାର ମୌଳିକ ପୀଠ ଶ୍ରୀକ୍ଷେତ୍ରରେ ମାଧବଙ୍କ ସହିତ ଉପାସିତା ଦୁର୍ଗା ଯେ ମାଧବୀ, ତାହା ଉପଯୁକ୍ତ ଅର୍ଥକୁ ପୁଷ୍ଟି କରୁଛି । ବିଶେଷତଃ ଗୋସ୍ୱାମୀ ଯଦି ସ୍ୱୟଂ ବିଷ୍ଣୁ ହୁଅନ୍ତି, ତେବେ ଗୋସ୍ୱାମିନୀ ବୈଷ୍ଣବୀ ଶକ୍ତି ବ୍ୟତୀତ ଅନ୍ୟ କେହି ନୁହନ୍ତି । ଶ୍ରୀକ୍ଷେତ୍ରରେ ଅନନ୍ତବୀର୍ଯ୍ୟା ବୈଷ୍ଣବଶକ୍ତି ନିତ୍ୟ କୈବଲ୍ୟଭୋଜିନୀ ରୂପେ ଉପାସିତ । ଏତଦ୍‌ବ୍ୟତୀତ ଗୋସ୍ୱାମୀର ଅପଭ୍ରଂଶ 'ଗୋସେଇଁ'ର ସ୍ତ୍ରୀଲିଙ୍ଗରେ ଗୋସେଇଁଆଣୀକୁ 'ଗୋସ୍ୱାମିନୀ>ଗୋସାମଣି>ଗୋସାଣୀ କୁହାଯିବା ଅସମୀଚୀନ ନୁହେଁ । ଓଡ଼ିଶାରେ ଗୋସେଇଁବାପ, ଗୋସେଇଁ ମା' (Paternal-Grand Mother) ଶବ୍ଦର ବହୁଳ ପ୍ରୟୋଗ ପ୍ରଚଳିତ । ରାଜପରିବାରରେ ରାଜକୁମାର ଓ ରାଜକୁମାରୀଙ୍କୁ ଯଥାକ୍ରମେ ଜେମାମଣି ଓ ଜେମାମଣି ରୂପେ ତାଙ୍କର ପିତା ରାଜାଙ୍କୁ 'ମଣିମା' ସର୍ବୋପରି ଗୋସେଇଁ ମା' ରାଜମାତାଙ୍କୁ 'ଗୋସାମଣୀ' ଭାବେ ରାଜ ସମ୍ବୋଧନ କରାଯାଏ । ସେହିପରି ଦେବତାଙ୍କୁ ମଧ୍ୟ ମଣିମା ନାମରେ ଦେବ-ସମ୍ବୋଧନ, ଆମ ସଂସ୍କୃତିରେ ଏକ ଚିରାଚରିତ ବିଧି । ଦେବତା ଜଗତପିତା ହେଲେ ସେହି ମଣିମାଙ୍କର ମା' ଅର୍ଥାତ୍ ଦେବମାତା ଗୋସାମଣୀ ହେବା ସ୍ୱାଭାବିକ । ଏହି ନିୟମରେ ଦେବୀ ଯେହେତୁ ଆମର ମା', ତେବେ ତାଙ୍କର ମା' ଗୋସାମଣୀ ବା ଆଦ୍ୟାଶକ୍ତି ହେବା ସମୀଚୀନ । ମତାନ୍ତରେ 'ଯୋସାମଣୀ' ଅପଭ୍ରଂଶରୁ (ଯୋସାମଣି>ଗୋସାମଣି>ଗୋସାଣି) 'ଗୋସାଣି' ଶବ୍ଦର ଉଦ୍ଭବ ହୋଇଅଛି । ଯୋସାମଣି ଅର୍ଥ ଶ୍ରେଷ୍ଠ ନାରୀ । ଆଧ୍ୟାତ୍ମିକ ଚିନ୍ତନରେ ଆଦ୍ୟାଶକ୍ତିଙ୍କୁ ଶ୍ରେଷ୍ଠ ନାରୀ, ଜଗଜ୍ଜନନୀ ରୂପେ ଆଖ୍ୟାୟିତ କରାଯାଇଛି । ସ୍ଥୂଳତଃ ଗୋସ୍ୱାମୀ ଅର୍ଥ ଯଦି ପ୍ରଭୁ (ମାଲିକ) ବା ଦେବତା ଅଟନ୍ତି, ତେବେ ଗୋସ୍ୱାମୀନୀ ବା ଗୋସାମଣି ସାଧାରଣତଃ, ଦେବୀ ବିଶେଷଙ୍କୁ ବୁଝାଇବା ଅବଶ୍ୟମ୍ଭାବୀ । ତେଣୁ ପୁରାଣମାନଙ୍କରେ ଦୁର୍ଗା (୪), ଚାମଣ୍ଡା (୫), ମଙ୍ଗଳା (୬) ପ୍ରଭୃତି ଦେବୀଗଣ ଯଥାର୍ଥରେ ଗୋସାମଣି ରୂପେ ସମ୍ବୋଧିତ ହୋଇଛନ୍ତି । ପୁନଶ୍ଚ ଗୋସାଣୀ ଅର୍ଥ ଯୋଗିନୀ (୭) । ଏଣୁ ଯୋଗିନୀ ତତ୍ତ୍ୱ ଆଧାରରେ ଶ୍ରୀକ୍ଷେତ୍ରରେ ମୃଣ୍ମୟ ଗୋସାଣୀ ବିଗ୍ରହ ଉପାସନା (୮) ହେଉଛି ଏହାର ସାଂସ୍କୃତିକ ବୈଶିଷ୍ଟ୍ୟ । ଦେବ ଓ ଦେବୀ ଉଭୟେ ସ୍ତ୍ରୀ-ପୁରୁଷବାଚକ ଅଟନ୍ତି ବୋଲି 'ଅମରକୋଷ'ରେ ନିର୍ଦ୍ଦେଶିତ ହୋଇଛି । ତେଣୁ ବ୍ୟାକରଣ ନିୟମ ଅନୁସାରେ ଗୋସାଣି/ଗୋସାଣୀ ଉଭୟ ସଠିକ୍ ହେଲେ ହେଁ ଦେବୀମାନଙ୍କୁ 'ଗୋସାଣୀ' କହିବା ଅଧିକ ଯୁକ୍ତିଯୁକ୍ତ ମନେହୁଏ । ଉପଯୁକ୍ତ ତର୍କଣା/ତର୍ଜମା ସବୁ ଶ୍ରୀକ୍ଷେତ୍ରରେ ଉପାସିତ ଗୋସାଣୀମାନଙ୍କ ପ୍ରତି ଅଳ୍ପ ବହୁତେ ପ୍ରଯୁଜ୍ୟ ହେଲେ ହେଁ ବାସ୍ତବରେ ଏହି 'ଗୋସାଣୀ' ହେଉଛି ମୁଖ୍ୟତଃ ଏକ ଗ୍ରାମ୍ୟ ପ୍ରୟୋଗ ବା ନିମ୍ନସ୍ତରୀୟ ଲୋକାଚାର । ଯେପରି ଘଟରୁ ଜୀବ ଚାଲିଗଲା ପରେ ସେହି ବ୍ୟକ୍ତି 'ମରି ଗୋସାଣୀ ହେଲାଣି' ବୋଲି ଓଡ଼ିଶାରେ ଲୋକୋକ୍ତି ରହିଛି, ସେହିପରି ଶ୍ରୀକ୍ଷେତ୍ରରେ ଅନୁଷ୍ଠିତ ଗୋସାଣୀମାନଙ୍କର

ପୂଜାବିଧିକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ମୃଣ୍ମୟୀ ଦେବୀବିଗ୍ରହରେ ଦୈବୀଶକ୍ତିକୁ ଆବାହନ କରାଯାଇ ତାଙ୍କୁ ଚିନ୍ମୟୀରୂପେ ଉପାସନା ପରିସମାପ୍ତିରେ ମନ୍ତ୍ରମାଧ୍ୟମରେ ଶକ୍ତିଙ୍କୁ ବିସର୍ଜନ କରିଦେବା ପରେ ମାଟି ନିର୍ମିତ ପ୍ରୋକ୍ତ ପ୍ରତିକୃତିଗୁଡ଼ିକୁ ଗୋସାଣୀ ବ୍ୟତୀତ ଆଉ କ'ଣ କୁହାଯାଇପାରେ ? ଉପାସନାପୀଠରୁ ବିସର୍ଜିତ ମୂର୍ତ୍ତି, (ଶବ/ପ୍ରେତବୋଧକ)ମାନଙ୍କୁ ମେଳତାକୁ ଅଣା ଯାଉଥିବାରୁ ସେମାନଙ୍କୁ 'ଗୋସାଣୀ' ନାମରେ ଅଭିହିତ କରିବା ଯଥାର୍ଥ । ସେ ଯାହାହେଉନା କାହିଁକି ଓଡ଼ିଶାର ଏକ ଲୋକୋକ୍ତି ଆଧାରରେ ଅଶରୀରୀ ପର୍ଯ୍ୟାୟର ଦେବୀଙ୍କୁ ଶ୍ରୀକ୍ଷେତ୍ର ତା'ର ସାଂସ୍କୃତିକ ପ୍ରେକ୍ଷାପଟରେ ରୂପାୟନ କରି ସମାଜର ନିମ୍ନବର୍ଗଠାରୁ ଆରମ୍ଭ କରି ଉପରସ୍ତର ପର୍ଯ୍ୟନ୍ତ ଏହି ଗୋସାଣୀ ଉପାସନାକୁ ଗଣାଭିମୁଖୀ କରାଇ ତା'ର ସ୍ୱାତନ୍ତ୍ର୍ୟ ହିଁ ପ୍ରତିପାଦନ କରିଆସିଛି ।

ଶ୍ରୀଜଗନ୍ନାଥ ସଂସ୍କୃତିରେ ଯେପରି ତା'ର ସ୍ୱକୀୟତା ବିଦ୍ୟମାନ, ସେହିପରି ଶ୍ରୀକ୍ଷେତ୍ରରେ ଗୋସାଣୀ ଉପାସନାରେ ତା'ର ଅନ୍ୟତମ ମୌଳିକତା ସୁରକ୍ଷିତ । ଶ୍ରୀକ୍ଷେତ୍ରର ଅଧିବାସୀ ତା'ର ସାଂସ୍କୃତିକ ପରିସର ମଧ୍ୟରେ ନୂଆକିଛି ଗୋଟାଏ କରି ଦେଖାଇବା ଲାଗି ସତତ ଯତ୍ନଶୀଳ । ଶ୍ରୀକ୍ଷେତ୍ରରେ ସର୍ବମଙ୍ଗଳ ଶ୍ରୀଜଗନ୍ନାଥ ଯେହେତୁ ବିଦ୍ୟମାନ, ତେଣୁ ଦୁର୍ଗତିର ପରିକଳ୍ପନା ସେଠାରେ ଅକଳ୍ପନୀୟ । ଦୁର୍ଗତିର ଅବର୍ତ୍ତମାନରେ ଦୁର୍ଗତିନାଶିନୀ ଦୁର୍ଗାଙ୍କ ବିକଳ୍ପରେ ଦଶହରା ସମୟରେ ଶ୍ରୀଜଗନ୍ନାଥଙ୍କ ସେବକଗୋଷ୍ଠୀ ଅବସ୍ଥାନ କରୁଥିବା ସାହିବସ୍ତିମାନଙ୍କରେ ଜାଗାଆଖଡ଼ାର ସାଙ୍ଗ/ଭେଣ୍ଡିଆମାନଙ୍କ ଉଦ୍ୟମରେ ଗୋସାଣୀ ବିଗ୍ରହ ନିର୍ମାଣ କରାଯାଇ ପ୍ରତିବର୍ଷ ପୂଜା ହୋଇଆସୁଅଛି । ତତ୍‌ସମ୍ବନ୍ଧୀୟ ସମ୍ୟକ୍ ଉପସ୍ଥାପନା ନିମ୍ନରେ ପ୍ରଦତ୍ତ ହେଲା । ପୁରାଣବର୍ଣ୍ଣିତ ତଥ୍ୟାନୁସାରେ ଜନ୍ମାଷ୍ଟମୀ ପରବର୍ତ୍ତୀ ପ୍ରଭାତରେ ଦେବକୀଙ୍କଠାରୁ ଅଷ୍ଟମସନ୍ତାନ ରୂପେ ଜନ୍ମ ଯୋଗମାୟା/ଏକାନଂସା/ବିଜୁଳି କନ୍ୟାଙ୍କୁ ନେଇ କଂସ ଶିଳାରେ ପିଟିବା ଅବସରରେ ଯେତେବେଳେ ଦେବୀ ଶୂନ୍ୟକୁ ଉଠିଯାଇ କଂସ ମୃତ୍ୟୁର ନିୟାମକଙ୍କ ସମ୍ପର୍କରେ ସମ୍ବାଦ ଦେଲେ ଠିକ୍ ସେହି ମୁହୂର୍ତ୍ତରୁ ଦୁରାଚାର ଉପରେ ଅଲୌକିକ ଶକ୍ତି ବିଜୟର ସାଙ୍କେତିକ ସୂଚନା ହିଁ ମିଳିଥିଲା । ସେହି ପବିତ୍ର ଭାଦ୍ରକୃଷ୍ଣ ନବମୀ ତିଥିରେ ମହାଶକ୍ତିଙ୍କର ମୃଣ୍ମୟ ମୂର୍ତ୍ତିଗଠନ ନିମିତ୍ତ ଔପଚାରିକ ପୂଜାର୍ଚ୍ଚନା କରାଯାଇ ମାଟି ସଂଗ୍ରହ କରାଯାଏ । ଶ୍ରୀକ୍ଷେତ୍ରର ବିଭିନ୍ନ ପୂଜାମଣ୍ଡପର କର୍ମକର୍ତ୍ତା ତଥା ଜାଗାଆଖଡ଼ାର ସାଙ୍ଗମାନେ ଭୋଗ ନୈବେଦ୍ୟ ସହ ପଟୁଆରରେ ଯାଇ ବିଭିନ୍ନ ଜଳଘାଟରେ ଶୁଭବେଳା ଦେଖି ଉପସ୍ଥିତ ହୁଅନ୍ତି । ସେଠାରେ ଶ୍ରୀଗଣେଶ ପୂଜା ଓ ଦଶଦିଗପାଳ ପୂଜାସହ କଳସୀ ସ୍ଥାପନ ଓ ହୋମଆଦି ଆନୁଷଙ୍ଗିକ ପୂଜାର୍ଚ୍ଚନା ସମାପନାନ୍ତେ କର୍ତ୍ତା ମାଟି ସଂଗ୍ରହ କରି ତହିଁରେ ସିନ୍ଦୂର ସ୍ଥାପନ କରନ୍ତି । ଶଙ୍ଖ ହୁଳହୁଳି ତଥା ବାଦ୍ୟଧ୍ୱନି ମଧ୍ୟରେ ଧୂପ ନୈବେଦ୍ୟ ପ୍ରଦାନପୂର୍ବକ ସିନ୍ଦୂରଶିଖା ଲଗାଇଥିବା ଓ ଫୁଲମାଳ ପକାଇଥିବା ସାହିଭେଣ୍ଡିଆମାନେ ଶଗଡ଼/ଟ୍ରଲିରେ ସେହିମାଟିକୁ ପୂଜାମଣ୍ଡପକୁ ଆଣିଥାନ୍ତି । ଏହାକୁ 'ମାଟିଯାତ୍ରା' କୁହାଯାଏ ଓ ସଂଗୃହିତ ମାଟିକୁ 'ଗୋସାଣୀମାଟି' ମଧ୍ୟ କୁହାଯାଏ । ଏହି ମାଟିଯାତ୍ରାଠାରୁ ଦଶହରା ପ୍ରାୟ ଦେଢ଼ମାସ ଥିଲେ ହେଁ ବାସ୍ତବରେ ଏହିଠାରୁ ହିଁ ଗୋସାଣୀ ପୂଜାର ଉପକ୍ରମ ଆରମ୍ଭ ହୋଇଥାଏ । ପ୍ରୋକ୍ତ ନନ୍ଦୋତ୍ସବଠାରୁ ଷଷ୍ଠୀଓଷା ପର୍ଯ୍ୟନ୍ତ ଏହି ମାଟି ଅନୁକୂଳ କାର୍ଯ୍ୟ ବିଭିନ୍ନ ପୂଜାମଣ୍ଡପ ଦ୍ୱାରା ବିଭିନ୍ନ ସମୟରେ ଶୁଭଦିନ ଦେଖି ସମାହିତ ହେବାପରେ ମୂର୍ତ୍ତି ନିର୍ମାଣ କାର୍ଯ୍ୟ ତ୍ୱରାନ୍ୱିତ ହୋଇଥାଏ । ବୃତ୍ତିଗତଭାବେ ପୂର୍ବପୁରୁଷଙ୍କଠାରୁ ଉତ୍ତରାଧିକାର ସୂତ୍ରରେ ଜ୍ଞାନ ହାସଲ କରିଥିବା ଅଭିଜ୍ଞ କାରିଗରମାନେ ଏହି ମାଟିରେ ଆବଶ୍ୟକ ଉପଯୋଗୀ ମାଟି ମିଶାଇ ବାଉଁଶ-ନଡ଼ା-ସୁତୁଲିବନ୍ଧା ଡାଞ୍ଚା ଉପରେ ଏହି ମାଟିବୋଳି ଗୋସାଣୀ ମୂର୍ତ୍ତି ସହିତ ଅନ୍ୟାନ୍ୟ ମୂର୍ତ୍ତିଗଠନ କରିଥାନ୍ତି । ଏତଦ୍‌ଭିନ୍ନ ମା'ଙ୍କର ବାହନ ତଥା ଆୟୁଧ ମଧ୍ୟ ବିଧି ଅନୁସାରେ ଏହି ମାଟି ବ୍ୟବହୃତ ହୋଇ ନିର୍ମାଣ କରାଯାଇଥାଏ । ମୂର୍ତ୍ତି ନିର୍ମାଣ କାର୍ଯ୍ୟ ପ୍ରାୟତଃ ମହାଳୟା ଅମାବାସ୍ୟା ପର୍ଯ୍ୟନ୍ତ ଅବ୍ୟାହତ ରହେ ।

**ଶ୍ରୀକ୍ଷେତ୍ରରେ ମହିଷହନ୍ତ୍ରୀ ଦୁର୍ଗା :** ଗୋସାଣୀ ନାମରେ ଉପାସିତ ହେଉଥିଲେ ହେଁ ଗୋସାଣୀମାନଙ୍କ ବିଗ୍ରହକଳା, ଦୁର୍ଗାଙ୍କଠାରୁ ଯେ ସମ୍ପୂର୍ଣ୍ଣ ଭିନ୍ନ, ଏହା ନିଃସନ୍ଦେହ । ଆକୃତି ଦୃଷ୍ଟିରୁ ଉଭୟଙ୍କ ସାମଞ୍ଜସ୍ୟ ଥିଲେ ହେଁ ଦୁର୍ଗାଦେବୀଙ୍କ ମୁଦ୍ରା ଅପେକ୍ଷା ଶ୍ରୀକ୍ଷେତ୍ରରେ ପୂଜିତ ଗୋସାଣୀମାନଙ୍କର ଭଙ୍ଗୀ ସମ୍ପୂର୍ଣ୍ଣ ଭିନ୍ନ ଅଟେ । ଦୁର୍ଗାମୂର୍ତ୍ତିଗୁଡ଼ିକ ସୌମ୍ୟା ହୋଇଥିବା ସ୍ଥଳେ ଗୋସାଣୀ ବିଗ୍ରହଗୁଡ଼ିକ ପୃଥୁଳ ଶରୀର ଅଟନ୍ତି । ପୁନଶ୍ଚ ଗୋସାଣୀଙ୍କର ଗଠନଶୈଳୀ ଯେପରି ପ୍ରାଚୀନ ସେହିପରି ପାରମ୍ପରିକ ମଧ୍ୟ । ଅନ୍ୟତ୍ର ଉପାସିତ ମୃଣ୍ମୟୀ ଦୁର୍ଗାଙ୍କ ସଦୃଶ ଏହି ଗୋସାଣୀ ବିଗ୍ରହଗୁଡ଼ିକ କଟକୀ କିମ୍ବା ବେଙ୍ଗଲ ଶୈଳୀର ମୀନାକଟା ସୂକ୍ଷ୍ମ ପରିପାଗର ମୂର୍ତ୍ତି ନୁହନ୍ତି କି ମନ୍ଦିର ଗାତ୍ର ଖୋଦିତ ଶାଳଭଞ୍ଜିକା ବିଗ୍ରହ ସଦୃଶ କ୍ଷୀଣକଟି ବିଶିଷ୍ଟ କୃଶାଙ୍ଗୀ ନୁହନ୍ତି । ବରଂ କୋଣାର୍କ ମନ୍ଦିରରେ ସ୍ଥାନିତ ବାଦ୍ୟରତା ରମଣୀମାନଙ୍କ ବିଗ୍ରହ ସଦୃଶ ବିଶାଳବପୁସମ୍ପନ୍ନା ଅଟନ୍ତି । ଏହି ବୃହଦାବୟବ ବିଶିଷ୍ଟ ମୂର୍ତ୍ତିମାନଙ୍କୁ ସ୍ଥାନୀୟ ଲୋକେ ବଢ଼ିଆଳ ଭୂଆସୁଣୀ/ଧାନଉଷୁଆଁ ମାଇକିନିଆ ବୋଲି ଅଭିହିତ କରିଥାନ୍ତି । ସେମାନଙ୍କର ଏପରି ମତପୋଷଣ କରିବା ସ୍ୱାଭାବିକ । କାରଣ ଦୁଇ ହସ୍ତ ବିଶିଷ୍ଟ ଶରୀର ତୁଳନାରେ ଦଶହସ୍ତ ବିଶିଷ୍ଟ ବିଗ୍ରହର କଳେବର ଆନୁପାତିକ ଭିତ୍ତିରେ ଯେପରି ହେବା ଉଚିତ, ଶିଳ୍ପୀ ସେଥିପ୍ରତି ସଚେତନ ରହି ବିଶାଳକାୟ ଗୋସାଣୀ ବିଗ୍ରହ ନିର୍ମାଣ କରିଥାନ୍ତି । ଏମାନେ ସେହି ଦୃଷ୍ଟିରୁ ଆକର୍ଷଣୀୟ ହୋଇଥାନ୍ତି, କାହିଁକି ନା ଏମାନେ ଯେତିକି ଲମ୍ବା ସେତିକି ଚଉଡ଼ା, ଯେତିକି ବଳିଷ୍ଠ ସେତିକି ସ୍ଥୂଳ । ଏଠାରେ ଗୋଟିଏ କଥା ସ୍ପଷ୍ଟ କରିଦେବା ବିଧେୟ ଯେ ଅତୀତରେ ବାହିଏ ବାହିଏ ପିଉଳଖଡୁ ପିନ୍ଧି ମୁଣ୍ଡରେ ଗୋଜାକାଠି ଖୋସିଥିବା ବଳିଷ୍ଠ ଓଡ଼ିଆନାରୀ ବୈଦେଶିକ/ବର୍ଗୀ/





ଲମ୍ପଟମାନଙ୍କର ସମ୍ମୁଖୀନ ହେବାପାଇଁ ସମର୍ଥା ଥିଲେ । 'ନାରୀ ଅବଳା' - ଏ ଉକ୍ତି ଓଡ଼ିଆ ନାରୀ ପାଖରେ ଭୁଲ୍ ପ୍ରମାଣିତ ହୋଇଥିଲା । ସେହି ଓଡ଼ିଶୀ ଶୈଳୀର କୁନ୍ଦିଲା କୁନ୍ଦିଲା ପେଶୀବହୁଳ ବାହୁ, ଘନଜଘନୀ, ନିତମ୍ବବତୀ ତଥା ଉନ୍ନତ ବକ୍ଷୋଜରେ ଭାରାକ୍ରାନ୍ତ ହୃଷ୍ଟପୁଷ୍ଟ ଶରୀର ବିଶିଷ୍ଟ ଷୋଡ଼ଶୀ ବିଗ୍ରହ ଏମାନେ । କାମଧେନୁ ସଦୃଶ ବୃହଦ୍ ପଦ୍ମାବିଶିଷ୍ଟ ଉଚ୍ଚକୁଚ ଶୋଭିନୀ ଏହି ଗୋସାଣୀ ମୂର୍ତ୍ତିଗୁଡ଼ିକୁ ଦେଖିଲେ, ସତେ ଯେପରିକି ସେମାନେ ବିଶ୍ୱତୃଷ୍ଣା ମେଣ୍ଟାଇବାରେ ସମର୍ଥା ବୋଲି ମନରେ ପ୍ରତ୍ୟୟ ଜନ୍ମେ । ପୁନଶ୍ଚ ଶ୍ରୀକ୍ଷେତ୍ରରେ ବିଶାଳକାୟ ରାବଣ, ଦର୍ପୀ ପରଶୁରାମ, ମହାବଳୀ ହନୁମାନ, ଧୂର୍ଜଟି ମହାଦେବ, ପୃଥୁଳକାୟ ଗଣେଶ ସମେତ ବିରାଟ ବିରାଟ ନାଗା ମୂର୍ତ୍ତି ନିର୍ମାଣ କରାଯାଇ ଗୋସାଣୀ ନାମରେ ପୂଜା କରାଯାଏ ।

ନିର୍ମାଣ କାର୍ଯ୍ୟ ଶେଷ ହେବାପରେ ଏହି ଗୋସାଣୀମାନଙ୍କୁ ପାରମ୍ପରିକ ପଟ୍ଟଚିତ୍ରର ମୌଳିକ ରଙ୍ଗରେ ଚିତ୍ରଣ କରାଯାଇ ସୋଲଜରିଜମ୍ବୁରାର ବିଭିନ୍ନ ଆଭରଣରେ ଆକର୍ଷଣୀୟ କରାଯାଏ । ଆଶ୍ୱିନ ଶୁକ୍ଳଷଷ୍ଠୀଦିନ ବିଭିନ୍ନ ଜଳଘାଟରୁ ଜଳ ଉତ୍ତୋଳିତ ହୋଇ କଳସ ବସିବା ପରେ ଧ୍ୟାନମନ୍ତ୍ର ଉଚ୍ଚାରଣ ମାଧ୍ୟମରେ ପ୍ରାଣ ପ୍ରତିଷ୍ଠା କରାଯାଇ, ପ୍ରୋକ୍ତ ମୃଣ୍ମୟୀ ମୂର୍ତ୍ତିଗୁଡ଼ିକରେ ଚିନ୍ମୟୀ ସତ୍ତା ପ୍ରକଟିତ ହୋଇଉଠେ । ଫଳରେ ଜଡ଼ବିଗ୍ରହ ଜୀବନ୍ତ ସଦୃଶ ପ୍ରତୀୟମାନ ହୁଏ । ଏକଦା କୌଣସି ଦୁର୍ବଳମନା ଆସନ୍ନପ୍ରସବା ନାରୀ ହୁଏତ ଏହି ଗୋସାଣୀ ମୂର୍ତ୍ତିମାନଙ୍କର ବିଶାଳତା ଦେଖି ଭୟବିହ୍ୱଳା ହୋଇ ତା'ର ଗର୍ଭପାତ ଘଟିଥିବାରୁ ପରିବାରର ବୟସ୍କା ମହିଳାମାନେ ଅନ୍ତଃସତ୍ତ୍ୱାମାନଙ୍କୁ ଗୋସାଣୀଙ୍କର ସମ୍ମୁଖୀନ ନହେବା ଲାଗି ବାରଣ କରିଥାନ୍ତି । କ୍ରମେ ଏହା ଏକ ବିଧିରେ ପରିଣତ ହୋଇଯିବା ଫଳରେ ଗର୍ଭବତୀମାନେ ଗୋସାଣୀ ଦେଖିବାକୁ ଆସନ୍ତି ନାହିଁ । ଗୋସାଣୀ ମୂର୍ତ୍ତିଗୁଡ଼ିକ ରକ୍ତମୁଖା ହେଲେ ମଧ୍ୟ ସେମାନଙ୍କର ମୁଖମଣ୍ଡଳରେ ପ୍ରତିଭାତ କମନୀୟତା ସହିତ ଭୀମ ଓ ରୁଦ୍ର ରୂପର ସମନ୍ୱୟ ହିଁ ଗୋସାଣୀ ମୂର୍ତ୍ତି ଗଠନ ଶୈଳୀର ଶୈଳ୍ପିକ ବିଶେଷତ୍ୱ ଅଟେ । ସେ ଯାହା ହେଉନା କାହିଁକି ଏ ମୂର୍ତ୍ତି ସନ୍ଦର୍ଶନରେ ସ୍ୱତଃ ଭକ୍ତି ଓ ବିଶ୍ୱାସ ଜାଗରିତ ହୋଇଉଠେ ।

ମହାମାୟା ଦୁର୍ଗାଙ୍କର ଏକ ସହସ୍ର ପର୍ଯ୍ୟାୟବାଚୀ ନାମ ଥିଲେ ହେଁ ଦଶହରା ସମୟରେ ରାଜ୍ୟରେ ଅନ୍ୟତ୍ର ଉପାସିତ ଦୁର୍ଗା, କେବଳ 'ଦୁର୍ଗା' ନାମରେ ହିଁ ପରିଚିତ, ଯେପରିକି ଷ୍ଟେସନ ବଜାର ଦୁର୍ଗା, ହାଟ ସାହି ଦୁର୍ଗା, ଚୌଧୁରୀ ମାର୍କେଟ ଦୁର୍ଗା, ରବିଟକିଜ୍ ଛକ ଦୁର୍ଗା ଇତ୍ୟାଦି । ମାତ୍ର ଇତ୍ୟବସରରେ ଶ୍ରୀକ୍ଷେତ୍ରରେ ଉପାସିତ ଗୋସାଣୀ ବିଗ୍ରହ କିନ୍ତୁ ଭିନ୍ନ ଭିନ୍ନ ନାମରେ ନାମିତ । ଏହି ନାମକରଣ ପୃଷ୍ଠଭୂମିରେ କିଛି ନା କିଛି ଐତିହ୍ୟ, ଶାସ୍ତ୍ରୀୟତା, ଜନଶ୍ରୁତି ତଥା କିମ୍ବଦନ୍ତୀ ଯୋଡ଼ି ହୋଇଯାଇଛି । ସେ ସମ୍ବନ୍ଧରେ ସବିସ୍ତୃତ ବିବରଣୀ ପ୍ରଦତ୍ତ ହେଲା ।

**କାକୁଡ଼ିଖାଇ :** ଶାକ୍ତତନ୍ତ୍ର ପୂଜାର ପ୍ରଥମ ପୀଠ ଶ୍ରୀକ୍ଷେତ୍ରରେ କ୍ଷେତ୍ରାଧୀଶ୍ୱରୀ ହେଉଛନ୍ତି ମା' ବିମଳା । ଶ୍ରୀମନ୍ଦିର ବଳୟିତ ମେଘନାଦ ପ୍ରାଚୀର ବହିର୍ଦେଶରେ ଦକ୍ଷିଣ-ପୂର୍ବ କୋଣସ୍ଥିତ ବଣିଆପଟିରେ ଫେଜନଳା ସଂଲଗ୍ନ ଏକ କ୍ଷୁଦ୍ର ମନ୍ଦିରରେ ବିମଳାଙ୍କ ପ୍ରତିନିଧି ରୂପେ ବିମଳେଇଙ୍କ ପାଷାଣ ବିଗ୍ରହ ବିରାଜିତ । ଏହାଙ୍କର ଉଭୟ ପାର୍ଶ୍ୱରେ ଛାୟାମାୟାଙ୍କର ଚିତ୍ରିତ ପ୍ରତିମା ମଧ୍ୟ ସୁଶୋଭିତ । ଅତୀତରେ ଅନଙ୍ଗଭୀମ ଦେବଙ୍କ ରାଜତ୍ୱ କାଳରେ ଏମାର ମଠର ଏକ ଅଂଶରେ ନିର୍ମିତ କ୍ଷୁଦ୍ର ଏକ ମନ୍ଦିରରେ ବିମଳେଇ ପ୍ରତିଷ୍ଠିତ ହୋଇଥିଲେ । ପରବର୍ତ୍ତୀ ସମୟରେ ଉଦ୍ଦିଷ୍ଟ ମନ୍ଦିରରେ ବିମଳେଇଙ୍କୁ ଅବସ୍ଥାପିତ କରାଯାଇ ଏମାର ମଠ ଦ୍ୱାରା ଦେବୀଙ୍କ ପୂଜାଖର୍ଚ୍ଚ ନିର୍ବାହ କରାଯାଉଛି । ସ୍ଥାନୀୟ ଲୋକମାନଙ୍କ ମଧ୍ୟରେ ଏହି ବିମଳେଇ ସାଧାରଣତଃ 'କାକୁଡ଼ିଖାଇ' ନାମରେ ପରିଚିତ । ଏ ସମ୍ବନ୍ଧରେ ଏକ ଲୋକଶ୍ରୁତି ଗୋଚର ହୁଏ ଯେ - ପ୍ରତ୍ୟହ ବିମଳା ମନ୍ଦିରରେ ଚଣ୍ଡୀପାଠ କରୁଥିବା ଶ୍ରୀକ୍ଷେତ୍ରର ବାଲିସାହି ନିବାସୀ ଜନୈକ ଦେବୀଭକ୍ତ ଶିବଦାସ, ଏକଦା ତାଙ୍କ ବାଡ଼ିରେ ଏକ କାକୁଡ଼ିଗଛ ଉଠିଥିବା ଦେଖି ଏହାର ପ୍ରଥମ ଫଳ ବିମଳେଇଙ୍କୁ ସମର୍ପଣ କରିବେ ବୋଲି ମନାସ କରି ପରିବାରର ସମସ୍ତଙ୍କୁ ସଚେତନ କରାଇ ଦେଲେ । ମାନସିକ ଅନୁସାରେ ଶାରଦୀୟ ମହାପୂଜା ଅବସରରେ ଶିବଦାସ ସେହି ଗଛରେ ଫଳିଥିବା ପ୍ରଥମ କାକୁଡ଼ିଟିକୁ ନେଇ ବିମଳେଇଙ୍କୁ ଭୋଗ ଲଗାଇବା ଉଦ୍ଦେଶ୍ୟରେ ପୂଜକଙ୍କୁ ଦେଲେ । ପୂଜକ ଟେରାବାନ୍ଧି ଭୋଗ ଉତ୍ସବରେ ପୂଜାରେ ବସିଲେ । ମାତ୍ର ପୂଜା ଶେଷରେ ଟେରା ଫିଟିଲା ପରେ କାକୁଡ଼ିଟି ଶୀତଳ ଭୋଗ ପାତ୍ରରେ ନଦେଖି ପୂଜାରୀ ସମେତ ଉପସ୍ଥିତ ସମସ୍ତ ଭକ୍ତ ବିସ୍ମୟାଭିଭୂତ ହୋଇପଡ଼ିଲେ । ଅନୁସନ୍ଧାନରୁ ଜଣାଗଲା ଯେ ଦେବୀ ବିମଳେଇଙ୍କ ଶ୍ରୀମୁଖରେ କାକୁଡ଼ି ଭୁକ୍ତାବଶେଷର କିୟଦଂଶ ଲାଗି ରହିଛି । କାକୁଡ଼ିଟି ସ୍ୱୟଂ ମା' ଆନନ୍ଦରେ ଗ୍ରହଣ କରିଛନ୍ତି ବୋଲି ପ୍ରତ୍ୟକ୍ଷ କରି ସେହିଦିନଠାରୁ ବିମଳେଇ ସର୍ବସାଧାରଣରେ କାକୁଡ଼ିଖାଇ ନାମରେ ସୁବିଦିତ ହେଲେ ।

ପବିତ୍ର ବୈଷ୍ଣବପୀଠ ଶ୍ରୀମନ୍ଦିର ମଧ୍ୟରେ ଆମିଷ ପ୍ରବେଶ ନିଷିଦ୍ଧ ହୋଇଥିଲେ ମଧ୍ୟ ଯେତେବେଳେ ତନ୍ତ୍ର ପ୍ରାଧାନ୍ୟରୁ ଶ୍ରୀମନ୍ଦିର ଅନ୍ତର୍ବଳୟ ମଧ୍ୟରେ ଅଧିଷ୍ଠିତା ଦେବୀ ବିମଳାଙ୍କୁ ମହାସପ୍ତମୀଠାରୁ ମହାନବମୀ ପର୍ଯ୍ୟନ୍ତ ଏହି ତିନିଦିନ ପ୍ରତ୍ୟହ ମାଛଭୋଗ ଓ ଛାଗବଳି ଉତ୍ସର୍ଗର ବିଧି ପ୍ରବର୍ତ୍ତିତ ହେଲା, ସେତେବେଳେ ଧର୍ମପ୍ରାଣ/ଧର୍ମଭୀରୁ ଜନତା ସ୍ୱ-ଅଭୀଷ୍ଟ ପୂର୍ତ୍ତି ନିମିତ୍ତ ବିମଳାଙ୍କୁ ବଳି ମାନସିକ କଲେ । ମାତ୍ର ବିମଳାଙ୍କ ବଳିଭୋଗ ସୁନିର୍ଦ୍ଦିଷ୍ଟ ହୋଇଥିବାରୁ ପ୍ରୋକ୍ତ ଯାଚଞ୍ଚା/ ମାନସିକ ବଳିଗୁଡ଼ିକୁ ବିମଳାଙ୍କ ନିକଟରେ ନପକାଇ ଆଲୋଚ୍ୟ କାକୁଡ଼ିଖାଇଙ୍କୁ ସମର୍ପଣ କରାଯିବାର ବ୍ୟବସ୍ଥା ହେଲା । ସୁବିଧା ପାଇଲେ ପ୍ରବୃତ୍ତି ବଶତଃ ନୀତିନିୟମ ଉଲ୍ଲଙ୍ଘନ କରିବା ପାଇଁ ଲୋକେ ପ୍ରଚୋଦିତ ହେବା ସ୍ୱାଭାବିକ । ଯେହେତୁ ପ୍ରକାଶ୍ୟ ସ୍ଥଳରେ





କାକୁଡ଼ିଖାଇଙ୍କ ମନ୍ଦିର ବିଦ୍ୟମାନ, ସେପରି ସ୍ଥଳେ ସକାଳେ କିଏ ମାନସିକ କରି ସନ୍ଧ୍ୟାରେ ସେଠାରେ କୁକୁଡ଼ା ମୋଡ଼ିବା କିମ୍ବା ଛେଳି ହାଣିବା ଅଭ୍ୟାସରେ ପରିଣତ ହେବା ଅସମ୍ଭବ ନୁହେଁ । ତେଣୁ ଅନୁରୂପ ନାରକୀୟ କାଣ୍ଡ ଘଟିବାର ସମ୍ଭାବନାକୁ ଦୃଷ୍ଟିରେ ରଖି ସମ୍ଭାବ୍ୟ ମାନସିକତାରେ ନିୟନ୍ତ୍ରଣ ଆଣିବା ନିମିତ୍ତ କେବଳ ଦଶହରା ସମୟରେ କାକୁଡ଼ିଖାଇଙ୍କ ମୃଣ୍ମୟ ପ୍ରତିମା ସ୍ଥାପନ କରାଯାଇ ପୂଜା କରାଯିବା ସହିତ ବର୍ଷତମାମ ମାନସିକ ବଳିଗୁଡ଼ିକୁ ତାଙ୍କ ସମ୍ମୁଖରେ ପକାଇବାର ବିଧି ସୁନିର୍ଦ୍ଦିଷ୍ଟ ହେଲା । ଫଳତଃ ତାଙ୍କର ଅବର୍ତ୍ତମାନତାରେ ପୀଠଦେବୀ ବିମଳେଈଙ୍କଠାରେ ବଳି ପକାଇବାର ସୁଯୋଗ ରହିଲା ନାହିଁ । ଶ୍ରୀକ୍ଷେତ୍ରର କୌଣସି ମୃଣ୍ମୟୀ ଗୋସାଣୀ ବଳିଭୋଜୀ ହୋଇ ନଥିବା ସ୍ଥଳେ ପ୍ରଥମ ମୃଣ୍ମୟୀ ଦେବୀ କାକୁଡ଼ିଖାଇ କିନ୍ତୁ ଏ ଦୃଷ୍ଟିରୁ ଏକ ବ୍ୟତିକ୍ରମ ।

ଶ୍ରୀକ୍ଷେତ୍ରର ପ୍ରଥମ ଗୋସାଣୀ ହେଉଛନ୍ତି ଏହି କାକୁଡ଼ିଖାଇ । ବାଲିସାହିର ଉଦ୍ୟୋକ୍ତା ତଥା ସ୍ଥାନୀୟ ବଣିଆପଟିର ବ୍ୟବସାୟୀମାନଙ୍କ ସହଯୋଗରେ ପନ୍ଦରଫୁଟ ଉଚ୍ଚତା ବିଶିଷ୍ଟ ମହିଷହନ୍ତ୍ରୀ କାକୁଡ଼ିଖାଇଙ୍କ ମୃଣ୍ମୟ ପ୍ରତିମା ନିର୍ମାଣ କରାଯାଏ । ଦଶଭୁଜା ଏହି ଗୋସାଣୀଙ୍କର ବାମହସ୍ତରେ ଉପରୁ ତଳକୁ ଯଥାକ୍ରମେ : ଢାଲ, ଶଙ୍ଖ, ଧନୁ, ସର୍ପ ଓ ମହିଷାସୁରର ଚୁଟି ରହିଥିବା ସ୍ଥଳେ ଦକ୍ଷିଣ ହସ୍ତଗୁଡ଼ିକ କ୍ରମାନ୍ୱୟରେ ତ୍ରିଶୂଳ, ଖଡ୍‌ଗ, ଚକ୍ର, ଶର ଓ ଅଙ୍କୁଶ ପ୍ରଭୃତି ଆୟୁଧରେ ସୁସଜ୍ଜିତ । କାକୁଡ଼ିଖାଇଙ୍କ ପଦ ତଳେ ମହିଷ ଶରୀରରୁ ଅର୍ଦ୍ଧନିଷ୍କ୍ରାନ୍ତ ଅବୟବ ବିଶିଷ୍ଟ ମହିଷାସୁରର ଦକ୍ଷିଣ ଗୋଡ଼ ସମ୍ପୂର୍ଣ୍ଣ ରୂପେ ମଣିଷର ଗଣ୍ଡି ମଧ୍ୟରେ ଲୁକ୍‌କାୟିତ ଥିବାସ୍ଥଳେ ବହିର୍ଦ୍ଦେଶରେ ଥିବା ବାମଗୋଡ଼ରେ ନାଗରାଜୋତା ପରିହିତ ଏବଂ ବକ୍ଷରେ ସାଞ୍ଜୁ, ବାମହସ୍ତରେ ଢାଲ ଓ ଦକ୍ଷିଣ ହସ୍ତରେ ତରବାରି ପରିଶୋଭିତ । ଦେବୀଙ୍କର ବାମପାଦ ମହିଷାସୁର ସ୍କନ୍ଧ ଉପରେ ଓ ଦକ୍ଷିଣପାଦ ସିଂହପୃଷ୍ଠରେ ଅବସ୍ଥାପିତ । ମହିଷର ରକ୍ତାକ୍ତ କଟାମୁଣ୍ଡ ଭୂଲୁଣ୍ଠିତ । କଟକ, ଭୁବନେଶ୍ୱରରେ ନିର୍ମିତ ଦୁର୍ଗାମୂର୍ତ୍ତି ସଦୃଶ ଶ୍ରୀକ୍ଷେତ୍ରରେ କେବଳ ଏହି କାକୁଡ଼ିଖାଇଙ୍କ ଚତୁଃପାର୍ଶ୍ୱରେ ସିଦ୍ଧିଦାତା ଶ୍ରୀଗଣେଶ, ଦେବ ସେନାପତି କାର୍ତ୍ତିକେୟ, ବିଦ୍ୟାପ୍ରଦାୟିନୀ ସରସ୍ୱତୀ ଓ ଐଶ୍ୱର୍ଯ୍ୟଦାତ୍ରୀ ମହାଲକ୍ଷ୍ମୀଙ୍କ ମୃଣ୍ମୟ ବିଗ୍ରହ ବିଦ୍ୟମାନ ଥାନ୍ତି । ଏହି ଦେବଦେବୀ ତଥା ସେମାନଙ୍କର ବାହନ ଓ ଅସୁର ପ୍ରଭୃତିଙ୍କୁ ପଟ୍ଟଚିତ୍ରର ମୌଳିକ ରଙ୍ଗ ହିଙ୍ଗୁଳ, ହରିତାଳ, ଶଙ୍ଖ, ଗେରୁ ଏବଂ କଳାରେ ଚିତ୍ରଣ କରାଯାଇଥାଏ । କଳାଶାଢ଼ୀ ପରିହିତା ଦେବୀ କାକୁଡ଼ିଖାଇଙ୍କୁ ପ୍ରାୟ ଏକ ଶହ ଭରି ରୂପା ଓ କୋଡ଼ିଏ ଭରି ସୁନା ଅଳଙ୍କାରରେ ମଣ୍ଡଣି କରାଯାଉଥିବାରୁ, କେହି କେହି ଏହାଙ୍କୁ 'ସୁନା ଗୋସାଣୀ' ବୋଲି କହିଥାନ୍ତି । ଏହି ପୀଠଦେବୀଙ୍କ ନିକଟରେ ପାରମ୍ପରିକ ବିଧିରେ ୧୬ ପୂଜା ଅନୁଷ୍ଠିତ ହେବା ସହିତ ଆଶ୍ୱିନ ଶୁକ୍ଳଷଷ୍ଠୀ ଦିନ ଅଣତୁଠରୁ ଜଳତୋଳା ହୋଇ ଘଟସ୍ଥାପନ ପରେ ମହାସପ୍ତମୀରୁ ମହାନବମୀ ପର୍ଯ୍ୟନ୍ତ ତ୍ରିଦିବସାତ୍ମକ ପୂଜା ଅନୁଷ୍ଠାନ କରାଯାଇଥାଏ । ଇତ୍ୟବସରରେ ଗୋଟିଏ ବଡ଼ତାଟରେ ୧୦୮ ପ୍ରକାର ପୂଜାସାମଗ୍ରୀ ସଂଗ୍ରହ କରାଯାଇ ଷୋଡ଼ଶୋପଚାର ପୂଜା ସମାହିତ ହୋଇଥାଏ । ଶ୍ରୀମନ୍ଦିର ଭୋଗସଦୃଶ ଦେବୀଙ୍କର ସମସ୍ତ ଭୋଗ ପ୍ରସ୍ତୁତ ହୋଇ ଦେବୀଙ୍କୁ ଦୁର୍ଗାମନ୍ତ୍ରରେ ଉପାସନା କରାଯାଇଥାଏ । ମହାସପ୍ତମୀ, ମହାଷ୍ଟମୀ ଓ ମହାନବମୀ ନିଶାର୍ଦ୍ଧରେ କ୍ଷେତ୍ରାଧୀଶ୍ୱରୀ ବିମଳାଙ୍କ ନିକଟରେ ଡାହାଣ ମାହାଣ ବୋଦା ପଡ଼ି ସାରିବା ପରେ ସେହିଠାରୁ ଖଡ୍‌ଗ ଆସି ସେହି ଖଡ୍‌ଗରେ ବିମଳାଙ୍କ ମାନସ ବଳିଗୁଡ଼ିକୁ ତାଙ୍କର ପ୍ରତିନିଧି ମୃଣ୍ମୟୀ କାକୁଡ଼ିଖାଇଙ୍କ ସମ୍ମୁଖରେ ଛେଦପଡ଼ି ଆମିଷ ଭୋଗ ହୋଇଥାଏ । ସପ୍ତମୀ ଓ ନବମୀ ଅପେକ୍ଷା ମହାଷ୍ଟମୀ ନିଶାର୍ଦ୍ଧରୁ ପରବର୍ତ୍ତୀ ପୂର୍ବାହ୍ନ ପର୍ଯ୍ୟନ୍ତ କାକୁଡ଼ିଖାଇଙ୍କ ନିକଟରେ ସର୍ବାଧିକ ଛେଦ ପଡ଼ିବାର ଦେଖାଯାଏ । ଏହି ଗୋସାଣୀ ଦଶହରା ରାତ୍ରିରେ ବାରବାଟୀ ଗୋସାଣୀ ପର୍ଯ୍ୟନ୍ତ ଆସି ତତ୍‌ପରେ ବିସର୍ଜନ ନିମିତ୍ତ ମୃଷାନଈ ଅଭିମୁଖେ ଯାତ୍ରା କରିଥାନ୍ତି ।

**ବାରବାଟୀ ଗୋସାଣୀ :** ଦଶହରା ମହାପୂଜାରେ ଶ୍ରୀକ୍ଷେତ୍ରରେ ଉପାସିତ ମୃଣ୍ମୟୀ ଦେବୀମାନଙ୍କ ମଧ୍ୟରେ ବାରବାଟୀ ଗୋସାଣୀ ହେଉଛନ୍ତି ବୃହତ୍ତମ ଗୋସାଣୀ । ହରଚଣ୍ଡୀ ସାହିରେ କାଳୁଆ ପ୍ରତାପରୁଦ୍ର ଦେବ ସାଧୁସନ୍ଥଙ୍କ ଉଦ୍ଦେଶ୍ୟରେ ବାରବାଟୀ ସମ୍ପତ୍ତି (୯) ଦାନ କରିବା ସହ ଯେଉଁ ଜାଗା ପ୍ରତିଷ୍ଠା କରିଥିଲେ, ତାହା ବାରବାଟୀ ଜାଗା ନାମରେ ଅଭିହିତ । ପ୍ରଥମ ଗୋସାଣୀ କାକୁଡ଼ିଖାଇଙ୍କ ପରେ ଏହି ବାରବାଟୀ ଜାଗାରେ ସୁନ୍ଦର ମହାସୁଆର, ବାସୁ ପଢ଼ିଆରୀ ଓ ନରି ମହାପାତ୍ରଙ୍କ ତତ୍ତ୍ୱାବଧାନରେ ଏହି ଦ୍ୱିତୀୟ ଗୋସାଣୀ ବସା ଯାଇଥିଲା । ବାରବାଟୀ ଜାଗା ସାଙ୍ଗମାନେ ଏହାକୁ ନିର୍ମାଣ କରୁଥିବାରୁ ଜାଗାର ନାମାନୁସାରେ ଏହି ଦେବୀମୂର୍ତ୍ତି ବାରବାଟୀ ଗୋସାଣୀ ନାମରେ ପ୍ରସିଦ୍ଧ । ଶିଳ୍ପୀ ଯୋଗେନ୍ଦ୍ର ମହାରଣାଙ୍କର ଏ ହେଉଛନ୍ତି ବଂଶ ପରମ୍ପରାର ଗୋସାଣୀ । ପୁରୁଷାନୁକ୍ରମେ ପାରିଶ୍ରମିକ ବାଦ୍ ଶ୍ରୀମନ୍ଦିର ମହାସୁଆର ନିଯୋଗ ତରଫରୁ ଝଡ଼େଇ ନେବା ତାଡ଼ରେ ପିଠାଗୁଣ୍ଡ ଓ ଡାଲମା ପାଇ ସେ ଏହି ମୂର୍ତ୍ତି ନିର୍ମାଣ କରିଆସୁଛନ୍ତି । ସମ୍ପୂର୍ଣ୍ଣ ୧୨ ହାତ ୧୮ ଫୁଟ ଉଚ୍ଚତା ବିଶିଷ୍ଟ ହୃଷ୍ଟପୁଷ୍ଟ ପେଶୀ ବହୁଳ ଏହି ବୃହଦାକାର ହରଚଣ୍ଡୀ ମୂର୍ତ୍ତିଙ୍କ ଅଷ୍ଟଭୁଜରେ ସର୍ପ, ଶଙ୍ଖ, କୁନ୍ତ, ଧନୁ, ଶର, ଖଡ୍‌ଗ ଓ ତ୍ରିଶୂଳ ପ୍ରଭୃତି ଆୟୁଧ ପରିଶୋଭିତ । ଦେବୀ ବଧ କରୁଥିବା ମହିଷାସୁର ମଧ୍ୟ ଅତିବିରାଟକାୟ । ସତେ ଯେପରିକି ଗୋସାଣୀକୁ ପୃଷ୍ଠରେ ବହନକରି ଉଡ଼ି ଆସୁଥିବା ପରି ପ୍ରତୀୟମାନ ହୋଇଥାଏ । ଉକ୍ତ ବାରବାଟୀ ଗୋସାଣୀଙ୍କୁ ପଟ୍ଟଚିତ୍ରର ପାରମ୍ପରିକ ରଙ୍ଗରେ ଚିତ୍ରଣ କରାଯାଇ ରୂପାରେ ଫୁଲଖଚିତ କୃଷ୍ଣବସ୍ତ୍ର ପରିଧାନ କରାଯାଇଥାଏ । ପୁନଶ୍ଚ ଆଧୁନିକ ଶୈଳୀର କିରୀଟ ତଥା ସୋଲ ଜରିରେ ନିର୍ମିତ ବିଭିନ୍ନ ସାଜରେ ସଜାଇ ଆକର୍ଷଣୀୟ କରାଯାଇଥାଏ । ମହାସପ୍ତମୀ ଦିନ ମଙ୍ଗଳାଘାଟରୁ ଜଳ ଉତ୍ତୋଳିତ ହୋଇ ଏଠାରେ ଘଟ ବସେ ।

ମହାସପ୍ତମୀରୁ ମହାନବମୀ ପର୍ଯ୍ୟନ୍ତ ସଙ୍ଖୁଡ଼ି ଭୋଗ ଲାଗି ହୋଇ ବନଦୁର୍ଗା ମନ୍ତ୍ରରେ ପାରିମ୍ପରିକ ପୂଜା କରାଯାଇ ମହାଦଶମୀ ଦଶହରା ଦିନ ଜଗନ୍ନାଥ ବଲ୍ଲଭ ମଠକୁ ବିଜେକରି ପୁନଶ୍ଚ ସ୍ୱଆସ୍ଥାନକୁ ଫେରି ଆସୁଥିଲେ ହେଁ ସମ୍ପ୍ରତି ସେପରି ନହୋଇ ଠାକୁରାଣୀଙ୍କ ଚିତ୍ରପଟି ପୂଜା ପାଇଁ ସେଠାକୁ ଯାଉଅଛି । ଆଶ୍ୱିନଶୁକ୍ଳ ଏକାଦଶୀ ଦିନ ଶ୍ରୀମନ୍ଦିରରୁ ଶାଢ଼ୀ ଓ ରାଜନବରରୁ କାଛେଣୀ ଆସି ଦେବୀଙ୍କୁ ଲାଗି ହେବା ପରେ ପ୍ରାୟ ଦେଢ଼ଶହ ହାଣ୍ଡିପଣା ଏ ଠାକୁରାଣୀଙ୍କୁ ସମର୍ପିତ ହୋଇଥାଏ । ଏତଦ୍‌ବ୍ୟତୀତ ମାନସିକ କରିଥିବା ବ୍ୟକ୍ତିବିଶେଷ ଏହି ଅବସରରେ ଗୋସାଣୀଙ୍କୁ ସ୍ୱତନ୍ତ୍ର ପଣାଭୋଗ ଅର୍ପଣ କରିଥାନ୍ତି । ମାତ୍ର ଏହି ପଣାଭୋଗର ବିଶେଷତ୍ୱ ହେଉଛି, ଏହାକୁ ପ୍ରସାଦ କିମ୍ବା ପାଦୋଦକ ରୂପେ କେହି ସେବନ କରନ୍ତି ନାହିଁ । ତେଣୁ ବିଭିନ୍ନ ଅପଦେବୀ ତଥା ସେମାନଙ୍କର ଅନୁଚରୀମାନଙ୍କ ଉଦ୍ଦେଶ୍ୟରେ ପଣାହାଣ୍ଡି ସବୁ ଭାଙ୍ଗି ଦିଆଯାଏ । ଶ୍ରୀକ୍ଷେତ୍ରର ଅନ୍ୟ କୌଣସି ଗୋସାଣୀଙ୍କ ପାଖେ ଏତେ ପରିମାଣରେ ପଣାଭୋଗ ଉତ୍ସର୍ଗ ହେବାର ଦେଖାଯାଏ ନାହିଁ । ତତ୍‌ପରେ ୮ ଜଣ ଗୋପାଳ ପିଲାଙ୍କ ଦ୍ୱାରା ଠାକୁରାଣୀ ଦଶହରା ପଦାକୁ ଆସି ଗୋସାଣୀ ମେଳନର ନେତୃତ୍ୱ ନେଇଥାନ୍ତି । ମିଳନ ପରେ ଶୋଭାଯାତ୍ରାରେ ନେଇ ମୃଷାନଈ ତୁଠରେ ପାଣିକଖାରୁ ବଳିପକାଇ କର୍ପୂର ଆଳତି ସମ୍ପାଦିତ ହୋଇ ଗୋସାଣୀଙ୍କୁ ଜଳରେ ଭସେଇ ଦିଆଯାଏ ।

**ଜହ୍ନିଖାଇ :** ପୂର୍ବେ ଶ୍ରୀମନ୍ଦିରକୁ କେନ୍ଦ୍ରକରି ବିଭିନ୍ନ ଦିଗରେ ଅର୍ଥାତ୍ ଦୋଳମଣ୍ଡପ ସାହି, ବାଲି ସାହି, ହରଚଣ୍ଡୀ ସାହି ଓ ମାର୍କଣ୍ଡେଶ୍ୱର ସାହିରେ ଯଥାକ୍ରମେ ଅଙ୍ଗିରା ଓ ଭୃଗୁ ନାମକ ଦୁଇ ବୈଦିକ ଋଷି, କଣ୍ୱ ଓ ମାର୍କଣ୍ଡେୟ ନାମକ ଦୁଇ ପୌରାଣିକ ଋଷିଙ୍କ ନାମରେ ୪ ଗୋଟି ଆସ୍ଥାନ ପ୍ରତିଷ୍ଠା କରାଯାଇଥିଲା । ପ୍ରତି ଆଶ୍ରମ ସନ୍ନିକଟରେ ନିର୍ମିତ ପଥର ବା ସିମେଣ୍ଟର ବେଦୀ/ମଣ୍ଡପକୁ ସ୍ଥାନୀୟ ଭାଷାରେ ଜହ୍ନିମୁଣ୍ଡିଆ କୁହାଯାଇଥାଏ । ଉକ୍ତ ମଣ୍ଡପରେ ଦଶହରା ସମୟରେ ଉପାସିତ ମୃଣ୍ମୟୀ ଦେବୀ ସାଧାରଣତଃ ଜହ୍ନିଖାଇ ରୂପେ ଅଭିହିତ । ଦୋଳମଣ୍ଡପ ସାହିସ୍ଥ ଅଙ୍ଗିରାଶ୍ରମ ସମୀପବର୍ତ୍ତୀ ବେଦୀ ଜହ୍ନିମୁଣ୍ଡିଆ ସମ୍ମୁଖରେ ଦଶହରା ସମୟରେ ସାହି ନାୟକଙ୍କ ତତ୍ତ୍ୱାବଧାନରେ ୧୬'୬'' ଉଚ୍ଚତା ବିଶିଷ୍ଟ ବିରାଟକାୟ ଜହ୍ନିଖାଇ ମୃଣ୍ମୟୀ ଗୋସାଣୀ ନିର୍ମିତ ହୋଇ ପ୍ରତିବର୍ଷ ଦଶହରା ସମୟରେ ଉପାସିତ ହୋଇ ଆସୁଛନ୍ତି । ଏହି ଗୋସାଣୀ ନିର୍ମାଣ ଶ୍ରୀଧର ମହାପାତ୍ରଙ୍କ ପରମ୍ପରାଗତ ସେବା ଅଟେ । ଏହି ଦଶଭୁଜା ଦେବୀ ମହିଷାସୁର ବିକଳ୍ପରେ ବିରାଟକାୟ ତାଡ଼କାସୁରକୁ ବଧ କରିଥାନ୍ତି । ଗୋସାଣୀଙ୍କୁ ପାରମ୍ପରିକ ରଙ୍ଗରେ ଚିତ୍ରଣ କରାଯାଇଥିବା ସ୍ଥଳେ ଆଧୁନିକ ସାଜସଜ୍ଜାରେ ଦେବୀଙ୍କୁ ସୁସଜ୍ଜିତ କରାଯାଇଥାଏ । ପୂର୍ବେ ଜୀବନ୍ୟାସ ପାଇବା ଦିନ ଆଜ୍ଞାମାଳ ଆଣିବା ନିମନ୍ତେ ସାହି ଭାଇଙ୍କ ଦ୍ୱାରା ଜହ୍ନିଖାଇଙ୍କୁ ଶ୍ରୀମନ୍ଦିର ସମ୍ମୁଖକୁ ନିଆଯାଉଥିଲା । ମାତ୍ର ସମ୍ପ୍ରତି ମହାସପ୍ତମୀ ଦିନ ଦୋଳମଣ୍ଡପ ସାହିସ୍ଥ ଚମ୍ପାଗଡ଼ି ପୋଖରୀରୁ ଜଳତୋଳି ଘଟ ବସାଇବା ପରେ ଆଜ୍ଞାମାଳ ଓ ପ୍ରସାଦ ଠାକୁରାଣୀଙ୍କ ନିକଟକୁ ଆସୁଅଛି । ପରମବୈଷ୍ଣବୀ ଜହ୍ନିଖାଇ ଗୋସାଣୀଙ୍କୁ ଭୁବନେଶ୍ୱରୀ ମନ୍ତ୍ରରେ ପୂଜା କରାଯାଇ ଖଜାପିଠା ଓ ବୁଟସିଝା ଭୋଗ ଲାଗି ହୋଇଥାଏ । ଦେବୀଙ୍କୁ ଆମିଷ ଭୋଗନୈବେଦ୍ୟ କରାଯାଏ ନାହିଁ । ମାତ୍ର ବିସର୍ଜନ ସମୟରେ ଜହ୍ନିବଳି ଦିଆଯାଉଥିବାରୁ (୧୦) ଏହି ଗୋସାଣୀଙ୍କର ଏତାଦୃଶ ନାମକରଣ ହୋଇଅଛି । ଏହା ସହିତ ବର୍ତ୍ତମାନ ବାଲିସାହି ଓ ଗୌଡ଼ବାଡ଼ ସାହିରେ ପୃଥକ୍ ଦୁଇଟି ଜହ୍ନିଖାଇ ଗୋସାଣୀ ସ୍ଥାପିତ ହୋଇ ଦଶହରାରେ ଉପାସିତ ହେଉଛନ୍ତି ।

**ଶୂନ୍ୟ ଗୋସାଣୀ :** ମାୟା ଯୁଦ୍ଧ କୁଶଳୀ ମହିଷାସୁର ଯୁଦ୍ଧ କରୁକରୁ ଯେତେବେଳେ ଆତ୍ମରକ୍ଷା ନିମିତ୍ତ ଆକାଶମାର୍ଗକୁ ଉଠିଯାଇଥିଲା ଦେବୀ ଦୁର୍ଗା, ତାହାର ପଶ୍ଚାତ୍‌ଧାବନ କରି ଶୂନ୍ୟରେ ସୁରାପାନ ପୂର୍ବକ ଯୁଦ୍ଧ କରିଥିଲେ । ତତ୍କାଳରେ ଦେବୀ ଶୂନ୍ୟରେ ଥାଇ ଭୂପୃଷ୍ଠରେ ବିଭିନ୍ନ ଜୀବଜନ୍ତୁ ସଙ୍କୁଳ ଯେଉଁ ଆରଣ୍ୟକ ପରିବେଶ ସନ୍ଦର୍ଶନ କରିଥିଲେ, ସେହି ପରିକଳ୍ପନା ମାଟିମଣ୍ଡପ ସାହିର ଜାଗାଆଖଡ଼ା ପିଲାଙ୍କ ଦ୍ୱାରା ସ୍ଥାପିତ ଗୋସାଣୀ ବିଗ୍ରହରେ ରୂପାୟିତ ହୋଇଥାଏ । ପୂର୍ବେ ଅଷ୍ଟଭୁଜ ବିଶିଷ୍ଟା ଏହି ମୃଣ୍ମୟୀ ହରଚଣ୍ଡୀଙ୍କ ଉଚ୍ଚତା ଅରୁଣ ସ୍ତମ୍ଭ ସହ ସମାନ ଥିଲା । ଦେବୀଙ୍କର ପାଦଦେଶରେ ପ୍ରାୟ ଷାଠିଏଟି ଜୀବଜନ୍ତୁଙ୍କର ମୂର୍ତ୍ତି ନିର୍ମିତ ହେଉଥିଲା । କ୍ରମେ ଏହା ଉଚ୍ଚତା ହ୍ରାସ ପାଇବା ସହିତ ସମ୍ପ୍ରତି ଅରଣ୍ୟ ପରିବେଷ୍ଟିତ ପାହାଡ଼ ଉପରେ ସିଂହ-ବ୍ୟାଘ୍ର-ଗୋରୁଗାଈ-ମାନବ ସମ୍ବଳିତ ଅଳ୍ପ କେତେଗୋଟି ପ୍ରାଣୀଙ୍କ ଊର୍ଦ୍ଧ୍ୱରେ ଏକ ଉଡ୍‌ଡୀୟମାନ ସଞ୍ଚାଣ ପୃଷ୍ଠରେ ଶୂନ୍ୟରେ ଥାଇ ମହିଷାସୁରକୁ ବଧ କରୁଥିବା ଦେବୀଙ୍କୁ 'ଶୂନ୍ୟଗୋସାଣୀ' କୁହାଯାଉଛି । ଗୋଟିଏ ମାତ୍ର କିଳାରେ ଆଧାର କରି ଶିଳ୍ପୀ ଏହାକୁ ଏପରି ନିର୍ମାଣ କରିଥାଏ ଯେ, ଦର୍ଶକ ସେହି ଆଧାରଟିକୁ ଆବିଷ୍କାର କରି ନପାରିବାରୁ ଗୋସାଣୀ ଏଠାରେ ଶୂନ୍ୟ ବିହାରିଣୀ ବୋଲି ତାହାର ହୃଦ୍‌ବୋଧ ହୁଏ । ଶୂନ୍ୟ ଗୋସାଣୀ ଏହି ହରଚଣ୍ଡୀଙ୍କର ଗଠନ ଶୈଳୀ ଯେପରି ପ୍ରାଚୀନ ସେହିପରି ପାରମ୍ପରିକ ମଧ । ପୁନଶ୍ଚ ଏହି ଶୂନ୍ୟ ଗୋସାଣୀଙ୍କର ବୀରତ୍ୱପୂର୍ଣ୍ଣ ଠାଣି ବେଶ୍ ପ୍ରଶଂସନୀୟ । ମହାସପ୍ତମୀ ଦିନ କଳସ ବସିବା ନିମିତ୍ତ ମୃଷାନଈରୁ ଜଳ ତୋଳା ହୋଇ ଆସେ । ଶ୍ରୀମନ୍ଦିରରୁ ମରିଚଲଡୁ ଓ ପ୍ରସାଦ ଆସି ସମର୍ପଣ କରାଯିବା ସହ ଏହି ଗୋସାଣୀଙ୍କୁ ବନଦୁର୍ଗା ମନ୍ତ୍ରରେ ପୂଜା କରାଯାଇଥାଏ । ପରିଶେଷରେ ପାଣିକଖାରୁ ବଳି ଉତ୍ସର୍ଗ କରାଯାଇ ଏହି ଶୂନ୍ୟ ଗୋସାଣୀଙ୍କୁ ବିସର୍ଜନ କରାଯାଏ ।

**ଭୋଗଜାଗା ଗୋସାଣୀ :** ରାମଚନ୍ଦ୍ର ଦେବଙ୍କ ରାଜତ୍ୱ ସମୟରେ ମାଟିମଣ୍ଡପ ସାହିରେ ଏକ ମଣ୍ଡପ ନିର୍ମାଣ କରାଯାଇଥିଲା, ଯେଉଁ ମଣ୍ଡପରେ ସମ୍ପ୍ରତି ଶ୍ରୀମନ୍ଦିରର ବିଭିନ୍ନ ପର୍ବପର୍ବାଣିରେ ସମ୍ପୃକ୍ତ ଅର୍ଚ୍ଚା ପ୍ରତିମାମାନଙ୍କୁ ପଙ୍‌କ୍ତି ଭୋଗ ସମର୍ପଣ କରାଯାଇ ଆସୁଅଛି । ଉକ୍ତ

ଭୋଗମଣ୍ଡପ ପାର୍ଶ୍ୱରେ ଭୋଗବତୀ ହରଚଣ୍ଡୀ ବିଦ୍ୟମାନ ଅଛନ୍ତି । ସେବାଶୃଙ୍ଖଳା ତଥା ଆଭ୍ୟନ୍ତରୀଣ ନିରାପତ୍ତା ନିମିତ୍ତ ଏଠାରେ ଯେଉଁ ଜାଗା ପ୍ରତିଷ୍ଠା କରାଯାଇଥିଲା, ତାହା ଭୋଗଜାଗା ନାମରେ ପରିଚିତ । ପ୍ରୋକ୍ତ ଭୋଗମଣ୍ଡପରେ ଦଶହରା ସମୟରେ ସାହିଭାଇ ତଥା ଜାଗା ସାଙ୍ଗମାନଙ୍କ ଚାନ୍ଦାରେ ନିର୍ମିତ ମୃଣ୍ମୟୀ ହରଚଣ୍ଡୀଙ୍କୁ ଭୋଗଜାଗା ଗୋସାଣୀ କୁହାଯାଏ । ଦଶଫୁଟ ଉଚ୍ଚତା ବିଶିଷ୍ଟ ଅଷ୍ଟଭୁଜା ଏହି ଦେବୀଙ୍କର ବାମପାଦ ମୋଡ଼ା ମହିଷର କାନ୍ଧ ଉପରେ ଓ ଅନ୍ୟ ପାଦଟି ସିଂହୋପରି ଅବସ୍ଥାପିତ । ଏହି ଭୋଗ ଜାଗା ଠାକୁରାଣୀଙ୍କ ଉଭୟ ପାର୍ଶ୍ୱରେ ଛାୟାମାୟା ବିଗ୍ରହ ମଧ୍ୟ ପରିଶୋଭିତ । ଭୋଗଜାଗା ଗୋସାଣୀ ଦକ୍ଷିଣ ଗୋଡ଼ରେ ଶ୍ରୀଜଗନ୍ନାଥଙ୍କର ତଯାର ବାହୁଟି ପରିଧାନ କରିଥାନ୍ତି । ମୃଷାନଈରୁ ଜଳତୋଳା ହୋଇ ଘଟ ବସାଯାଇ ଠାକୁରାଣୀଙ୍କୁ ବନଦୁର୍ଗା ମନ୍ତ୍ରରେ ପୂଜା କରାଯାଏ । ପ୍ରକାଶଥାଉକି ଶ୍ରୀକ୍ଷେତ୍ରର ଗୋସାଣୀ ଉପାସନା ପରମ୍ପରାରେ ଏହି ଭୋଗଜାଗା ହରଚଣ୍ଡୀ ହେଉଛନ୍ତି ତୃତୀୟ ଗୋସାଣୀ । ଏହି ଭୋଗବତୀ ଗୋସାଣୀ ସ୍ୱୀୟ ବୀରତ୍ୱପୂର୍ଣ୍ଣ ଠାଣି ତଥା ପ୍ରଶଂସନୀୟ ଗଠନ-ଶୈଳୀ ଓ ଉନ୍ନତମାନର ସାଜସଜ୍ଜାପାଇଁ ପ୍ରଥମ ସ୍ଥାନୀୟ ଅଟନ୍ତି । ଆଶ୍ୱିନ ଶୁକ୍ଳ ଏକାଦଶୀ ଦିନ ଶ୍ରୀମନ୍ଦିରରୁ ପ୍ରସାଦ ଆସି ଭୋଗ ଜାଗା ହରଚଣ୍ଡୀ ଭୋଗବତୀ ଗୋସାଣୀଙ୍କୁ ସମର୍ପଣ କରାଯିବା ପରେ ପାଣିକଖାରୁ ବଳିଦେଇ ଠାକୁରାଣୀଙ୍କୁ ବିସର୍ଜନ କରାଯାଇଥାଏ ।

**ଚକ୍ରକୋଟି ଗୋସାଣୀ :** ହରଚଣ୍ଡୀ ସାହିରେ ଚକ୍ରକୋଟ ଜାଗା ଅବସ୍ଥିତ । ଏକଦା ପ୍ରୋକ୍ତ ଚକ୍ରକୋଟ ଜାଗାର ଖୁଣ୍ଟିଆ ସଂଜ୍ଞକ ଜନୈକ ସେବକଙ୍କୁ କୁଚବିହାରର ରାଣୀ ତାଙ୍କ ରାଜ୍ୟରୁ ଆଣିଥିବା ପାଷାଣ ନିର୍ମିତ ଏକ ଦେବୀ ବିଗ୍ରହଙ୍କୁ ଉପହାର ସ୍ୱରୂପ ଦେବା ଫଳରେ ଖୁଣ୍ଟିଆ ଠାକୁରାଣୀଙ୍କୁ ଏକ ଉପବନରେ ପ୍ରତିଷ୍ଠା ପୂର୍ବକ ଉପାସନା କରିବାରୁ ଜାଗାର ନାମାନୁସାରେ ଦେବୀଙ୍କ ନାମ ଚକ୍ରକୋଟ ଠାକୁରାଣୀ ହେଲା । ଦଶହରା ସମୟରେ ଜାଗା ସାଙ୍ଗମାନେ ଠାକୁରାଣୀଙ୍କ ନାମାନୁସାରେ ଯେଉଁ ମୃଣ୍ମୟ ଦେବୀମୂର୍ତ୍ତି ନିର୍ମାଣ କରି ପୂଜା କଲେ, ସେ ଚକ୍ରକୋଟ ଗୋସାଣୀ ନାମରେ ବିଦିତ ହେଲେ ଏବଂ ଏହି ଗୋସାଣୀ ପୂଜାର ସମସ୍ତ ବ୍ୟୟ ସ୍ୱୟଂ ରାଣୀ ବହନ କରୁଥିଲେ । ମାତ୍ର ସମ୍ପ୍ରତି ତାହା ଲୋପପାଇ ଜାଗା ସାଙ୍ଗମାନଙ୍କ ଅନୁଦାନରେ ବଳଭଦ୍ର ଖୁଣ୍ଟିଆଙ୍କ ତତ୍ତ୍ୱାବଧାନରେ ଏଠାରେ ପ୍ରତିବର୍ଷ ଗୋସାଣୀ ସ୍ଥାପନ କରାଯାଉଛି । ଅଷ୍ଟଭୁଜା ଏହି ଚକ୍ରକୋଟ ଗୋସାଣୀଙ୍କର ଏକପାଦ ମୋଡ଼ା ମହିଷ ଉପରେ ଓ ଅନ୍ୟ ପାଦଟି ସିଂହ ଉପରେ ଅବସ୍ଥାପିତ । ସବୁବର୍ଷ ଏହି ଗୋସାଣୀଙ୍କ ଉଚ୍ଚତା ନିର୍ଦ୍ଦିଷ୍ଟ/ସମାନ ନଥାଏ । ଅର୍ଥ ବ୍ୟବସ୍ଥା ଅନୁସାରେ ଏହାଙ୍କ ଆକାର ହ୍ରାସ ବୃଦ୍ଧି ଘଟିଥାଏ । ମହାସପ୍ତମୀ ଦିନ ମୃଷାନଈରୁ ଜଳତୋଳା ହୋଇ କଳସ ବସିବା ପରେ ଗୋସାଣୀ ବନଦୁର୍ଗା ମନ୍ତ୍ରରେ ପୂଜା କରାଯାଇ ଦଶମୀ ଓ ଏକାଦଶୀ ବିଶ୍ରାମ ଦୁଇଦିନରେ ଦେବୀଙ୍କୁ ଶୀତଳ ଭୋଗ ଲାଗି କରାଯାଏ । ଏକାଦଶୀ ଦିନ ଶ୍ରୀମନ୍ଦିରରୁ ଆନୀତ ଖଣ୍ଡୁଆ, ପ୍ରସାଦ ସହିତ ପଣାଭୋଗ ହୋଇ ଠାକୁରାଣୀଙ୍କୁ ବିସର୍ଜନ କରାଯାଇଥାଏ । କଟକୀଶୈଳୀର ଏହି ଗୋସାଣୀଙ୍କର କଲିକତୀ ମୁହଁ ଯୋଗୁଁ ଏ ଦେବୀ ବିଗ୍ରହ ବେଶ୍ ଆକର୍ଷଣୀୟ ଅଟନ୍ତି ।

**କଣ୍ଟାକାଢ଼ି ଗୋସାଣୀ ବନଦୁର୍ଗା :** ଦକ୍ଷିଣପାର୍ଶ୍ୱରେ ଦଣ୍ଡାୟମାନ ଥିବା ମହାଦେବଙ୍କ ଉପସ୍ଥିତିରେ ଦୁର୍ଗାଙ୍କର ଦକ୍ଷିଣପାଦରୁ ସ୍ୱୟଂ ବିଷ୍ଣୁ କଣ୍ଟକ ଉତ୍ପାଟନ କରୁଥିବା ଦୃଶ୍ୟ ସମ୍ବଳିତ ଏକ ବିଗ୍ରହ ପ୍ରକଳ୍ପ : ମଣିକର୍ଣ୍ଣିକା ସାହିର ବିଶିଷ୍ଟ ବ୍ୟକ୍ତିମାନଙ୍କ ଦ୍ୱାରା ଦଶହରା ଅବସରରେ ପ୍ରତିବର୍ଷ ନିର୍ମାଣ କରାଯାଇ ପୂଜା କରାଯାଇଥାଏ । ପାଦରେ କଣ୍ଟା ଗଳିଯାଇଥିବାରୁ ଦୁର୍ଗା ନିଶ୍ଚିତ ରୂପେ ବନଭ୍ରମଣରେ ଯାଇଥିବା ପରିକଳ୍ପନାକୁ ଆଧାରକରି ନିର୍ମିତ ଏହି ଦେବୀଙ୍କୁ ବନଦୁର୍ଗା ନାମରେ ଅଭିହିତ କରିବା ଯଥାର୍ଥ । ଏଠାରେ ଦେବଦେବ ମହାଦେବଙ୍କ ଅସହାୟତା ସହିତ ବିଷ୍ଣୁଙ୍କର ସେବା ପରାୟଣତା ଊର୍ଦ୍ଧ୍ୱରେ ଶକ୍ତିଙ୍କର ପ୍ରାଧାନ୍ୟ ହିଁ ବିଜ୍ଞାପିତ ହେବା ସହିତ ଶୈବ-ଶାକ୍ତ-ବୈଷ୍ଣବ ସଂସ୍କୃତିର ତ୍ରିବେଣୀ ସଙ୍ଗମ ସଂଘଟିତ ହୋଇଅଛି । ଏହି କଣ୍ଟାକାଢ଼ି ଗୋସାଣୀଙ୍କ ଗଠନ ଶୈଳୀ ଓ ସାଜସଜ୍ଜା ପରିପାଟୀ ବେଶ୍ ଚମତ୍କାର ।

**ପଣାପ୍ରିୟା ଗୋସାଣୀ :** ବାସେଳୀ ସାହିରେ କଣାପୁରିଆ (ପୁରୁଷୋତ୍ତମ, ପୂର୍ଣ୍ଣଚନ୍ଦ୍ର, ପୁରନ୍ଦର) ନାମକ କୌଣସି ଏକ ଆଖି ବିଶିଷ୍ଟ କାରିଗର ଏହି ପାଷାଣ ମୂର୍ତ୍ତି ନିର୍ମାଣ ତଥା ପ୍ରତିଷ୍ଠା କରିଥିଲେ । ସାହିପିଲାଙ୍କ ଚାନ୍ଦା ଭେଦାରେ ଦଶହରା ସମୟରେ ଏଠାରେ ନିର୍ମିତ ମୃଣ୍ମୟୀ ଗୋସାଣୀଙ୍କ ନାମ ଅପଭ୍ରଂଶ ହୋଇ କଣାପୁରିଆରୁ ପଣାପ୍ରିୟା (୧୧) ହୋଇଅଛି । ଏହି ପଣାପ୍ରିୟା ଗୋସାଣୀଙ୍କ ନାମାନୁସାରେ ଦେବୀ ପୂଜା ପାଉଥିବା ଲୋକନାଥ ରୋଡ଼ ସଂଲଗ୍ନ ଗଳିଟି ମଧ୍ୟ 'ପଣାପ୍ରିୟା ଗଳି' ନାମରେ ନାମିତ ହୋଇଅଛି । ଅଷ୍ଟଭୁଜ ବିଶିଷ୍ଟା ହରଚଣ୍ଡୀ ଦୁର୍ଗାରୂପେ ନିର୍ମିତ ଏହି ପଣାପ୍ରିୟା ଠାକୁରାଣୀ ମୋଡ଼ାମହିଷର କାନକୁ ଧରିଥାନ୍ତି ଏବଂ ଦେବୀବାହନ ସିଂହ ମଧ୍ୟ ମହିଷାସୁରର ବାମ ଆଣ୍ଠୁରେ ଦଶନାଘାତ କରିଥାଏ । ମାଟି କାର୍ଯ୍ୟରେ ଉନ୍ନତ ଏହି ଗୋସାଣୀ ବିଗ୍ରହ ନିର୍ମାଣ ସରିବା ପରେ ଘଟ ବସିବା ନିମିତ୍ତ ମଙ୍ଗଳାଘାଟରୁ ଜଳତୋଳା ହୋଇଆସେ । ଦୁର୍ଗା ମନ୍ତ୍ରରେ ଉପାସିତ ଏହି ପଣାପ୍ରିୟାଙ୍କୁ ସଙ୍ଖୁଡ଼ି ଭୋଗ ଲାଗି ହୋଇଥାଏ । ଏକାଦଶୀ ଦିନ ଶ୍ରୀମନ୍ଦିରରୁ ଖଣ୍ଡୁଆ ଓ ରାଜନବରରୁ ଶାଢ଼ୀ ଆସି ଲାଗି ହେବା ପରେ ଜହ୍ନିବଳି ଦିଆଯାଇ ଦେବୀଙ୍କୁ ବିସର୍ଜନ ଦିଆଯାଏ ।

**ଗେଲବାଈ :** ଅସୀମ ଶ୍ରଦ୍ଧାରପାତ୍ର ଗେଲବସର କୃଷ୍ଣ ସ୍ୱରୂପୀ ଶ୍ରୀମଦନମୋହନଙ୍କୁ କାଳୀୟଦଳନ ଏକାଦଶୀ ତିଥିରେ ଲବଣିଖିଆ ଛକରେ ସରଳବଣୀ ଲାଗି କରାଯାଇଥାଏ । ତେଣୁ ମଣିକର୍ଣିକା ସାହିର ଏହି ସ୍ଥାନ ଗେଲବସର ପାଟଣା ନାମରେ ନାମିତ । ଏହି ଗେଲବସର ପାଟଣାର ଯେଉଁ ସ୍ଥାନରେ ଗେଲବାଈ ପାଷାଣ ଦେବୀ ପ୍ରତିମା ବିଦ୍ୟମାନ ସେଠାରେ ଦଶହରା ସମୟରେ ମଣିକର୍ଣ୍ଣିକା ସାହି





ସାଙ୍ଗମାନଙ୍କ ଆର୍ଥିକ ସହଯୋଗରେ ଯେଉଁ ମୃଣ୍ମୟୀ ଗୋସାଣୀଙ୍କୁ ବସାଯାଇ ପୂଜା କରାଯାଏ, ତାଙ୍କୁ ମଧ୍ୟ ଗେଲବାଈ କହନ୍ତି । ଏହି ଗୋସାଣୀଙ୍କୁ ମହାସପ୍ତମୀରୁ ମହାନବମୀ ପର୍ଯ୍ୟନ୍ତ ସଞ୍ଛୁଡ଼ି ଭୋଗ ହୋଇଥାଏ ଓ ଦଶମୀ ଏକାଦଶୀ ବିଶ୍ରାମ ଦୁଇଦିନ ଶୀତଳ ଭୋଗ ଲାଗି ହୁଏ । ମହାସପ୍ତମୀ ଓ ପରବର୍ତ୍ତୀ ଶୁକ୍ଳ ଏକାଦଶୀ ଦିନ ଶ୍ରୀମନ୍ଦିରରୁ ଖଣ୍ଡୁଆ ଆସି ଲାଗି ହୁଏ । ଏହି ଗେଲବାଈ ମୃଣ୍ମୟୀ ଠାକୁରାଣୀ ସର୍ବଦା ମାଟି କାର୍ଯ୍ୟରେ ଉତ୍କୃଷ୍ଟ ବିବେଚିତ ହୋଇଥାନ୍ତି ।

**ବେଲବାଈ :** ଅତୀତରେ ବାଲିସାହିରେ ଗୋଟିଏ ବେଲଗଛ ଥିଲା ଏବଂ କୌଣସି କାରଣରୁ ସେ ଗଛରୁ କ୍ଷୀର ସ୍ରବିଲା । ଏତାଦୃଶ ଅଲୌକିକତା ଦେଖି ଠାକୁରାଣୀ ଉଦ୍ଭବ ହୋଇଛନ୍ତି ବୋଲି ଭାବି ସେଠାରେ ଠାକୁରାଣୀ ପ୍ରତିଷ୍ଠା କରି ଉପାସନା କଲେ, ଯେକି ଲୋକମୁଖରେ ବେଲବାଈ ନାମରେ ବିଦିତ । ପୂର୍ବେ ଦଶହରା ବେଳେ ଏଠାରେ ବେଲବାଈ ନାମରେ ବିରାଟ ଗୋସାଣୀ ନିର୍ମିତ ହେଉଥିଲେ । ସମ୍ପ୍ରତି ଆର୍ଥିକ ଅନଟନରୁ କ୍ଷୁଦ୍ର ମୂର୍ତ୍ତି ହେଉଛନ୍ତି । ଏତଦ୍‌ବ୍ୟତୀତ ଖୁଣ୍ଟିଆସାହିରେ ମଧ୍ୟ ଇତ୍ୟବସରରେ ଅନ୍ୟ ଏକ ବେଲବାଈ ବିଗ୍ରହ ନିର୍ମାଣ କରାଯାଇ ପୂଜା କରାଯାଇଥାଏ ।

**ମହନ୍ତେଶ୍ୱରୀ :** କୌଣସି ଏକ ମଠର ଜନୈକ ମହନ୍ତ ହରଚଣ୍ଡୀ ସାହିରେ ଦଶହରା ବେଳେ ଏହି ବିଗ୍ରହ ନିର୍ମାଣ ପୂର୍ବକ ପୂଜା କରୁଥିବାରୁ ଏ ଗୋସାଣୀଙ୍କର ଏତାଦୃଶ ନାମକରଣ ହୋଇଅଛି । ମାତ୍ର ସ୍ଥାନୀୟ ଲୋକେ ଏ ଗୋସାଣୀଙ୍କୁ ମହତେଶ୍ୱରୀ ବୋଲି ଅଭିହିତ କରିଥାନ୍ତି । ପୂର୍ବେ ହରଚଣ୍ଡୀ ସାହିର ମୁଖ୍ୟବ୍ୟକ୍ତିମାନେ ଏ ମୂର୍ତ୍ତି ନିର୍ମାଣ କରୁଥିଲେ ମାତ୍ର ସମ୍ପ୍ରତି ଆସାମ ପଣ୍ଡାଘର ସ୍ୱୀୟ ଖର୍ଚ୍ଚରେ ଏହି ଗୋସାଣୀ ନିର୍ମାଣ କରିଆସୁଛନ୍ତି । ଏହାର ସାଜସଜ୍ଜା ଆଧୁନିକ ଧରଣର ଅଟେ ।

**ହଜୁରୀ ଗୋସାଣୀ :** ଚନ୍ଦନ ହଜୁରୀ (ଚାଖି ଖୁଣ୍ଟିଆ) ବଂଶର ଦାୟାଦମାନେ ହରଚଣ୍ଡୀ ସାହିରେ ନିଜଖର୍ଚ୍ଚରେ ଏହି ଗୋସାଣୀ ନିର୍ମାଣି ଦଶହରା ସମୟରେ ପୂଜା କରୁଥିବାରୁ ଏହା ହଜୁରୀ ଗୋସାଣୀ ନାମରେ ପ୍ରସିଦ୍ଧ । ଭୋଗଜାଗା ଗୋସାଣୀ ସଦୃଶ ଏହି ଗୋସାଣୀଙ୍କ ସାଜସଜ୍ଜା ଅତି ଉଚ୍ଚକୋଟୀର ଅଟେ ।

**ଯମକଟ :** ଏ ମୂର୍ତ୍ତିଟି ଗୌଡ଼ବାଡ଼ସାହି ଜହ୍ନିମୁଣ୍ଡିଆ ନିକଟରେ (୧୨) ଥିଲେ । ଜନୈକ ବ୍ରାହ୍ମଣ ତାହାଙ୍କୁ ସେଠାରୁ ଆଣି ଗୁଡ଼ିଆସାହିରେ ମାଧବ ପୂଜାପଣ୍ଡାଙ୍କ ଜମିରେ ସ୍ଥାପନ କରିଛନ୍ତି । ଯମେଶ୍ୱର ମହାଦେବଙ୍କ ନିକଟରୁ ସ୍ଥାନାନ୍ତରିତ ଏହି ଦେବୀ ତେଣୁ ଯମକଟ ନାମରେ ଅଭିହିତ । ଆଧୁନିକ ସାଜସଜ୍ଜା ବିଶିଷ୍ଟ ଏହି ଗୋସାଣୀ ମୂର୍ତ୍ତିଙ୍କର ଗଠନ ଶୈଳୀ ଆକର୍ଷଣୀୟ ।

**କରତି ଗୋସାଣୀ :** ଦୋଳମଣ୍ଡପ ସାହି ଓ କୁଣ୍ଡେଇବେଣ୍ଟ ସାହି ବାସିନ୍ଦା ରଥରେ କାଠ ଚିରୁଥିବା କରତିମାନେ ଚାନ୍ଦାଭେଦା ଦେଇ ଏହି ଗୋସାଣୀ ସ୍ଥାପନ କରିଥିବାରୁ ଏହାଙ୍କର ଏପରି ନାମକରଣ ହୋଇଅଛି । ସାଧାରଣତଃ ରଥର ବିଶ୍ୱକର୍ମା ପରିବାର ଏହି ଗୋସାଣୀ ନିର୍ମାଣ କରୁଥିବାରୁ ଏହାଙ୍କର ଗଠନଶୈଳୀ ଉଚ୍ଚକୋଟୀର ହୋଇଥାଏ ।

ଏତଦ୍‌ବ୍ୟତୀତ ପରବର୍ତ୍ତୀ ପର୍ଯ୍ୟାୟରେ ବିଭିନ୍ନ ସାହିବସ୍ତିରେ/ ଉଦ୍ୟୋକ୍ତାମାନଙ୍କ ଆଗ୍ରହାତିଶଯ୍ୟରୁ ଅନେକ ଗୋସାଣୀ ଦେବୀ ବିଗ୍ରହ ନିର୍ମିତ ହୋଇ ଉପାହିତ ହେଉଛନ୍ତି, ଯେଉଁମାନେ କି ପାରମ୍ପରିକ ଗୋସାଣୀ ନୁହନ୍ତି । ପୁନଶ୍ଚ, ଶ୍ରୀକ୍ଷେତ୍ର ଲୋକ ସଂସ୍କୃତିରେ ବଳବୀର୍ଯ୍ୟ, ସାହସ ବୀରତ୍ୱର ପ୍ରତୀକ ସ୍ୱରୂପ ଅନେକ ବିଗ୍ରହ ଏହି ସମୟରେ ନିର୍ମିତ ତଥା ଉପାସିତ ହୋଇଥାନ୍ତି । ସେମାନଙ୍କ ସମ୍ବନ୍ଧରେ ଆବଶ୍ୟକ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା ।

**ରାବଣେଶ୍ୱର ମହାଦେବ :** ଅତୀତରେ ଦଶହରା ସମୟରେ ସୌରୀ ମହାପାତ୍ରଙ୍କ ତତ୍ତ୍ୱାବଧାନରେ ଲୋକନାଥ ରୋଡ଼ ସଂଲଗ୍ନ ଲୋକନାଥ ମଣ୍ଡପ ଉପରେ ଏକ ବୃହଦାକାର ମୂର୍ତ୍ତି ପ୍ରକଳ୍ପ ନିର୍ମିତ ହୋଇ ପୂଜା ହେବା ସହିତ ଏଯାବତ୍ ଅବ୍ୟାହତ ରହିଛି । ଏହି ମୂର୍ତ୍ତି ନିର୍ମାଣ ବିଷୟ ପ୍ରସଙ୍ଗ ଉପରେ ସ୍ୱୟଂ ସୌରୀ ମହାପାତ୍ର ଏକ କ୍ଷୁଦ୍ର ପୁସ୍ତିକା (୧୩) ମଧ୍ୟ ପ୍ରଣୟନ କରିଛନ୍ତି । ସେହି ବିଷୟବସ୍ତୁ ଆଧାରରେ ଏଠାରେ ବିଗ୍ରହ ନିର୍ମାଣ କରାଯାଉଛି । ପ୍ରତ୍ୟହ ଶିବ ଆରାଧନା ସୁଯୋଗ ପାଇବା ଅଭିଳାଷରେ ଶିବପାର୍ବତୀଙ୍କୁ ଶ୍ରୀଲଙ୍କା ନେଇଯିବା ପାଇଁ ଲଙ୍କେଶ ରାବଣ ସ୍ଥିର ନିଶ୍ଚିତ କରି ଶିବପାର୍ବତୀ ଗଣେଶ କାର୍ତ୍ତିକେୟ ସମେତ ସେମାନଙ୍କ ବାହନ ଚତୁଷ୍ଟୟ ସମବେତ ହୋଇଥିବା କୈଳାସ ପର୍ବତକୁ ଉତ୍ପାଟନ ପୂର୍ବକ ସ୍ୱୀୟ ବିଂଶବାହୁରେ ଉତ୍ତୋଳନ କରି ରଖିଅଛି । ମଣିକର୍ଣ୍ଣିକା ସାହିର ବଡ଼ଆଖଡ଼ା ଜାଗା ତରଫରୁ ନିର୍ମିତ ହେଉଥିବା ଉକ୍ତ ଦୃଶ୍ୟ ସମ୍ବଳିତ ବୃହଦାକାର ମୂର୍ତ୍ତି ପ୍ରକଳ୍ପକୁ 'ରାବଣେଶ୍ୱର ମହାଦେବ' ଏବଂ ଦେବଦେବ ମହାଦେବଙ୍କ ଆବାସସ୍ଥଳୀ ରାବଣ ଟେକିଧରି ଥିବାରୁ କେହି କେହି ଏହାକୁ 'କୈଳାସ ଟେକା ରାବଣ' ବୋଲି କହିଥାନ୍ତି । ଏଦାଦୃଶ ଦୃଶ୍ୟପଟର ମନନଶୀଳ ପରିକଳ୍ପନା ବାସ୍ତବରେ ବଡ଼ ମନୋମୁଗ୍ଧକର ।

**କପାଳମୋଚନ ମହାଦେବ :** ଗୋଟିଏ ସୁସଜ୍ଜିତ ରଥଗର୍ଭରେ ପାର୍ବତୀଙ୍କୁ କୋଳରେ ଧରି ଉପବେସନ କରିଥିବା ଏକ ବୃହଦାକାର ଶିବମୂର୍ତ୍ତିଙ୍କୁ ଦଶହରା ଅବସରରେ ଗାଣ୍ଡାଚୌରା ଛକରେ ନିର୍ମାଣ ପୂର୍ବକ ପୂଜା କରାଯାଇଥାଏ । କପାଳମୋଚନ ମନ୍ଦିର ସେବକମାନଙ୍କ ତରଫରୁ ନିର୍ମିତ ଏହି ମୂର୍ତ୍ତିଙ୍କୁ ତେଣୁ ଏପରି ନାମକରଣ କରାଯାଇଛି ।

**ପଞ୍ଚମୁଖୀ ହନୁମାନ :** ଏକଦା ହରଚଣ୍ଡୀ ସାହିର କୌଣସି ଏକ ଗୃହସ୍ଥଙ୍କ ପୁରାତନ କାନ୍ଥ ଖନନ ସମୟରେ ଶ୍ୱେତ ମୁଗୁନି ପ୍ରସ୍ତରର ଏକ ବିରାଟକାୟ ପଞ୍ଚମୁଖୀ ହନୁମାନ ବିଗ୍ରହ ଆବିଷ୍କୃତ ହେବା ପରେ ଯଥାରୀତି ପୂଜା ପାଇଲେ । ପ୍ରୋକ୍ତ ମୂର୍ତ୍ତିର ଅନୁକରଣରେ ସେ ସାହିର

ଜନୈକ ବ୍ୟକ୍ତି ସ୍ୱୀୟ ଖର୍ଚ୍ଚରେ ଦଶହରା ସମୟରେ ଏକ ବିଶାଳବପୁ ସମ୍ପନ୍ନ ପଞ୍ଚମୁଖୀ ହନୁମାନ ମାଟିରେ ନିର୍ମାଣ କରି ପୂଜା କରୁଥିଲେ । ମାତ୍ର ସମ୍ପ୍ରତି ଅର୍ଥାଭାବବଶତଃ କ୍ରମଶଃ କ୍ଷୁଦ୍ରାକୃତିର ବିଗ୍ରହ ନିର୍ମିତ ତଥା ଉପାସିତ ହେଉଛନ୍ତି ।

**ପରଶୁରାମ :** ଶୀତଳ ପିଣ୍ଡା ସାହିର ବିଶିଷ୍ଟ ବ୍ୟକ୍ତିମାନେ ପୂର୍ବେ ଅତି ବିରାଟକାୟ ପରଶୁରାମ ନିର୍ମାଣ କରୁଥିଲେ । ଶୋଭାଯାତ୍ରା ସମୟରେ ସାଧାରଣ ନିରାପତ୍ତା ବ୍ୟାହତ ହେବାର ସମ୍ଭାବ୍ୟ ଆଶଙ୍କାକୁ ଦୃଷ୍ଟିରେ ରଖି ପ୍ରଶାସନ ଏହା ଉପରେ ନିୟନ୍ତ୍ରଣ ଜାରି କରିବା ଫଳରେ ସମ୍ପ୍ରତି ଅପେକ୍ଷାକୃତ କ୍ଷୁଦ୍ରମୂର୍ତ୍ତି ନିର୍ମାଣ କରାଯାଇ ପ୍ରତିବର୍ଷ ପୂଜା କରାଯାଉଛି ।

**ସମ୍ପାତି ପକ୍ଷୀ :** ଶ୍ରୀମନ୍ଦିର ଦକ୍ଷିଣଦ୍ୱାର ଦେଇ ଭିତରକୁ ପ୍ରବେଶ କଲେ ବାହାର ବେଢ଼ାର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ ଶ୍ରୀରାମଚନ୍ଦ୍ର ମନ୍ଦିରର ପ୍ରବେଶ ପଥର ଉପରିଭାଗରେ ଅରୁଣଙ୍କ ପୁତ୍ର ତଥା ଜଟାୟୁଙ୍କ ଅଗ୍ରଜ ରୂପେ ପରିଚିତ ସମ୍ପାତିପକ୍ଷୀ ଉଡ୍ଡୀୟମାନ ଅବସ୍ଥାରେ ଅଷ୍ଟମଲ୍ଲଙ୍କୁ ତାର ପକ୍ଷରେ ବହନ କରିଥିବା ସିମେଣ୍ଟ ନିର୍ମିତ ଏକ ପ୍ରକଳ୍ପ ଦୃଷ୍ଟିଗୋଚର ହୋଇଥାଏ । ମାର୍କଣ୍ଡେଶ୍ୱର ସାହିରେ ଅନୁଷ୍ଠିତ ସାହି ଯାତ୍ରାରେ ଅଭିନୀତ ହେଉଥିବା ଏହି ଦୃଶ୍ୟାଭିନୟ ଅର୍ଥାତ୍ ରାମଲୀଳାର ସମ୍ପାତି ଉପାଖ୍ୟାନ ଦେଖି, ସାତବଖରାଜାଗାର ବଡ଼ସନ୍ଥ ମଠର ମହନ୍ତ, ଏପରି ମୁଗ୍ଧ ହୋଇଗଲେ ଯେ ସେ ଆପଣାର ସାତବଖରା ବିଜେଷ୍ଟଳୀକୁ ପଞ୍ଚାୟତ ଜାଗା ରୂପେ ଖଞ୍ଜି ଦେଲେ । ପୁନଶ୍ଚ ସମ୍ପାତି ପକ୍ଷ ଉପରେ ଉପବିଷ୍ଟ ଅଷ୍ଟମଲଙ୍କ ନାମରେ ମଧ ଖଞ୍ଜି ଦେଲେ । ମାର୍କଣ୍ଡେଶ୍ୱର ସାହିସ୍ଥ ରାୟବାହାଦୁର ଲେନ୍‌ରେ ଥିବା ସାତବଖରା ଜାଗାର ସାଙ୍ଗମାନେ ପ୍ରତିବର୍ଷ ଦଶହରା ସମୟରେ ସେହିପୂର୍ବ ସ୍ମୃତି ଗିରି, ଗୋବର୍ଦ୍ଧନ, ନଳ, ନୀଳ, ଅଙ୍ଗଦ, ହନୁମାନ, ଜାମ୍ବବ, ସୁଷେଣ ପ୍ରଭୃତି ଶ୍ରୀରାମଚନ୍ଦ୍ରଙ୍କର ଅଷ୍ଟବୀର ସେନାପତିଙ୍କୁ ଉଭୟ ପକ୍ଷରେ ବହନ କରିଥିବା ଏହି ୧୮ ଫୁଟ ଉଚ୍ଚତା ବିଶିଷ୍ଟ ସମ୍ପାତି ପକ୍ଷୀ ନିର୍ମାଣ କରି ସ୍ଥାପନା କରିଥାନ୍ତି । ଏହି ମୂର୍ତ୍ତି ପ୍ରକଳ୍ପର ଗଠନ ଶୈଳୀ ବେଶ ବିସ୍ମୟପ୍ରଦ । କାରଣ ଉଡ଼ନ୍ତା ଅବସ୍ଥାରେ ଥିବା ଏତେ ବଡ଼ ପକ୍ଷୀର ଡାଞ୍ଚା କିଳା ସାହାଯ୍ୟରେ କେଉଁଠି ଭୂମିସ୍ପର୍ଶ କରିଛି କିମ୍ବା ମେଢ଼ସହ ସଂଯୁକ୍ତ ହୋଇଛି, ଏହା ସାଧାରଣ ଲୋକେ ଅନୁସନ୍ଧାନ କଲେ ମଧ ଜାଣିପାରନ୍ତି ନାହିଁ ।

**ନାଗା :** ପୂର୍ବେ ଶ୍ରୀକ୍ଷେତ୍ରର ସୁରକ୍ଷା ତଥା ଶ୍ରୀଜୀଉଙ୍କ ନିରାପତ୍ତା ନିମିତ୍ତ ଠାକୁରରାଜା ଶ୍ରୀମନ୍ଦିର ଚତୁଃପାର୍ଶ୍ୱରେ ଜାଗା ଆଖଡ଼ାମାନ ସୃଷ୍ଟି କରି ଯୁବକମାନଙ୍କୁ ସୁଶ୍ରୀ, ବଳିଷ୍ଠ, ସାହସୀ ଓ ପରାକ୍ରମୀ କରି ଗଢ଼ି ତୋଳିବା ଉଦ୍ଦେଶ୍ୟରେ ସେମାନଙ୍କୁ ସମର କୌଶଳ ପ୍ରଶିକ୍ଷଣ ଦେବା ନିମିତ୍ତ ପାଇକ ସର୍ଦ୍ଦାର ରୂପେ ନାଗା ସନ୍ୟାସୀମାନଙ୍କୁ ନିଯୁକ୍ତ କରୁଥିଲେ । ପୁନଶ୍ଚ ସମରାଭ୍ୟାସରେ ଉତ୍ତୀର୍ଣ୍ଣ ତାଲିମ ପ୍ରାପ୍ତ ବଳଶାଳୀ ଯୁବକମାନଙ୍କୁ ବିଭିନ୍ନ ଅସ୍ତ୍ରଶସ୍ତ୍ର ତଥା ସାଜସରଞ୍ଜାମରେ ବୀର ନାଗାବେଶରେ ସଜେଇ ସାହିଯାତ୍ରାରେ ସର୍ବସାଧାରଣଙ୍କ ଦୃଷ୍ଟି ଆକର୍ଷଣ ନିମିତ୍ତ ପଟୁଆରରେ ବାହାର କରାଯାଉଥିଲା । ପରିବର୍ତ୍ତିତ ସମୟ ପରିପ୍ରେକ୍ଷୀରେ ଜାଗା ଆଖଡ଼ାର ପ୍ରାସଙ୍ଗିକ ଗୁରୁତ୍ୱ ହଜି ଯାଇଥିବା ସ୍ଥଳେ ସେହି ସ୍ମୃତି ଅବଲମ୍ବନରେ କାର୍ତ୍ତିକ ଉଦ୍‌ଯାପନୀରେ ଷଡ଼ଦିବସ ବ୍ୟାପୀ ପଞ୍ଚକର ମଳ ତିଥିରେ ଶ୍ରୀଜୀଉଙ୍କ ନାଗାର୍ଜୁନ ବେଶ ଅନୁଷ୍ଠିତ ହୋଇଆସୁଅଛି । ତତ୍‌ସହିତ ସାହି ଯାତ୍ରାରେ ଅଂଶଗ୍ରହଣ କରିଥିବା ନାଗାନର୍ତ୍ତକଙ୍କ ଅନୁକରଣରେ ପୂର୍ବେ ଦଶହରାରେ ଶ୍ରୀକ୍ଷେତ୍ରର ବହୁ ସ୍ଥାନରେ ବିରାଟକାୟ ନାଗାମୂର୍ତ୍ତି ସବୁ ନିର୍ମାଣ ପୂର୍ବକ ପୂଜା କରାଯାଉଥିଲା । ସମ୍ପ୍ରତି ହରଚଣ୍ଡୀ ସାହି ଓ ବାଲିସାହିର ପାରମ୍ପରିକ ନାଗା ସହିତ ଦୋଳମଣ୍ଡପ ସାହିର ବେଲୁସିଂହାରୀ ତାଙ୍କର ବ୍ୟକ୍ତିଗତ ଖର୍ଚ୍ଚରେ ନାଗା ନିର୍ମାଣ କରୁଛନ୍ତି । ବହୁ ବିଚିତ୍ର ଅସ୍ତ୍ରଶସ୍ତ୍ର ସହିତ ବିଭିନ୍ନ ସାଜସରଞ୍ଜାମ ଶୋଭିତ ୧୪ ଫୁଟ ଉଚ୍ଚତା ବିଶିଷ୍ଟ ବିଶାଳ ନାଗାମୂର୍ତ୍ତି ସବୁ ମାଟିରେ ନିର୍ମିତ ହୋଇ ବନଦୁର୍ଗା ମନ୍ତ୍ରରେ ଉପାସିତ ହେଉଛନ୍ତି । ଶ୍ରୀକ୍ଷେତ୍ର ବ୍ୟତୀତ ଅନ୍ୟ କୁତ୍ରାପି ଏତାଦୃଶ ନାଗାମୂର୍ତ୍ତି ଉପାସନା ପରିଦୃଷ୍ଟ ହୁଏ ନାହିଁ । ଏହା ଶ୍ରୀକ୍ଷେତ୍ର ସଂସ୍କୃତିର ଅନ୍ୟ ଏକ ବୈଶିଷ୍ଟ୍ୟ ଅଟେ ।

ଏତଦ୍‌ଭିନ୍ନ ମାଟିମଣ୍ଡପ ସାହିରେ ବାବୁ ସୂପକାରଙ୍କ ଶିବତାଣ୍ଡବ, ମଣିକର୍ଣ୍ଣିକା ସାହିରେ କୃଷ୍ଣକାଳୀ, ଦୋଳମଣ୍ଡପ ସାହିରେ ନାରୁ ସାହି ନାୟକଙ୍କ ରାବଣ, ବିଶିଆ ପାତ୍ରୁଣୀଙ୍କ (ପଟ୍ଟଯୋଶୀ) ମାଲ, ଯାତ୍ରୀଙ୍କୁ କୁଶବଟୁ ପିନ୍ଧାଉଥିବା ବେଲତିଆଡ଼ୀ ବୁଢ଼ା, ହରଚଣ୍ଡୀ ସାହିରେ ହାଡ଼ିଆବଣିଆଭୂତ, ମାର୍କଣ୍ଡେଶ୍ୱର ସାହିରେ ବୁଢ଼ାବୁଢ଼ୀ, ଶୀତଳ ପିଣ୍ଡା ସାହିରେ ଏକ କ୍ଷୁଦ୍ରାକୃତିର ମାଲ, ସାପୁଆକେଳା ଓ ଗୁଣିଆ ଇତ୍ୟାଦି ଅଗଣିତ କ୍ଷୁଦ୍ର ତଥା କୌତୁକପ୍ରଦ ମୂର୍ତ୍ତିସବୁ ନିର୍ମାଣ କରାଯାଇ ଦଶହରାବେଳେ ଦୁର୍ଗାମନ୍ତ୍ରରେ ପୂଜା କରାଯାଇଥାଏ ।

ଶାରଦୀୟ ମହାପୂଜାରେ ପୀଠଦେବୀଙ୍କର ଆବାହନୀପର୍ବ ସାଧାରଣତଃ ଆଶ୍ୱିନ କୃଷ୍ଣ ମୂଳାଷ୍ଟମୀଠାରୁ ଶୁକ୍ଳ ମହାନବମୀ ପର୍ଯ୍ୟନ୍ତ ଷୋହଳଦିନ ବ୍ୟାପୀ ପାରମ୍ପରିକ ରୀତିରେ ପାଳନ କରାଯାଇଥାଏ, ଯାହାକୁ ଷୋହଳପୂଜା କହନ୍ତି । ମାତ୍ର ମୃଣ୍ମୟୀ ଦୁର୍ଗାମାନଙ୍କର ମହାସପ୍ତମୀରୁ ମହାନବମୀ ପର୍ଯ୍ୟନ୍ତ ସର୍ବତ୍ର ତ୍ରିଦିବସାତ୍ମକ ପୂଜା ଅନୁଷ୍ଠିତ ହୋଇଥାଏ । କିନ୍ତୁ ଶ୍ରୀକ୍ଷେତ୍ରରେ ଏହାର ବ୍ୟତିକ୍ରମ ଘଟି ସେବାୟତ ପିଲାମାନଙ୍କ ଉଦ୍ୟମରେ ନିର୍ମିତ କ୍ଷୁଦ୍ରଠାରୁ ବୃହତ୍ ପର୍ଯ୍ୟନ୍ତ ସର୍ବବିଧ ମୃତ୍ତିକା ବିଗ୍ରହଙ୍କୁ ମହାସପ୍ତମୀରୁ ଏକାଦଶୀ ପର୍ଯ୍ୟନ୍ତ ପାଞ୍ଚଦିନ ବ୍ୟାପୀ ଗୋସାଣୀ ରୂପେ ପୂଜା କରାଯାଇ ଗୋସାଣୀଯାତ ଅନୁଷ୍ଠିତ ହୋଇଥାଏ । ସମସ୍ତ ଦେବଦେବୀଙ୍କର ସ୍ୱତନ୍ତ୍ର ପୂଜାମନ୍ତ୍ର ଥିଲେ ହେଁ ଶ୍ରୀକ୍ଷେତ୍ରରେ ମୃତ୍ତିକା ନିର୍ମିତ ସମସ୍ତ ବିଗ୍ରହଙ୍କୁ ପୂଜା ଉପଚାର ଦୃଷ୍ଟିରୁ ଭୈରବୀ ମନ୍ତ୍ରରେ ଆବାହନ କରାଯାଇ ଯୋଗିନୀ ରୂପେ ପରିକଳ୍ପିତ ଏହି ମୃତ୍ତିକା ବିଗ୍ରହମାନଙ୍କୁ ଦୁର୍ଗାମନ୍ତ୍ର/ଭୁବନେଶ୍ୱରୀ ମନ୍ତ୍ରରେ ପୂଜା (୧୪) କରାଯାଇଥାଏ । ଶ୍ରୀକ୍ଷେତ୍ରରେ ପୂଜିତ ଏହି ଗୋସାଣୀମାନେ





ହେଉଛନ୍ତି ଉତ୍କଳୀୟ ଶାକ୍ତ ପରମ୍ପରାର ଏକ ସାତ୍ତ୍ୱିକ ପରିପ୍ରକାଶ । ଦେବତା ନିଜ ଆକୃତିରେ ମଣିଷ ଗଢ଼ିଛି କି ନା, ତାହା ନିର୍ଦ୍ଧାରଣ କରିବା ସ୍ୱଳ୍ପ ବୁଦ୍ଧି ସମ୍ପନ୍ନ ମନୁଷ୍ୟ ପକ୍ଷେ ହୁଏତ ଅସମ୍ଭବ । ମାତ୍ର ମଣିଷ ଦେବତାଙ୍କୁ ଯେପରି ବୁଝିଛି ସେହିମତେ ନିଜ ଅନୁକୃତିରେ ଦେବତା ପରିକଳ୍ପନା କରି ତାଙ୍କଠାରେ ଲୌକିକତା ଆରୋହଣପୂର୍ବକ ତାଙ୍କପାଇଁ ନିଜ ରୁଚି ମୁତାବକ ଭୋଗ ନୈବେଦ୍ୟର ବ୍ୟବସ୍ଥା କରିଆସିଛି । ଜୀବଜଗତ୍‌ର ମାନବେତର ଅନ୍ୟକୌଣସି ଶାକାହାରୀ ମାଂସଭୋଜନ କରେ ନାହିଁ କିମ୍ବା କୌଣସି ମାଂସଭୋଜୀ ପ୍ରାଣୀ ଶାକଭକ୍ଷଣ କରିନଥାଏ । ମାତ୍ର ମନୁଷ୍ୟ ଏପରି ଏକ ଜୀବ, ଯିଏକି ବିନାଦ୍ୱିଧାରେ ଶାକ ଓ ମାଂସ ଉଭୟ ଗ୍ରାସ କରିଥାଏ । ଦେବୀ ମହିଷହନ୍ତ୍ରୀ ରୂପେ ପ୍ରତିଷ୍ଠାଲାଭ କରିବା ପୂର୍ବରୁ ସୃଷ୍ଟିରକ୍ଷା ନିମିତ୍ତ ଶସ୍ୟପାଳିକା ଶାକମ୍ଭରୀ ରୂପେ ଉପାସିତ ହେଉଥିବା ଶାସ୍ତ୍ରୀୟତାକୁ ଉପଜୀବ୍ୟ କରି ଫଳାହାରୀ ଗୋସାଣୀ ଉପାସନାକୁ ଆପଣେଇ ନେଇ ଶ୍ରୀକ୍ଷେତ୍ର ଚିନ୍ତନର ମୌଳିକତା ପ୍ରତିପାଦିତ ହୋଇଅଛି । ଶାକମ୍ଭରୀ ମା' କେବେ ରକ୍ତଲୋଲୁପୀ ହୋଇ ନପାରନ୍ତି । କିନ୍ତୁ ମନୁଷ୍ୟ ସ୍ୱପ୍ରବୃତ୍ତିକ୍ରମେ କେଉଁ ମାତୃମୂର୍ତ୍ତିଙ୍କୁ ବଳିଭୋଜା ଖଞ୍ଜି ଦେଇଛି ତ କେଉଁ ମମତାମୟୀ ମା'ଙ୍କୁ ଜହ୍ନିକାକୁଡ଼ି, ଖଜାପିଠା, ପଣାଭୋଗ ଉତ୍ସର୍ଗ କରି ବଳି ବିରୋଧରେ ସାତ୍ତ୍ୱିକ ପ୍ରତିବାଦ ପ୍ରକଟ କରିଆସିଛି । ପବିତ୍ର ବୈଷ୍ଣବପୀଠ ଶ୍ରୀକ୍ଷେତ୍ରରେ ବିମଳାଙ୍କ ପ୍ରତିଷ୍ଠା ସମୟରୁ ବାମାଚାରୀ ତାନ୍ତ୍ରିକତା ପ୍ରଭାବରେ ଦଶହରା ଅବସରରେ ମହାସପ୍ତମୀ, ମହାଷ୍ଟମୀ ଓ ମହାନବମୀ ନିଶାର୍ଦ୍ଧରେ ଛାଗବଳି ପ୍ରଦାନର ବ୍ୟବସ୍ଥା ପ୍ରବର୍ତ୍ତିତ ହେବା ସହିତ ବିମଳାଙ୍କ ପ୍ରତିନିଧି ବିମଳେଇ/କାକୁଡ଼ିଖାଇଙ୍କ ନିକଟରେ ମାନସ ବଳିଗୁଡ଼ିକ ଛେଦପଡ଼ିବା ପରମ୍ପରା ସୃଷ୍ଟି ହୋଇଛି । ପ୍ରୋକ୍ତ ବଳିପ୍ରଧାନୀ ଶକ୍ତିପୂଜାର ତୀବ୍ର ବିରୋଧ କରି ଗୋସାଣୀ ବିଗ୍ରହମାନଙ୍କୁ ବଳି ବିକଳ୍ପରେ କାକୁଡ଼ି, ଜହ୍ନି, ବେଲ, ପଣା, ଖଜାପିଠା, ମରିଚଲଡ୍ଡୁ ଇତ୍ୟାଦି ନୈବେଦୀ ଭୋଗ ଲଗାଇ ବଳି ବ୍ୟବସ୍ଥା ପ୍ରତି କଟାକ୍ଷପାତ କରିବା ସହିତ ଦେବୀ ଯେ ଫଳାହାରୀ ସାତ୍ତ୍ୱିକ ବିଗ୍ରହ ଏହା ପ୍ରମାଣିତ ହୋଇଛି । ଗୋସାଣୀମାନଙ୍କର ଜହ୍ନିଖାଇ, କାକୁଡ଼ିଖାଇ, ବେଲବାଇ, ପଣାପ୍ରିୟା ପ୍ରଭୃତି ନାମକରଣ ଏ ପ୍ରମାଣକୁ ପୁଷ୍ଟି କରୁଛି । ପୀଠାଧିଶ୍ୱରୀ ବିମଳା ମନ୍ଦିରରେ ବାମାଚାରୀ ତନ୍ତ୍ରପୂଜା ପ୍ରଚଳିତ ଥିବା ଉପଯୁକ୍ତ ତ୍ରିଦିବସରେ ଶ୍ରୀଜଗନ୍ନାଥଙ୍କ ପ୍ରସାଦ, ଖଣ୍ଡୁଆ, ଶାଢ଼ୀ ପ୍ରଭୃତି ଆଣି ବିଭିନ୍ନ ଗୋସାଣୀମାନଙ୍କୁ ପ୍ରତ୍ୟାର୍ପଣ କରାଯାଉଥିବାରୁ ଶ୍ରୀମନ୍ଦିର ନୀତି ସହ ସମ୍ପର୍କିତ ଗୋସାଣୀମାନେ ଯେ ସାତ୍ତ୍ୱିକ ବିଗ୍ରହ ବୈଷ୍ଣବୀ ଶକ୍ତି, ଏହା ସୂଚିତ ହୋଇଥାଏ । ଏହି ଅବସରରେ ଗୋସାଣୀମାନଙ୍କୁ ପଶୁବଳି ଦିଆଯାଏ ନାହିଁ । ବଳି ପରିବର୍ତ୍ତେ ଜହ୍ନି, କାକୁଡ଼ି, ପାଣିକଖାରୁକୁ ପଶୁମନ୍ତ୍ରରେ ଅଭିମନ୍ତ୍ରିତ କରି ଭୋଗ ଲଗାଯାଏ, ଯେଉଁ ଭୋଗରେ ବଳିର ତାତ୍ପର୍ଯ୍ୟ ମାତ୍ର ପରିସ୍ଫୁଟ ହୋଇଥାଏ । ବଳିଲୋଲୁପୀ ଦେବୀଗଣ ଅସ୍ଥିକଙ୍କାଳସାର ହୋଇଥିବା ସ୍ଥଳେ ଶ୍ରୀକ୍ଷେତ୍ରର ଗୋସାଣୀମାନେ ଫଳାହାରୀ ସାତ୍ତ୍ୱିକ ଦେବୀ, ଏହା ତାଙ୍କ ପେଶୀବହୁଳ ଓ ସୁସ୍ଥ ଶରୀର ରୂପାୟନରୁ ବୁଝିହୁଏ ।

ଶ୍ରୀକ୍ଷେତ୍ରରେ ଗୋସାଣୀ ବିସର୍ଜନ ପ୍ରକ୍ରିୟାରେ କେତେକ ବୈଶିଷ୍ଟ୍ୟ ପରିଲକ୍ଷିତ ହୋଇଥାଏ । ଉତ୍କଳରେ ଅନ୍ୟତ୍ର ଉପାସିତ ଦୁର୍ଗା ବିଗ୍ରହ ସଦୃଶ ଶ୍ରୀକ୍ଷେତ୍ରରେ କେବଳ କାକୁଡ଼ିଖାଇ ଗୋସାଣୀଙ୍କୁ ଦଶହରା ମଧ୍ୟରାତ୍ରରେ ବିସର୍ଜନ କରାଯାଇଥାଏ । ପୂର୍ବେ ଦଶହରା ଦିନ ଏହି ଠାକୁରାଣୀ ଜଗନ୍ନାଥବଲ୍ଲଭ ମଠପାର୍ଶ୍ୱକୁ ଆସି ପୁନଶ୍ଚ ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ କରୁଥିଲେ । ତତ୍‌ପରେ ପୂର୍ବ ଆସ୍ଥାନ ଏମାର ମଠକୁ ଯାଇ ସେଠାରୁ ସାତସାହି ବୟାଳିଶ କନ୍ଦି ପରିଭ୍ରମଣ କରି ଅନ୍ୟ ମୃଣ୍ମୟୀ ଦେବୀମାନଙ୍କୁ ପରେ ପରେ ଶ୍ରୀକ୍ଷେତ୍ର ଛାଡ଼ିବା ପାଇଁ ନିଉତା ଦେଇ ଆସୁଥିଲେ । ଇତ୍ୟବସରରେ କାକୁଡ଼ିଖାଇଙ୍କୁ ୧୦୮ ଘରର ଶାଢ଼ୀଲାଗି ହୋଇ ପଙ୍‌କ୍ତି ଭୋଜନ ବନ୍ଦାପନା କରାଯାଉଥିଲା । ଏବେ ଆଉ ସେପରି ହେଉ ନାହିଁ । ସମ୍ପ୍ରତି ଦଶହରା ଦିନ ଶ୍ରୀମନ୍ଦିରରୁ ଚନ୍ଦନ ଓ ବଡ଼ଠାକୁର ବଳଦେବଙ୍କଠାରୁ ବାରହାତିଆ ଶାଢ଼ୀ ଆସି ଲାଗି ହୋଇ ପଣା ସମର୍ପଣ ପରେ କାକୁଡ଼ିଖାଇ ପଦାକୁ ବାହାରନ୍ତି । ତଦନନ୍ତର ଦେବୀଙ୍କୁ ବାରବାଟୀ ଗୋସାଣୀଙ୍କ ପର୍ଯ୍ୟନ୍ତ ନେଇ ସେଠାରୁ ବିସର୍ଜନ ଭସାଣି ଉଦ୍ଦେଶ୍ୟରେ ଜଳଘାଟକୁ ନିଆଯାଉଛି । କାକୁଡ଼ିଖାଇଙ୍କର ବିସର୍ଜନ ପ୍ରକ୍ରିୟା ମଧ୍ୟ ଭିନ୍ନ । ବିସର୍ଜନ ଶୋଭାଯାତ୍ରାରେ ଯାଇ ରାଜନବର ସମ୍ମୁଖରେ ଦେବୀଙ୍କୁ ଶାଢ଼ୀ ପ୍ରସାଦ ଲାଗି ହୋଇ ବନ୍ଦାପନା ବଢ଼ିବା ପରେ ପଶ୍ଚାତ୍‌ମୁଖୀ କରି ଜଳଘାଟ ପର୍ଯ୍ୟନ୍ତ ନିଆଯାଇଥାଏ । କଥିତ ଅଛି ଶ୍ରୀନବର ପରେ ବଳିପ୍ରିୟା ରକ୍ତପାୟୀ କାକୁଡ଼ିଖାଇଙ୍କ ଦୃଷ୍ଟି ସମକ୍ଷରେ ପଡ଼ିଲେ ଲୋକର ଆସନ୍ନମୃତ୍ୟୁ ଅବଶ୍ୟମ୍ଭାବୀ । ତେଣୁ ଶ୍ରୀମନ୍ଦିର ଅତିକ୍ରମ କରିବାପରେ ଏହି ଗୋସାଣୀଙ୍କ ମୁହଁରେ କଳାଶାଢ଼ୀ ଢାଙ୍କି ଦିଆଯାଏ । ତଦନନ୍ତର ନରେନ୍ଦ୍ର ପୁଷ୍କରିଣୀ ସଂଲଗ୍ନ ମୃଷାନଈର ଏକ ଅଣତୁଠରେ ୧୦୮ ବେଲପତ୍ର ଅଗ୍ନିରେ ଆହୂତି ପ୍ରଦାନ ପରେ କାକୁଡ଼ିଖାଇଙ୍କୁ ନଦୀଜଳରେ ଭସାଇ ଦିଆଯାଏ । ଦଶହରା ମଧ୍ୟରାତ୍ରି ସୁଦ୍ଧା କାକୁଡ଼ିଖାଇଙ୍କୁ ନଦୀଜଳରେ ଭସାଇ ଦିଆଯାଏ । ଦଶହରା ମଧ୍ୟରାତ୍ରି ସୁଦ୍ଧା କାକୁଡ଼ିଖାଇଙ୍କ ପରେ ପରେ ଦୁର୍ଗାବାସମିତି, ବଡ଼ଶଙ୍ଖ, ଷ୍ଟେସନବଜାର, ମ୍ୟୁନିସିପାଲିଟି ମାର୍କେଟର ପୂଜା ମଣ୍ଡପରେ ଅର୍ବାଚୀନ ଭାବେ ଉପାସିତ ହେଉଥିବା ଦୁର୍ଗାବିଗ୍ରହମାନଙ୍କୁ ବିସର୍ଜନ ଦିଆଯାଏ ।

ଶାରଦୀୟା ମହାପୂଜାର ଅବ୍ୟବହିତ ପରେ ଆଶ୍ୱିନ ଶୁକ୍ଳ ଏକାଦଶୀ ଦିନ ଅପରାହ୍ଣରେ ବିଭିନ୍ନ ପୂଜାମଣ୍ଡପରେ ଗୋସାଣୀମାନଙ୍କୁ ମନ୍ତ୍ରମାଧ୍ୟମରେ ବିସର୍ଜନ କରିସାରିବା ପରେ ଆସ୍ଥାନରୁ ଧୂପ, ଦୀପ, ଦିହୁଡ଼ି, ଛତ୍ର, ଚାମର, ଚାନ୍ଦୁଆ, ଘଣ୍ଟ, କାହାଳୀ, ମର୍ଦ୍ଦଳ, ଶଙ୍ଖ, ଢୋଲ, ଚାଙ୍ଗୁ, ତୂରୀ, ମହୁରି, ତେଲିଙ୍ଗିବାଜାର ପଟୁଆରରେ ସାହିଭେଣ୍ଡିଆମାନେ କାନ୍ଧରେ ବହନ କରି ଆଣି ସିଂହଦ୍ୱାର ସମ୍ମୁଖ





ଅରୁଣସ୍ତମ୍ଭ ସଂଲଗ୍ନ ପ୍ରଶସ୍ତ ସ୍ଥାନରେ ଗୋସାଣୀମାନଙ୍କୁ ସମବେତ କରାନ୍ତି । ଏହାକୁ ଗୋସାଣୀ ମେଳନ/ମିଳନ କୁହାଯାଏ । ପୂର୍ବେ ଏହି ଗୋସାଣୀ ମେଳନ ନନ୍ଦିଗ୍ରାମ ନାମରେ ବିଦିତ ଜଗନ୍ନାଥବଲ୍ଲଭ ମଠ ପ୍ରାଙ୍ଗଣରେ (୧୫) ଅନୁଷ୍ଠିତ ହେଉଥିବାରୁ ତାହାର ସ୍ମାରକୀ ସ୍ୱରୂପ ସମ୍ପ୍ରତି ସେଠାରେ ବିଭିନ୍ନ ଗୋସାଣୀଙ୍କ ଚିତ୍ରପଟି/ପଟ୍ଟଚିତ୍ର ପୂଜା ହେବାର ବ୍ୟବସ୍ଥା ପ୍ରଚଳିତ ଅଛି । କେବେଠାରୁ ଏହା ସିଂହଦ୍ୱାରକୁ ସ୍ଥାନାନ୍ତରିତ ହେଲା ଜଣାଯାଏ ନାହିଁ । ଆଲୋଚ୍ୟ ଗୋସାଣୀମାନଙ୍କର ଶ୍ରୀମନ୍ଦିର ସହ ନିବିଡ଼ ସମ୍ପର୍କ ବିଦ୍ୟମାନ । ସେହି ହେତୁ ମହାପ୍ରଭୁଙ୍କ ଅନୁମତି/ଆଜ୍ଞାମାଳ ପାଇ ଏହି ଗୋସାଣୀମାନଙ୍କୁ ଆବାହନ କରାଯାଇ ପୂଜା ପ୍ରବନ୍ଧ କରାଯାଇଥାଏ । ତେଣୁ ଭସାଣୀର ଅବ୍ୟବହିତ ପୂର୍ବରୁ ଏଠାରେ ଗୋସାଣୀମାନଙ୍କୁ ସମବେତ କରିବା ଯଥାର୍ଥ ମନେହୁଏ । ଏଠାରେ ମୃଣ୍ମୟୀ ବିଗ୍ରହମାନଙ୍କ ସମ୍ମିଳନକୁ ଗୋସାଣୀଯାତ କୁହାଯାଏ । ଏହି ଗୋସାଣୀଯାତକୁ ନିୟମିତ ଅବ୍ୟାହତ ରଖିବା ତଥା ସମଧିକ ଆକର୍ଷଣୀୟ କରିବା ଅଭିପ୍ରାୟରେ ପ୍ରତିଯୋଗିତା ମନୋବୃତ୍ତି ଅଭିବୃଦ୍ଧି ନିମିତ୍ତ ପୂର୍ବେ ଠାକୁର ରାଜାଙ୍କ ତରଫରୁ ସମବେତ ବିଗ୍ରହମାନଙ୍କୁ ପୁରସ୍କୃତ କରାଯିବାର ପରମ୍ପରା ଥିବାରୁ ଆଲୋଚ୍ୟ ଗୋସାଣୀଯାତ ପୃଷ୍ଠଭୂମିରେ ଯେ ରାଜସ୍ୱୀକୃତି ତଥା ରାଜପ୍ରୋତ୍ସାହନ ନିହିତ ଥିଲା, ଏହା ନିଃସନ୍ଦେହ । ପୁନଶ୍ଚ ଶ୍ରୀକ୍ଷେତ୍ରର ବ୍ୟାପକ ଅଞ୍ଚଳରେ ବୁଲି ସବୁ ବିଗ୍ରହଙ୍କୁ ଦର୍ଶନ କରିବା ହୁଏତ ସମସ୍ତଙ୍କ ପକ୍ଷେ ସମ୍ଭବ ହୁଏ ନାହିଁ । ଏପରି ସ୍ଥଳେ ଜାଗା ଆଖଡ଼ାର ସାଙ୍ଗମାନେ ପ୍ରତିଯୋଗିତା ଭିତ୍ତିରେ ସେମାନଙ୍କ ଅନୁଷ୍ଠାନ ପକ୍ଷରୁ ବହୁ ଶ୍ରମ ତଥା ଅର୍ଥ ବିନିଯୋଗରେ ନିର୍ମାଣ କରିଥିବା ମୃଣ୍ମୟ ମୂର୍ତ୍ତିମାନଙ୍କୁ ମୂଲ୍ୟାୟନ ନିମିତ୍ତ ସମସ୍ତଙ୍କ ଦୃଷ୍ଟିସମକ୍ଷକୁ ଆଣି ସ୍ୱୟଂ ଠାକୁର ରାଜାଙ୍କ ଶ୍ରୀହସ୍ତରୁ ପୁରସ୍କାର ପାଇବା ଆଶାରେ ସେଗୁଡ଼ିକୁ ସିଂହଦ୍ୱାରରେ ଏକତ୍ରିତ କରାଇବା ହେଉଛି, ଏହାର ଅନ୍ତର୍ନିହିତ ଉଦ୍ଦେଶ୍ୟ । ଗୋସାଣୀମାନେ ସମବେତ ହେଉଥିବା ସିଂହଦ୍ୱାର ସମ୍ମୁଖସ୍ଥ ଏହି କ୍ଷେତ୍ର ସ୍ଥାନୀୟ ପରିଭାଷା ଅନୁସାରେ 'ଗୋସାଣୀପଦା' ନାମରେ ପରିଚିତ ହୋଇଥିଲେ ହେଁ ବାସ୍ତବରେ 'ଦେବୀମାନଙ୍କର ସଭା' ଅନୁଷ୍ଠିତ ଏହି ସ୍ଥଳ (ବ୍ୟାକରଣଗତ ନିୟମାନୁସାରେ ଛାଗୀର ଦୁଗ୍ଧ = ଛାଗଦୁଗ୍ଧବତ୍) 'ଦେବସଭା' ନାମରେ ସର୍ବଜନାଦୃତ । ଦଶହରାର ପରବର୍ତ୍ତୀ ଦିବସ ଏକାଦଶୀ ତିଥିର ଅପରାହ୍ନରେ ପ୍ରଥମ ପର୍ଯ୍ୟାୟରେ ବାରବାଟୀ ଗୋସାଣୀଙ୍କ ନେତୃତ୍ୱରେ ଜହ୍ନିଖାଇ, ଶୂନ୍ୟଗୋସାଣୀ, ଭୋଗଜାଗା ହରଚଣ୍ଡୀ ମହତ୍ତେଶ୍ୱରୀ, ଚକ୍ରକୋଟ ଠାକୁରାଣୀ ପ୍ରଭୃତି ମହିଷାମର୍ଦ୍ଦିନୀ ବିଗ୍ରହଗୁଡ଼ିକୁ ଆଣି ଦେବସଭାର ଉଦ୍ଦିଷ୍ଟ ଆସ୍ଥାନରେ ବିରାଜମାନ କରାଇବା ପରେ ପରେ ଶିବତାଣ୍ଡବ, ଶ୍ରୀଗଣେଶ, ପଞ୍ଚମୁଖୀ ହନୁମାନ, ରାବଣେଶ୍ୱର ମହାଦେବ, ପରଶୁରାମ, କୃଷ୍ଣକାଳୀ ବଳରାମ, ମାଲ, ନାଗା ସମେତ ଅନ୍ୟାନ୍ୟ କ୍ଷୁଦ୍ରବୃହତ୍ ସମସ୍ତ ମୂର୍ତ୍ତିମାନଙ୍କୁ ଆଣି ଏଠାରେ ସମବେତ କରାଯାଉଥିଲେ ହେଁ ଏହା ମୁଖ୍ୟତଃ ଗୋସାଣୀ ମିଳନ/ମେଳଣ ବା ଗୋସାଣୀଯାତ ନାମରେ ସୁପ୍ରସିଦ୍ଧ । ଭକ୍ତ ଶ୍ରୀମନ୍ଦିର ପରିକ୍ରମା ଅବସରରେ ମହାଲକ୍ଷ୍ମୀ ମନ୍ଦିର ପରିତ୍ୟାଗ ପୂର୍ବରୁ ଯେପରି କିଛି ସମୟ ତାଙ୍କ ଜଗମୋହନରେ ଉପବେସନ କରିଥାନ୍ତି, ଠିକ୍ ସେହିପରି ରଥଯାତ୍ରା ସମୟରୁ ଆସିଥିବା ଦେବୀମାନେ ଶ୍ରୀକ୍ଷେତ୍ରରୁ ବାହୁଡ଼ିଯିବା ପୂର୍ବରୁ ସିଂହଦ୍ୱାର ସମ୍ମୁଖରେ ଉପସ୍ଥିତ ହୋଇ ପରମଭୈରବୀ ବିମଳା ଓ ମହାଭୈରବ ଶ୍ରୀଜଗନ୍ନାଥଙ୍କ ଦର୍ଶନାଭିଳାଷରେ ପ୍ରତୀକ୍ଷା କରିଥାନ୍ତି ବୋଲି ଲୋକ ବିଶ୍ୱାସ ରହିଛି । ସନ୍ଧ୍ୟା ଆଗମନୀ ସଙ୍ଗେ ସଙ୍ଗେ ସମ୍ପୃକ୍ତ ପୂଜା ଅନୁଷ୍ଠାନ ତରଫରୁ ସୋଲଜରିର ମୁକୁଟ କିରୀଟ ତଥା ଆନୁଷଙ୍ଗିକ ସାଜସଜ୍ଜା ଦ୍ୱାରା ନିଜ ନିଜର ବିଗ୍ରହମାନଙ୍କୁ ସୁଶୋଭିତ କରି ସର୍ବସାଧାରଣଙ୍କର ଦର୍ଶନ ନିମିତ୍ତ ଆକର୍ଷଣୀୟ ଆଲୋକମାଳାର ସୁବନ୍ଦୋବସ୍ତ କରାଯାଇଥାଏ । ତତ୍‌ପରେ ଜନମନୋରଞ୍ଜନ ଉଦ୍ଦେଶ୍ୟରେ କେତେକ ଗୋସାଣୀଙ୍କ ସମ୍ମୁଖରେ ଓଡ଼ିଶୀ ନୃତ୍ୟ ସଙ୍ଗୀତ ସର୍ବୋପରି ଭଜନ ପ୍ରଭୃତି ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଇ ଏହି ମିଳନପୀଠ ଏକ ଭକ୍ତିପୂତ ପରିବେଶରେ ମୁଖରିତ ହେବା ସହିତ ଗୋସାଣୀଯାତ ବେଶ୍ ଉପଭୋଗ୍ୟ ହୋଇଉଠେ । ଏହି ଗୋସାଣୀଯାତ ଉପଭୋଗ କରିବା ନିମିତ୍ତ ପୁରୀ ସନ୍ନିକଟବର୍ତ୍ତୀ ପଞ୍ଚକୋଶୀ ତଥା ରାଜ୍ୟର ବିଭିନ୍ନ ପ୍ରାନ୍ତରୁ ଆସିଥିବା ଯାତ୍ରୀ ସର୍ବୋପରି ବଙ୍ଗ ଗୋସେଇଁଆଣୀମାନଙ୍କ ବହୁଳ ସମାଗମ ଯୋଗୁଁ ଉତ୍ସବ ମୁଖରିତ ହୋଇଉଠେ ସମଗ୍ର ଶ୍ରୀକ୍ଷେତ୍ର । ସାଧାରଣତଃ ଅଷ୍ଟମଲ୍ଲ ବହନ କରିଥିବା ସମ୍ପାତିପକ୍ଷୀ, ଅନେକ ଅସ୍ତ୍ରଶସ୍ତ୍ର ଭୂଷିତ ନାଗା ଓ କୌତୁକ ପ୍ରଦର୍ଶନ କରୁଥିବା ବୁଢ଼ାବୁଢ଼ୀ ଓ ଭୂତ ପ୍ରଭୃତି ମୂର୍ତ୍ତି ନିକଟରେ ଅପେକ୍ଷାକୃତ ଅଧିକ ଜନସମାବେଶ ହେବାର ଦେଖାଯାଏ । ଅତୀତରେ ଗଜପତି ମହାରାଜାଙ୍କ ଦ୍ୱାରା ସମବେତ ଗୋସାଣୀଙ୍କର ସାମଗ୍ରିକ ମୂଲ୍ୟାୟନ/ମୂଲ୍ୟାଙ୍କନ କରାଯାଇ ପୁରସ୍କୃତ କରାଯିବାର ପରମ୍ପରା ଥିଲା । ମାତ୍ର କ୍ରମେ ଗଜପତିଙ୍କ କ୍ଷମତା ସଙ୍କୁଚିତ ହୋଇଯିବା ପରେ ନିକଟ ଅତୀତରେ ଆନନ୍ଦ ଆଡ଼ଭଟାଇଜରସ ପ୍ରତିଷ୍ଠାତା ସ୍ୱର୍ଗତଃ ଲାୟନ ବଳବନ୍ତ କୁମାର ମିଶ୍ରଙ୍କ ତରଫରୁ ଶ୍ରେଷ୍ଠ ବିବେଚିତ ମୂର୍ତ୍ତି, ମୂର୍ତ୍ତିକାର, ସାଜସଜ୍ଜା କଳାକାର ସର୍ବୋପରି ଶୃଙ୍ଖଳିତ ଅନୁଷ୍ଠାନମାନଙ୍କୁ ପୁରସ୍କାର ସ୍ୱରୂପ ରନିଂସିଲ୍‌ଡ ପ୍ରଦାନ ମଧ୍ୟ କରାଯାଉଥିଲା । ଫଳରେ ଫଳାଫଳ ଜାଣିବା ସହିତ ଭସାଣି ଉତ୍ସବ ଦେଖିବା ଉଦ୍ଦେଶ୍ୟରେ ରାତ୍ରିର ବିଳମ୍ବିତ ପ୍ରହର ପର୍ଯ୍ୟନ୍ତ ଦେବସଭା ତଥା ସମଗ୍ର ସହର ଲୋକାରଣ୍ୟ ରହୁଥିଲା । ଶିଳ୍ପୀ ତଥା ଅନୁଷ୍ଠାନ ବିଶେଷଙ୍କୁ ପ୍ରୋତ୍ସାହିତ କରିବା ନିମିତ୍ତ ଏହି ପୁରସ୍କାର ପ୍ରଦାନ ବ୍ୟବସ୍ଥା ଅଭିପ୍ରେତ ହୋଇଥିଲେ ହେଁ ଆନନ୍ଦ ଆଡ଼ଭର୍ଟାଇଜର୍ସ ତରଫରୁ ସ୍ଥାନୀୟ ବିଭିନ୍ନ ସାଂସ୍କୃତିକ ପ୍ରତିଷ୍ଠାନ, ସାମ୍ବାଦିକ ସର୍ବୋପରି ଅସୀମ ବସୁ ପ୍ରଭୃତିଙ୍କୁ ନେଇ ଗଠିତ ବିଚାରକ ମଣ୍ଡଳୀ ଦ୍ୱାରା ଘୋଷିତ ଫଳାଫଳକୁ ସମ୍ମାନ ନ ଦେଇ ହତାଶ ହୋଇ ପରସ୍ପର ମଧ୍ୟରେ ଗଣ୍ଡଗୋଳ କରିବାରୁ ଏହା ସ୍ୱତଃ ବନ୍ଦ ହୋଇଯାଇଛି । ମାତ୍ର ଏବେ ମୂର୍ତ୍ତି-କାରିଗର, ମେଢ଼ କାରିଗର ପ୍ରଭୃତିଙ୍କୁ ସମ୍ପୃକ୍ତ

ଜାଗାସାଙ୍ଗମାନେ ଦର୍ଶକ ଦରବାର ମଧ୍ୟରୁ ତାଙ୍କ ପାଖକୁ ଶାଢ଼ୀ, ପାଟମୁକୁଟା ପ୍ରଭୃତି ଫିଙ୍ଗିଛନ୍ତି । ସେମାନେ ବିସର୍ଜନ ଉପରାନ୍ତ ଦର୍ଶନୀୟ ବସ୍ତୁରେ ପରିଣତ ହୋଇଯାଇଥିବା ଗୋସାଣୀ ବିଗ୍ରହର ଜଙ୍ଘ ଉପରେ ଚଢ଼ି ସେ ଶାଢ଼ୀକୁ ଦୁଇ ହାତରେ ଧରି ଦର୍ଶକ ସମାଜକୁ ଶାଢ଼ୀ ହସ୍ତରେ ନମସ୍କାର କରିବାବେଳେ ସମ୍ପୃକ୍ତ ଜାଗାଆଖଡ଼ାର ଉପସ୍ଥିତ ସମସ୍ତ ସଦସ୍ୟ କରତାଳି ଦ୍ୱାରା କାରିଗରଙ୍କୁ ସ୍ୱୀକୃତି ଦେଉଛନ୍ତି, ଯାହାକି ଏକ ପ୍ରହସନ ରୂପେ ବିବେଚିତ ହେଉଅଛି ।

ନିଜସ୍ୱ ଶୈଳୀ ପାଇଁ ସର୍ବଜନାଦୃତ ଏହି ଗୋସାଣୀ ମେଳନ ପରେ ଗୋସାଣୀଯାତର ଅନ୍ତିମ ପ୍ରକରଣ ଭସାଣି ଶୋଭାଯାତ୍ରା ଆରମ୍ଭ ହୋଇଥାଏ । ପ୍ରଥମେ ଗୋସାଣୀ ମେଳାରେ ସମ୍ମିଳିତ ହୋଇଥିବା ସମସ୍ତ ଛୋଟଛୋଟ ମୂର୍ତ୍ତି ସବୁ ଯାତ୍ରା କରିବା ପରେ ଅନ୍ୟ ପ୍ରମୁଖ ବିଗ୍ରହଗୁଡ଼ିକୁ ବିଜେ କରାଯାଇଥାଏ । ବାରବାଟି, ଜହ୍ନିଖାଇ, ଭୋଗଜାଗା ହରଚଣ୍ଡୀ, ବନଦୁର୍ଗା, ଚକ୍ରକୋଟ ଠାକୁରାଣୀ, ଯମକଟ ଠାକୁରାଣୀ, ହାଡ଼ବାଇ, ଗେଲବାଈ, ପଣାପ୍ରିୟା, ମହନ୍ତେଶ୍ୱରୀ, ଶୂନ୍ୟଗୋସାଣୀଙ୍କୁ ନରେନ୍ଦ୍ର ପୁଷ୍କରିଣୀ ସଂଲଗ୍ନ ମୃଷାନଈର ଓ ଅନ୍ୟମାନଙ୍କୁ ମହୋଦଧି କିମ୍ବା ନିଜ ନିଜର ଜାଗା ପୁଷ୍କରିଣୀର ଜଳତୁଠକୁ ନିଆଯାଏ । ସମ୍ପୃକ୍ତ ସାହିର ବ୍ରାହ୍ମଣ ସେବାୟତ ପିଲାମାନେ ଘଣ୍ଟରେ ଜଳତୁଠରୁ ପାଣି ଆଣି ନିଜ ନିଜର ବିଗ୍ରହଙ୍କ ଦୁଇଆଖିରେ ଲଗାଇ ଦିଅନ୍ତି, ଯାହାକୁ 'ଆଖିଲିଭା' କୁହାଯାଏ । ଆଖି ଲିଭେଇ ସାରିବା ପରେ ମୂର୍ତ୍ତି ସମେତ ମେଢ଼ ଓ ପୂଜାରେ ବ୍ୟବହୃତ ଆନୁଷଙ୍ଗିକ ସାମଗ୍ରୀ ସବୁକୁ ଜଳରେ ଉଭେଇ/ଭସେଇ ଦିଆଯାଏ । ଯାହାକୁ 'ଭସାଣି' କୁହାଯାଏ । ଭସାଣି ସମୟରେ ଶ୍ରୀକ୍ଷେତ୍ରର ପ୍ରାୟ ସମସ୍ତ ଅଞ୍ଚଳ ଲୋକାରଣ୍ୟ ରହିବା ସହିତ ଆନନ୍ଦ ମୁଖରିତ ହୋଇଉଠେ । ଗୋସାଣୀ ମେଳଣ ଓ ଭସାଣି ଅନୁଷ୍ଠିତ ଏହି ପୁଣ୍ୟତିଥି 'ଗୋସାଣୀ ଏକାଦଶୀ' ଅତିକ୍ରାନ୍ତ ହେବା ସହିତ ଶ୍ରୀକ୍ଷେତ୍ରରେ ଦୀର୍ଘ ପାଞ୍ଚ ଦିନବ୍ୟାପୀ ପାରମ୍ପରିକ ରୀତିରେ ଅନୁଷ୍ଠିତ ଗୋସାଣୀଯାତ ବର୍ଷକ ପାଇଁ ଉଦ୍‌ଯାପିତ ହୋଇଥାଏ ।

**ପାଦଟୀକା :**

୧. ଗୋପାଳଚନ୍ଦ୍ର ପ୍ରହରାଜ - 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ' ।

୨. ମାଦଳାପାଞ୍ଜି, ପ୍ରାଚୀ ସମିତି ପ୍ରକାଶନ, ରାଜଭୋଗ ଇତିହାସ, ପୃ.୨୩ ।

୩. ପଣ୍ଡିତ ନୀଳକଣ୍ଠ ଦାସ - ଓଡ଼ିଆ ସାହିତ୍ୟର କ୍ରମ ପରିଣାମ ।

୪. 'ଦୁର୍ଗାର ଛାମୁରେ ଯେ କହଇ ନାରାୟଣୀ
ମଏଷାଂସୁର ଦାନବ ଗୋ ବିଜେ କଲା ଗୋସାମଣି ।'
ଚଣ୍ଡୀପୁରାଣ, ସାରଳା ଦାସ ।

୫. 'ଅନେକ ନିରାକୁଳ ବଚନ ଶୁଣି ସେ ଦୃଗତି ତାରେଣୀ
ଚାମଣ୍ଡା ରୂପ ଯେ ଧଇଲେ ଗୋସାମଣି ।'
ଚଣ୍ଡୀ ପୁରାଣ, ସାରଳା ଦାସ ।

୬. 'ଜୟଗୋ ମଙ୍ଗଳା ସଙ୍କଟ ତାରେଣୀ
କାକଟ ପୁରେ ମାଗୋ ବସିଛୁ ଗୋସାମଣି ।'
ସାରଳା ମହାଭାରତ, ମଧ୍ୟପର୍ବ ।

୭. 'ଯୋଗେଣ ଯୋଗେଶ୍ୱରୀ ତୁ ଅଟୁ ଗୋସାମଣି
ଆପଦ ଖଣ୍ଡିନୀ ଗୋ ସୁରଲୋକ ରକ୍ଷିଣୀ ।'
ସାରଳା ମହାଭାରତ, ଆଦ୍ୟପର୍ବ ।

୮. ପଣ୍ଡିତ ରମାକାନ୍ତ କର - ଶ୍ରୀକ୍ଷେତ୍ରରେ ଗୋସାଣୀଯାତ, ଦୈନିକ ପ୍ରଜାତନ୍ତ୍ର ।

୯. ଶ୍ରୀକ୍ଷେତ୍ର ଶ୍ରୀଜଗନ୍ନାଥ, ତୃତୀୟ ସ୍ତବକ, ପୃ.୪୫୭ ।

୧୦. ବୈଦ୍ୟନାଥ ଗୋଛିକାର - ପୁରୀ ଗୋସାଣୀଯାତ୍ରା, ପୁରୁଷୋତ୍ତମ ଶ୍ରୀଜଗନ୍ନାଥ, ପୃ.୨୧୪ ।

୧୧. ଦୀପ୍ତି ସିହ୍ନା - ଦୈନିକ ସମୟ, ତା.୨୯.୦୭.୯୮ରିଖ ।

୧୨. ବୈଦ୍ୟନାଥ ଗୋଛିକାର - ପୁରୀ ଗୋସାଣୀଯାତ୍ରା, ପୃ.୨୧୪ ।

୧୩. 'ରାବଣ ବୋଇଲା ଲଙ୍କାକୁ ନେବି
ସୁବର୍ଣ୍ଣ ପୁରୀରେ ନିତ ପୂଜୁଥିବି
ଅଚଳ କୈଳାସ ଉପରେ ଥିବ
ବିଂଶ ବାହୁରେ ମନ୍ଦର ଧରିବ
('କୈଳାସଟେକା-କହି ଦଶାନନ, ଟେକିଲା ପର୍ବତ ଯେହ୍ନେ ସୁମନ ।'
ସୌରୀ ମହାପାତ୍ର)

୧୪. ଯୋଗାଚାର୍ଯ୍ୟ ରମାକାନ୍ତ କର - ଶ୍ରୀକ୍ଷେତ୍ରର ଗୋସାଣୀଯାତ ।

୧୫. ଉତ୍କଳ ଦୀପିକା ।

ନୂଆଗାଁ, ଇଟିପୁର
ଭୁବନେଶ୍ୱର - ୨

# ଓଡ଼ିଶାରେ ଶକ୍ତି ଉପାସନାର ଇତିବୃତ୍ତ ଓ ପ୍ରସାର : ଏକ ଦୃଷ୍ଟିପାତ

କୁଳମଣି ନାଥଶର୍ମା

ଦେବଲୀଳାଭୂମି ପବିତ୍ର ଭାରତବର୍ଷର ମହାନ୍ ଧର୍ମ, ଦର୍ଶନ, କଳା, ସ୍ଥାପତ୍ୟ, ସାହିତ୍ୟ-ସଂସ୍କୃତିର ଐତିହ୍ୟ ଓ ଏହାର କ୍ରମବିବର୍ତ୍ତିତ ଧାରା ମାନବ ସମାଜକୁ ଯୁଗ ଯୁଗ ଧରି ପ୍ରଲୁବ୍ଧ କରିଆସିଛି । ଏହାର ଅନନ୍ୟ ସାଂସ୍କୃତିକ ଓ ଆଧାତ୍ମିକ ବିଭବର ପୁଷ୍ଟି ସାଧନ କ୍ଷେତ୍ରରେ ଆଧୁନିକ ଓଡ଼ିଶା ବା ପ୍ରାଚୀନ ଉତ୍କଳର ସ୍ଥାନ ଅତୀବ ମହତ୍ୱପୂର୍ଣ୍ଣ । ସମୟର ପ୍ରବାହରେ ବିଭିନ୍ନ ଧର୍ମମତବାଦର ପ୍ରଚାର, ପ୍ରସାର ଓ ପ୍ରତିଷ୍ଠା କ୍ଷେତ୍ରରେ ସଦାସର୍ବଦା ଓଡ଼ିଶା ଭୂଖଣ୍ଡ ପ୍ରମୁଖ ଭୂମିକା ବହନ କରିଆସିଛି । ଏହାର ଉପତ୍ୟକାରେ ବିଭିନ୍ନ ଧର୍ମର ଅଭ୍ୟୁଦୟ ଘଟିଛି, ପ୍ରସାର ଲାଭ କରିଛି ଏବଂ କେତେ ଧର୍ମଧାରା ମଧ୍ୟ ଏଠାରେ ବିଲୀନ ହୋଇଯାଇଛି ।

ଜୈନ, ବୌଦ୍ଧ, ବୈଷ୍ଣବ, ଶୈବ ଓ ଶାକ୍ତ ଧର୍ମର ଉତ୍ତାଳ ଧାରାରେ ଓଡ଼ିଶାର ଜନମାନସ ଉଦ୍‌ବେଳିତ ହୋଇଛନ୍ତି ଏବଂ ବିଭିନ୍ନ ଧର୍ମ ମତବାଦରେ ଅନ୍ତର୍ଭୁକ୍ତ ଉପାସନା ନୀତି ଓ ପଦ୍ଧତି ଅବଲମ୍ବନ କରିବା ଫଳରେ ଏହି ମାଟିରେ ବିଭିନ୍ନ ଧର୍ମର ସମନ୍ୱୟ ମଧ୍ୟ ଏକା ସମୟରେ ସମ୍ଭବ ହୋଇଥିବାରପ୍ରମାଣ ମିଳେ । ଭାରତୀୟ ସଭ୍ୟତା ଓ ସଂସ୍କୃତିର ଆଦି ଭିତ୍ତି ସନାତନ ଧର୍ମ ବା ହିନ୍ଦୁଧର୍ମରେ ବହୁ ଦେବାଦେବୀଙ୍କ ଉପାସନା ପ୍ରଚଳିତ ହୋଇ ଓଡ଼ିଶାକୁ ସେମାନଙ୍କର ପ୍ରସାରପୀଠ ରୂପେ ବିବେଚନା କରିଆସିଥିବାରୁ ଓଡ଼ିଶା ଭୂଖଣ୍ଡରେ ଶୈବ, ଶାକ୍ତ, ବୈଷ୍ଣବ, ସୌର ଓ ଗାଣପତ୍ୟ ଧର୍ମଧାରାର ପଞ୍ଚୋପାସନା ପଦ୍ଧତି ପ୍ରାଧାନ୍ୟ ଲାଭ କରିଅଛି ।

ଏହି ପଞ୍ଚୋପାସନା ମଧ୍ୟରେ 'ଶକ୍ତି ଉପାସନା'ର ବୈଶିଷ୍ଟ୍ୟ ଓ ସ୍ୱାତନ୍ତ୍ର୍ୟ ସର୍ବତୋଭାବେ ସ୍ୱୀକୃତ । ବିଶ୍ୱର ସୃଷ୍ଟି, ସ୍ଥିତି ଓ ପ୍ରଳୟର ମୂଳ ହେଉଛନ୍ତି ମାତୃରୂପା ଶକ୍ତି । ଶକ୍ତିର ଉପାସନାର ଅନୁସରଣକାରୀମାନଙ୍କୁ ଭାରତୀୟ ସଂସ୍କୃତିରେ 'ଶାକ୍ତ' ଓ ସେମାନଙ୍କ ଅନୁସୃତ ଉପାସନା, କ୍ରିୟାବିଧି ସାଧାରଣରେ 'ଶାକ୍ତଧର୍ମ' ନାମରେ ଅଭିହିତ ।

ଶକ୍ତି ଉପାସନାର ଅନ୍ୟତମ ଆଦିପୀଠ ହିସାବରେ ଓଡ଼ିଶା ସମଗ୍ର ଭାରତବର୍ଷ ଓ ବିଶ୍ୱବକ୍ଷରେ ପରିଚିତ । ହଜାର ହଜାର ବର୍ଷ



ଧରି ଓଡ଼ିଶାର ଏହି ପୁଣ୍ୟତୋୟା ଭୂଇଁରେ ଶକ୍ତି ଦେବୀ ତାଙ୍କର ବିଭିନ୍ନ ରୂପ ମାଧ୍ୟମରେ ବିଚିତ୍ର ଲୀଳାଖେଳା କରିଆସିଛନ୍ତି । ଓଡ଼ିଶାର ଯେକୌଣସି ଗ୍ରାମ ବା ଅଂଚଳକୁ ଗଲେ ଶକ୍ତି ଓ ମହାଶକ୍ତିର ଆସ୍ଥାନ ଓ ଅବସ୍ଥିତି ଆମକୁ ବିମୋହିତ କରେ । କେଉଁ କାଳରୁ କେଉଁଠି ଶକ୍ତି ଗଛମୂଳେ ଖଣ୍ଡେ ପଥର ଭାବେ, କେଉଁଠି ମାଟିର ଗମ୍ଭୀରାରେ ଅଥବା କେଉଁଠି ମନ୍ଦିର ଭିତରେ ଅବସ୍ଥାନ କରି ପାରିପାର୍ଶ୍ୱିକ ଜନମାନସର ଦୁଃଖ ମୋଚନ କରିଥାନ୍ତି ଏବଂ ଆଧାତ୍ମିକ ଭାବନାରେ ଜନଗଣଙ୍କୁ ପରିପ୍ଲୁତ କରି ସାମାଜିକ ଚରିତ୍ର ବିକାଶରେ ଦିଗଦର୍ଶନ ଦେଇଥାନ୍ତି ।





ସେଥିପାଇଁ ତନ୍ତ୍ରଶାସ୍ତ୍ର 'କାଳିକା ପୁରାଣ'ରେ 'ଓଡ୍ରାଖ୍ୟଂ ପ୍ରଥମଂ ପୀଠମ୍' ବୋଲି ବର୍ଣ୍ଣିତ ଅଛି ଯାହାକି ଓଡ଼ିଶା ପ୍ରଥମ ତନ୍ତ୍ରପୀଠ ବୋଲି ପ୍ରମାଣ ମିଳିଥାଏ । ପ୍ରାଗୈତିହାସିକ ଯୁଗଠାରୁ ଆରମ୍ଭ କରି ବେଦ, ବୈଦିକ ସାହିତ୍ୟ, ଧର୍ମସୂତ୍ର, ସ୍ମୃତି, ରାମାୟଣ, ମହାଭାରତ ପୁରାଣ ଶାସ୍ତ୍ର ଆଦି ଭିନ୍ନ ଭିନ୍ନ ଉଲ୍ଲେଖରୁ ଓଡ଼ିଶାରେ ଧାରାବାହିକ ଶକ୍ତି ଉପାସନାର ନିଦର୍ଶନ ମିଳିଥାଏ । ଐତିହାସିକମାନେ ମଧ୍ୟ ଆର୍ଯ୍ୟ ଓ ଅର୍ଯ୍ୟୋତର ବିଶ୍ୱାସ ଓ ସଂସ୍କାରର ସମନ୍ୱୟ ଦ୍ୱାରା ଶାକ୍ତଧର୍ମର ଅଭ୍ୟୁଦୟ ଓ ପ୍ରସାର ଘଟିଥିବାର ମତବ୍ୟକ୍ତ କରିଥାନ୍ତି ।

'ଶକ୍ୟତେ ଜେତୃମନୟା' ଅର୍ଥାତ୍ ଯାହାଦ୍ୱାରା ଜୟ କରିବାର ଶକ୍ତି ଅର୍ଜନ କରାଯାଏ ତାହା ହିଁ ଶକ୍ତି । ଶକ୍ତି ହେଉଛି ମାନବିକ ସଫଳତାର ଓ ଉତ୍କର୍ଷ ସାଧନର ମୂଳନିଦାନ । ମାନବ ସହିତ ଦେବ, ଦାନବ ସମସ୍ତଙ୍କ ଶକ୍ତି ହେଉଛନ୍ତି ରକ୍ଷାକର୍ତ୍ତା ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କର ଆରାଧ୍ୟା, ତତ୍ତ୍ୱଦର୍ଶୀ ମୁନିଋଷିଗଣଙ୍କର ଆଦି ପ୍ରକୃତି ରୂପା ମାନବ ସମାଜର ମୋକ୍ଷଦାତ୍ରୀ ସେହି ଶକ୍ତି ବିଶ୍ୱଜନନୀ ମାତୃଶକ୍ତି ରୂପେ ଅଭିହିତା ।

'ଯାମାଦ୍ୟ ପ୍ରକୃତିଂ ବଦନ୍ତି
ମୁନୟ ସ୍ତତ୍ତ୍ୱାର୍ଥ ବିଜ୍ଞା ପରାଂ
ତାଂ ଦେବୀଂ ପ୍ରଣମାମି
ବିଶ୍ୱଜନନୀଂ ସ୍ୱର୍ଗାପବର୍ଗପ୍ରଦାମ୍ ।'

## ଶକ୍ତି ଯୁଗର ଅଭ୍ୟୁଦୟ

ବୈଦିକ ଯୁଗର କ୍ରିୟାକାଣ୍ଡ ମଧ୍ୟରେ ପୁରୁଷ ଦେବତାମାନଙ୍କର ପ୍ରାଧାନ୍ୟ ଦେଖିବାକୁ ମିଳିଲେ ମଧ୍ୟ ଅଦତି, ଉଷା, ସରସ୍ୱତୀ, ପୃଥିବୀ ରାତ୍ରି, ପୁରନ୍ଧୀ, ଇଡ଼ା, ଧୀଷଣା, ଶଚୀ, ଶ୍ରଦ୍ଧା ଗୌରୀ ସ୍ୱାହାଦି ପ୍ରାୟ ୪୦ ଗୋଟି ଦେବୀଙ୍କ ନାମ ଉଲ୍ଲେଖରୁ ଶକ୍ତି ଉପାସନାର ଆଦ୍ୟାଭାସ ମିଳିଥାଏ । ବେଦୋତ୍ତର ସାହିତ୍ୟରେ ସେମାନେ ଭିନ୍ନ ଭିନ୍ନ ରୂପ ଓ ନାମ ଗ୍ରହଣ କରି ଶକ୍ତିପୂଜା କ୍ଷେତ୍ରରେ ବିଶେଷ ଭୂମିକାରେ ପୂଜିତ ହୋଇ ଆସୁଅଛନ୍ତି ।

ଋକ୍‌ବେଦରେ ଦେବୀସୂକ୍ତରେ ଆଠଟି ମନ୍ତ୍ରକୁ ଶାକ୍ତ ଭାବନାର ମୂଳ ଭିତ୍ତିଭୂମି ରୂପେ ଗ୍ରହଣ କରାଯାଇଛି । ଏହାର ସପ୍ତମ ମନ୍ତ୍ରରେ ବର୍ଣ୍ଣିତ ଅଛି -

'ଅହଂ ସୁବେ ପିତରମସ୍ୟ ମୂର୍ଧନ୍ମମ
ଯୋନିରଡ଼ାସ୍ୱନ୍ତି ସମୁଦ୍ରେ
ତତୋ ବିତିଷ୍ଟେ ଭୁବନାନୁ ବିଶ୍ୱୋତାମୁଂ
ଦ୍ୟାଂ ବର୍ଷ୍ମଣୋପସ୍ପୃଶ୍ୟାମି ।।'

'ମୁଁ ଜନକ, ଆକାଶକୁ ଜନ୍ମ ଦେଇଛି । ସେହି ଆକାଶ ଏ ଜଗତର ମସ୍ତକ ସ୍ୱରୂପ ବିଦ୍ୟମାନ । ସମୁଦ୍ର ମଧ୍ୟରେ ମୋର ବାସସ୍ଥାନ । ସେହିଠାରୁ ମୁଁ ସମସ୍ତ ଭୁବନକୁ ବ୍ୟାପିଯାଏ ଏବଂ ଉନ୍ନତ ଦେହ ଦ୍ୱାରା ଦ୍ୟୁଲୋକକୁ ସ୍ପର୍ଶ କରେ ।'

ବୈଦିକ ଯୁଗରେ ସମଗ୍ର ବିଶ୍ୱରେ ଦୈବୀଶକ୍ତିର ସତ୍ତା ବିଦ୍ୟମାନ ବୋଲି ବୈଦିକ ଋଷିଗଣ ଉପଲବ୍ଧି କରିଥିଲେ । ରାମାୟଣ ଯୁଗରେ ଉମା, ଗିରିଜା, ରୁଦ୍ରାଣୀ, ପାର୍ବତୀ, ନାଗମାତା, କାଳରାତ୍ରି ପ୍ରଭୃତି ଦେବୀମାନଙ୍କୁ ଉପାସନା କରାଯାଉଥିବାର ରାମାୟଣରୁ ମିଳିଥାଏ । ସେହିପରି ମହାଭାରତ ଯୁଗରେ ଶାକ୍ତ ଦର୍ଶନ ଓ ଉପାସନା ବିକାଶର ଚରମ ସୀମାରେ ଉପନୀତ ହୋଇଥିଲା । ମହାଭାରତର ବିରାଟପର୍ବ ଅନ୍ତର୍ଗତ ଯୁଧିଷ୍ଠିରଙ୍କ ଦୁର୍ଗାସ୍ତବ, ଭୀଷ୍ମପର୍ବ ଅନ୍ତର୍ଗତ ଅର୍ଜୁନଙ୍କ ଦୁର୍ଗାସ୍ତୋତ୍ର ଓ ହରିବଂଶର ଆର୍ଯ୍ୟସ୍ତବରୁ ଜଣାପଡ଼େ ଯେ ଗୁପ୍ତଯୁଗର ବହୁପୂର୍ବରୁ ପ୍ରାୟ ପ୍ରଥମ ଶତାବ୍ଦୀ ବେଳକୁ ଶକ୍ତି ଆରାଧନା ପୂର୍ଣ୍ଣ ବିକଶିତ ହୋଇଥିଲା ।

ଷଷ୍ଠ ଶତାବ୍ଦୀରେ ବରାହମିହିରଙ୍କ 'ବୃହତ୍ ସଂହିତା' ଗ୍ରନ୍ଥରେ ଶକ୍ତି ବା ମାତୃକା ପୂଜକ ଗୋଷ୍ଠୀର ପ୍ରଥମ ଆଭାସ ମିଳେ । ଏହି ଗ୍ରନ୍ଥ ରଚନାର ଏକ ଶତାବ୍ଦୀ ପରେ ଚୀନ ପରିବ୍ରାଜକ ହୁଏନସାଂ ଭାରତର ଶକ୍ତି ପୂଜକମାନଙ୍କ ସମ୍ୱନ୍ଧରେ ତାଙ୍କ ଭ୍ରମଣ ବୃତ୍ତାନ୍ତରେ ଉଲ୍ଲେଖ କରିଛନ୍ତି ।

ଖ୍ରୀଷ୍ଟୀୟ ପଞ୍ଚମ ଓ ଷଷ୍ଠ ଶତାବ୍ଦୀରେ ଶକ୍ତି ଉପାସନା ଭାରତବର୍ଷରେ ପ୍ରସାର ଲାଭ କରିଥିବା ବିଷୟ ଆମେ ଦୁଇଗୋଟି ରାଜବଂଶର ଅଭିଲେଖରୁ ଜାଣିବାକୁ ପାଉ । ଏହି ରାଜବଂଶ ଦୁଇଟି ହେଉଛି ଦକ୍ଷିଣ ଭାରତର ପ୍ରାଚୀନ 'କଦମ୍ବ କୂଳ' ଓ ଅନ୍ୟଟି 'ଚାଲୁକ୍ୟବଂଶ' ।

## ଓଡ଼ିଶାରେ ଶାକ୍ତ ଉପାସନା

ପୁରାଣ, ଇତିହାସ ଓ କାବ୍ୟାଦିରେ ବର୍ଣ୍ଣିତ ଦକ୍ଷ ଯଜ୍ଞର କାହାଣୀ ଅନୁସାରେ ଭଗବାନ ବିଷ୍ଣୁ ସୁଦର୍ଶନ ଚକ୍ର ଦ୍ୱାରା ପତିନିନ୍ଦା ଶ୍ରବଣରେ ଶିବପତ୍ନୀ ସତୀଙ୍କ ମୃତ ଦେହକୁ ଖଣ୍ଡ ଖଣ୍ଡ କରି ଦେଇଥିଲେ । ସତୀଙ୍କ ଖଣ୍ଡିତ ଦେହାଂଶଗୁଡ଼ିକ ଯେଉଁ ଯେଉଁ ସ୍ଥାନରେ ପଡ଼ିଥିଲା ସେହି ସ୍ଥାନ ଶକ୍ତିପୀଠ ବା ଶାକ୍ତପୀଠ ରୂପେ ପରିଚିତ ହେଲା । ସେଠାରେ ଶକ୍ତି ସହିତ ଭୈରବ ଉପାସନା ପ୍ରସାର ଲାଭ କଲା । ପାରିପାର୍ଶ୍ୱିକ, ସାମାଜିକ ତଥା ଆଞ୍ଚଳିକ ଧାର୍ମିକ ବାତାବରଣ ଭିତ୍ତିରେ ଶକ୍ତି ଉପାସନା ଆରମ୍ଭ ହେବାର ଏହା ହିଁ ମୂଳ ହେତୁ ।

କିନ୍ତୁ ଏହାର ପ୍ରଚାର ପୂର୍ବରୁ ବୌଦ୍ଧତନ୍ତ୍ର ଯୁଗରେ ତନ୍ତ୍ରପୀଠ ରୂପେ ଓଡ଼ିଶା ସର୍ବଭାରତୀୟ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଥିଲା । ତତ୍କାଳୀନ ଓଡ଼ିଶାର ବୌଦ୍ଧ ତାନ୍ତ୍ରିକ ଚତୁଷ୍ପୀଠ ଉଦୟଗିରି, ଲଳିତଗିରି, ରତ୍ନଗିରି ଓ ଅଳତିଗିରି ପର୍ବତର ଧାରଣା ହିଁ ଭାରତୀୟ ତାନ୍ତ୍ରିକ ଚତୁଷ୍ପୀଠର ମୂଳଭିତ୍ତି ବୋଲି ଆଲୋଚକ ତଥା ଐତିହାସିକମାନେ





ମତ ଦିଅନ୍ତି । ଉଡ୍ର, ଜାଳଶୈଳ, ପୂର୍ଣ୍ଣଗିରି ଓ କାମ ରୂପ ନାମକ ଭାରତର ଚାରି ଗୋଟି ତାନ୍ତ୍ରିକ ପୀଠ ମଧ୍ୟରେ ଉଡ୍ର ବା ଉଡ୍ଡୀୟାନ ବା ଓଡ଼ିଶାର ଯେ ଅଧିକ ପ୍ରାଧାନ୍ୟ ଥିଲା ଏହା ନିଃସନ୍ଦେହ ।

'ଜ୍ଞାନାର୍ଣ୍ଣବତନ୍ତ୍ର' ଅନୁଯାୟୀ ୫୦ ଗୋଟି ପୀଠ ମଧ୍ୟରୁ ଏକାମ୍ର, ବିରଜା, ଉଡ୍ଡୀଶ ଜଳେଶ୍ୱର, ଉଡ୍ଡୀୟାନ୍ ପ୍ରଭୃତି ତାନ୍ତ୍ରିକ ପୀଠ ଓଡ଼ିଶାରେ ହିଁ ପ୍ରତିଷ୍ଠିତ ।

### ଗୁପ୍ତଯୁଗରେ ଶକ୍ତି ଉପାସନା

ଗୁପ୍ତ ଯୁଗ କାଳରେ ଶାକ୍ତ ଧର୍ମଧାରାର ଯଥାର୍ଥ ରୂପାୟନ ହୋଇଥିବାର ଦେଖାଯାଏ । ସେସମୟରେ ଭାରତର ଧାର୍ମିକ ଓ ସାମାଜିକ ଜୀବନରେ ଯେଉଁ ନୂତନ ଭାବନାର ସୂତ୍ରପାତ ହୋଇଥିଲା ତଦ୍ୱାରା ବ୍ୟକ୍ତି ବା ଜାତିର ଅଭିଳାଷ ପୂରଣ ନିମିତ୍ତ ତନ୍ତ୍ରର ସହାୟତା ନିଆଯାଇଥିଲା । ଗୁପ୍ତ ସାମ୍ରାଜ୍ୟର ଶେଷ ଆଡ଼କୁ ଶାକ୍ତ ଧର୍ମଧାରାରେ ତାନ୍ତ୍ରିକ ପୂଜା ଓ ଉପାସନା ପ୍ରାଧାନ୍ୟ ଲାଭ କରିଥିଲା ।

ଗୁପ୍ତ ଯୁଗର ଅନ୍ତିମ ପର୍ଯ୍ୟାୟରେ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀ ବେଳକୁ ବୌଦ୍ଧ ଧର୍ମର ଲୋକପ୍ରିୟତା ହ୍ରାସ ହେବାକୁ ଲାଗିଲା ଓ ଓଡ଼ିଶାରେ ଶକ୍ତି ଉପାସନା କ୍ରମ ପ୍ରସାର ଲାଭ କରିଥିବାର ଜଣାଯାଏ । ଷଷ୍ଠ ଶତାବ୍ଦୀରେ ପ୍ରଦତ୍ତ ରାଜା ତୁଷ୍ଟିକର ଦେବଙ୍କ ଟେରାସିଙ୍ଗ ତାମ୍ରଫଳକରୁ ଓଡ଼ିଶାରେ ଶକ୍ତି ପୂଜାର ପ୍ରଥମ ସୂଚନା ମିଳେ । ରାଜା ତୁଷ୍ଟିକର ଦେବ ଦେବୀ ସ୍ତମ୍ଭେଶ୍ୱରୀଙ୍କ ଉପାସକ ଥିଲେ । ସ୍ତମ୍ଭେଶ୍ୱରୀ ଥିଲେ ଓଡ଼ିଶାର ସର୍ବପ୍ରାଚୀନ ଶାକ୍ତ ଦେବତା । ପଶ୍ଚିମ ଓଡ଼ିଶା ଓ ମାଳ ଓଡ଼ିଶାର ସ୍ତମ୍ଭେଶ୍ୱରୀ ଦେବୀ ପ୍ରଧାନ ଆରାଧ୍ୟଦେବୀ ରୂପେ ଆରାଧିତା । ଅଷ୍ଟମ ଶତାବ୍ଦୀଠାରୁ ଏକାଦଶ ଶତାବ୍ଦୀ ମଧ୍ୟରେ ଓଡ଼ିଶାର ଶୁଳ୍କି, ଭଞ୍ଜ, ତୁଙ୍ଗବଂଶୀୟ ରାଜାମାନେ ମଧ୍ୟ ସ୍ୱୀୟ ତାମ୍ରଶାସନ ଫଳକରେ ନିଜ ନିଜକୁ ସ୍ତମ୍ଭେଶ୍ୱରୀ ପାଦଭକ୍ତ ରୂପେ ଘୋଷଣା କରିଥିବାର ଉଲ୍ଲେଖମାନ ରହିଛି ।

### ଭୌମକର ଯୁଗରେ ଶକ୍ତି ଉପାସନା

ଖ୍ରୀଷ୍ଟାବ୍ଦ ୬୪୩ରୁ ୯୫୦ ପର୍ଯ୍ୟନ୍ତ ଭୌମକର ରାଜତ୍ୱ କାଳରେ ଶୈବ, ଶାକ୍ତ ଓ ମହାଯାନ ବୌଦ୍ଧବାଦର ଅପୂର୍ବ ସମନ୍ୱୟରେ ସଂପାଦିତ ହୋଇଥିଲା ଏକାମ୍ର ପୀଠସ୍ଥ ବୈତାଳ ମନ୍ଦିରରେ । ଏହି ସମୟରେ ନିର୍ମିତ ବାରାହୀ, ମୋହିନୀ, ଭୂବାସିନୀ, ଗୌରୀ, କାତ୍ୟାୟନୀ, ଭୁବନେଶ୍ୱରୀ, ଦ୍ୱାରବାସିନୀ ଓ ରାମଚଣ୍ଡୀ ଆଦି ଅଷ୍ଟ ଚଣ୍ଡିକା ମନ୍ଦିର ସହିତ ଅନ୍ୟାନ୍ୟ ଦେବୀ ମନ୍ଦିରଗୁଡ଼ିକରୁ ଶାକ୍ତ ଉପାସନାର ସ୍ୱରୂପ, ପ୍ରଭାବ ଓ ସ୍ୱଭାବ ବୈଚିତ୍ର୍ୟର ସ୍ପଷ୍ଟ ସୂଚନା ମିଳିଥାଏ ।

ଏହି ରାଜତ୍ୱ କାଳରେ ହିଁ ଶୈବ, ଶାକ୍ତ ଓ ତାନ୍ତ୍ରିକ ଉପାସନା ପଦ୍ଧତିର ସମନ୍ୱୟ ସଂଘଟିତ ହୋଇଥିଲା । ନାଭି ପୀଠ ରୂପେ ଭାରତ ପ୍ରସିଦ୍ଧ ଶାକ୍ତ ପୀଠ ବିରଜା କ୍ଷେତ୍ର ଥିଲା ଭୌମକରମାନଙ୍କ ରାଜଧାନୀ । ଐତିହାସିକ ତଥ୍ୟରୁ ଜଣାପଡ଼େ ଯେ ୫୭୫ ଖ୍ରୀଷ୍ଟାବ୍ଦରେ ପୃଥୀ ମହାରାଜ, ୭୦୦ ଖ୍ରୀ:ଅ:ରେ ଭାନୁଦତ୍ତ ଓ ଭୌମକର ରାଜାମାନଙ୍କ ଦାନପତ୍ରରେ ବିରଜା କ୍ଷେତ୍ର ଯାଜନଗର ଓ ଯଯାତିନଗର ନାମରେ ବର୍ଣ୍ଣିତ ହୋଇଛି । ସପ୍ତମ ଶତାବ୍ଦୀରେ ଉନ୍ମତ୍ତ କେଶରୀ ତାଙ୍କ ରାଜଧାନୀ 'ବିରଜା କ୍ଷେତ୍ର'ରେ ପ୍ରତିଷ୍ଠା କରିଥିବା ମଧ୍ୟ ଇତିହାସରୁ ଜଣାପଡ଼େ ।

ଏହି ଯାଜନଗରର ଅଧିଷ୍ଠାତ୍ରୀ ଦେବୀ ବିରଜା ମହିଷାମର୍ଦ୍ଦିନୀ ଓ ଦ୍ୱିଭୁଜା ଅଟନ୍ତି । କେବଳ ଓଡ଼ିଶା ନୁହେଁ ଭାରତବର୍ଷରେ ମହିଷାମର୍ଦ୍ଦିନୀ ଦ୍ୱିଭୁଜା ଦୁର୍ଗାଙ୍କର ଏହା ହିଁ ପ୍ରଥମ ନିଦର୍ଶନ । ଏହି ଆଲୋଚନାରୁ ସୁସ୍ପଷ୍ଟ ଯେ ବିରଜା ଦେବୀ ଦ୍ୱିତୀୟ-ତୃତୀୟ ଖ୍ରୀଷ୍ଟାବ୍ଦ ବେଳକୁ ପ୍ରସିଦ୍ଧି ଲାଭ କରିଥିଲେ । ଏପରିକି 'କୁବ୍ଜିକା ତନ୍ତ୍ର' ଅନୁସାରେ ୪୨ ଗୋଟି ସିଦ୍ଧ ପୀଠ ମଧ୍ୟରୁ ବିରଜା ହେଉଛି ଏକ ଅନନ୍ୟ ପୀଠ । 'ଜ୍ଞାନାର୍ଣ୍ଣବ ତନ୍ତ୍ର' ଅନୁଯାୟୀ ୫୦ ଗୋଟି ତନ୍ତ୍ରପୀଠ ମଧ୍ୟରୁ ଏହା ଅନ୍ୟତମ । ବୃହନ୍ ନୀଳ ତନ୍ତ୍ରର ଅଷ୍ଟାଦଶ ପୀଠ ଓ 'ପୀଠ ନିର୍ଣ୍ଣୟ' ଅନୁସାରେ ବିରଜା କ୍ଷେତ୍ର ଏକ ଶାକ୍ତ ପୀଠ ।

ପ୍ରମାଣ ମିଳେ ଯେ, ଭୌମକରଙ୍କ ସମୟରେ ଗୁହଦେବ ପାଟକ ବା ଗୁହେଶ୍ୱର ପାଟକ ଉତ୍କଳର ରାଜଧାନୀ ଥିଲା । ଏହି ବଂଶର ପୂର୍ବତନ ରାଜା ସମସ୍ତେ ବୌଦ୍ଧ ଥିଲେ । କିନ୍ତୁ ପରବର୍ତ୍ତୀ ରାଜାମାନେ ଶୈବ ଓ ଶାକ୍ତ ଥିବାର ସୂଚନା ମିଳେ ।

ଭୌମ ଯୁଗରେ ହିଁ ମାତୃକା ଉପାସନା ଓଡ଼ିଶା ଶାକ୍ତ ଧାରାରେ ପ୍ରାଧାନ୍ୟ ଲାଭ କରିଥିଲା । ଓଡ଼ିଶାର ପ୍ରାଚୀନତମ ମାତୃକା ମନ୍ଦିର ଭୁବନେଶ୍ୱର ମନ୍ଦିର ପାଖରେ ଥିବାର ଜଣାଯାଏ । ଷଷ୍ଠ-ସପ୍ତମ ଶତାବ୍ଦୀ ମଧ୍ୟରେ ନିର୍ମିତ ଭୁବନେଶ୍ୱରର କେତେକ ମନ୍ଦିରଗାତ୍ରରୁ ମାତୃକା ଉପାସନାର ପ୍ରଥମ ନିଦର୍ଶନ ଉପଲବ୍ଧ ହୁଏ । ଏହି ମାତୃଗଣଙ୍କ ସହ ବିନାୟକ ବା ବୀରେଶ୍ୱରଙ୍କୁ ନେଇ ସପ୍ତମାତୃକା, ଅଷ୍ଟମାତୃକା ନବମାତୃକା ବା ଦଶମାତୃକା ଉପାସନା ପ୍ରବର୍ତ୍ତିତ ହୋଇଥିଲା ।

ଏହି ସମୟରେ ପ୍ରାଚୀ, ଚିତ୍ରୋତ୍ପଳା, ବ୍ରାହ୍ମଣୀ ନଦୀ ଅବବାହିକାରେ ଏବଂ ଓଡ଼ିଶାର ଅନ୍ୟ ସ୍ଥାନରେ ବରାହୀ, ଭୈରବୀ, ମନସା, କାଳୀ, ପର୍ଣ୍ଣଶବରୀ, ତାରା, ଅମ୍ବା, ଅମ୍ବାଳିକା ପ୍ରଭୃତି ଶାକ୍ତ ଦେବୀଗଣଙ୍କ ସହିତ ଚତୁର୍ଭୁଜା, ଷଡ଼ଭୁଜା, ଅଷ୍ଟଭୁଜା, ଦଶଭୁଜା, ଦ୍ୱାଦଶଭୁଜା, ଷୋଡ଼ଶଭୁଜା ମହିଷାମର୍ଦ୍ଦିନୀ ଦୁର୍ଗା ଉପାସିତା ହେଉଥିଲେ । ଏତଦ୍‌ବ୍ୟତୀତ ଚତୁର୍ଭୁଜା, ଷଡ଼ଭୁଜା, ଅଷ୍ଟଭୁଜା ଚାମୁଣ୍ଡା ଉପାସନା ଓଡ଼ିଶା ଶାକ୍ତଧାରାର ଅନ୍ୟତମ ବୈଶିଷ୍ଟ୍ୟ । ଏହି ସମୟରେ ବୌଦ୍ଧ ଦେବୀମାନଙ୍କୁ ଶାକ୍ତ ଉପାସନା ମଧ୍ୟରେ ଗ୍ରହଣ କରାଯାଇ ଥିଲା ।

### କେଶରୀ ଯୁଗରେ ଶକ୍ତି ଉପାସନା

ଖ୍ରୀ:ଅ: ୯୫୦ରୁ ୧୧୨୨ ପର୍ଯ୍ୟନ୍ତ କେଶରୀ ବଂଶୀୟ ରାଜାମାନଙ୍କ ରାଜତ୍ୱ କାଳରେ ଏକାଧାରାରେ ବୈଷ୍ଣବ, ଶୈବ ଓ





ଶାକ୍ତଧାରାର ଉପାସନା ଓଡ଼ିଶାରେ ପ୍ରଚଳିତ ହେଲା । କିନ୍ତୁ ଏହା ପୂର୍ବରୁ ସମାଜରେ ମାତୃକା ଉପାସନା ପ୍ରଚଳିତ ହୋଇ ଆସୁଥିବାରୁ ଶାକ୍ତ ଧର୍ମର ପ୍ରାଧାନ୍ୟ ବଜାୟ ରହିଥିଲା ।

ଶକ୍ତି ଉପାସନାର ପ୍ରଭାବ ଶୀର୍ଷ ସ୍ଥାନରେ ପହଞ୍ଚ ପାରିଥିଲା । କେଶରୀ ଯୁଗରେ ଯାଜପୁର (ଯାଜନଗର) ବ୍ୟତୀତ ପୁରୀର ମାର୍କଣ୍ଡେଶ୍ୱର ନିକଟରେ ସପ୍ତମାତୃକା ମୂର୍ତ୍ତି ପୂଜିତା ହେଉଥିଲେ । ପୁରୀ, ଭୁବନେଶ୍ୱର ଓ ଯାଜପୁର ବ୍ୟତୀତ ବେଲଖଣ୍ଡି, ଚିଟିଲାଗଡ଼, ଖିଞ୍ଚ୍‌ଂ, ଧର୍ମଶାଳା, କୁଣ୍ଡେଶ୍ୱର ସେରଗଡ଼ ଆଦି ସ୍ଥାନରେ ସପ୍ତମାତୃକା ଓ ଅଷ୍ଟମାତୃକା ମନ୍ଦିର ନିର୍ମିତ ହୋଇଥିଲା । ବୈଦିକ ଓ ତାନ୍ତ୍ରିକ ଉଭୟ ପଦ୍ଧତିରେ ମଧ୍ୟ ଶକ୍ତି ଉପାସନା କରାଗଲା ।

ଅଷ୍ଟମାତୃକା ପୁରାଣ ଓ ତନ୍ତ୍ର ସାହିତ୍ୟରେ କାମ, କ୍ରୋଧ, ଲୋଭ, ମଦ, ମୋହ, ମାତ୍ସର୍ଯ୍ୟ ପୈଶୁନ୍ୟ ଓ ଅସୂୟାଦି ସହଜଭାବ ତଥା ଅଣିମା, ଲଘିମା, ବ୍ୟାପ୍ତି, ପ୍ରକାମ୍ୟ, ମହିମା, ଇଶିତ୍ୱ, ବଶିତ୍ୱ ଓ କାମାବଶାୟିତାଦି ଅଷ୍ଟୈଶ୍ୱର୍ଯ୍ୟର ପ୍ରତୀକ ଭାବେ ବର୍ଣ୍ଣିତ ହୋଇଛନ୍ତି । ଏପରିକି ମାର୍କଣ୍ଡେୟ ପୁରାଣ ଓ ସପ୍ତଶତୀ ଚଣ୍ଡୀର ଉଲ୍ଲେଖ ଅନୁସାରେ ମାତୃଗଣ ଅସୁର ବିନାଶ ପାଇଁ ଦୁର୍ଗା ବା ଚାମୁଣ୍ଡାଙ୍କଠାରୁ ଆବିର୍ଭୂତା ହୋଇଥିଲେ ମଧ୍ୟ ସେମାନଙ୍କୁ ଶାକ୍ତ ଧର୍ମରେ ଅହିଂସାର ମୂର୍ତ୍ତି ଭାବରେ ଉପାସନା କରାଯାଇଥାଏ ।

କେଶରୀ ବଂଶର ରାଜତ୍ୱକାଳରେ ବାଣପୁରରେ ଭଗବତୀ, ବଡ଼ମ୍ବାର ଭଟ୍ଟାରିକା ନାମରେ ନାମିତ ଦଶଭୁଜା ଦୁର୍ଗା, ଖିଚିଂର କୀଚକେଶ୍ୱରୀ, ଚୌରାସୀଠାରେ ବାରାହୀ, ପାଟଣାଗଡ଼ରେ ପାଟଣେଶ୍ୱରୀ, ମୋତିଆଠାରେ ଚତୁର୍ଭୁଜା ମହିଷାମର୍ଦ୍ଦିନୀ ଦୁର୍ଗା ଓ ଷଡ଼ଭୁଜା କୁତାମଚଣ୍ଡୀ, କେନ୍ଦୁଲିଠାରେ ଅମ୍ବା ଓ ଅମ୍ବାଳିକା, ଭୁଷଣ୍ଡପୁରରେ ଉଗ୍ରତାରା, ବାଙ୍କିରେ ଚର୍ଚ୍ଚିକା, ପୁରୀଠାରେ ଶ୍ୟାମାକାଳୀ, ଝଙ୍କଡ଼ରେ ଶାରଳା, ସମ୍ବଲପୁରର ସମ୍ବଲେଶ୍ୱରୀ, ଗଞ୍ଜାମରେ ତାରାତାରିଣୀ ପ୍ରଭୃତି ଦେବୀପୀଠ ସହିତ ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରେ ବହୁ ଶାକ୍ତମୂର୍ତ୍ତି ମନ୍ଦିରରେ ଉପାସିତା ହେଉଥିବାର ସୂଚନା ମିଳେ । ଐତିହାସିକ ତଥ୍ୟରୁ ଜଣାପଡ଼େ ଯେ, ଓଡ଼ିଶାର ବିଶେଷକରି ଉପକୂଳବର୍ତ୍ତୀ ଅଂଚଳରେ ବହୁ ତାନ୍ତ୍ରିକ ଚାମୁଣ୍ଡା ମୂର୍ତ୍ତିଙ୍କର ଉପାସନା ପ୍ରଚଳିତ ଥିଲା । କେଶରୀ ଯୁଗର ଉଲ୍ଲେଖଯୋଗ୍ୟ ଘଟଣା ହେଉଛି ଯୋଗିନୀ ଉପାସନା । ଭାରତର ମୁଖ୍ୟ ଚାରି ଗୋଟି ଯୋଗିନୀ ପୀଠ ମଧ୍ୟରୁ ଓଡ଼ିଶାର ହୀରାପୁର ଓ ରାଣୀପୁର ଝରିଆଲଠାରେ ଦୁଇଟି ଓ ମଧ୍ୟପ୍ରଦେଶର ଖଜୁରାହୋ ଓ ଭେରାଘାଟଠାରେ ଦୁଇଟି ଥିବାର ଦେଖାଯାଏ । ସଂସ୍କୃତ ପୁରାଣ ସାହିତ୍ୟର ପ୍ରସିଦ୍ଧ ଶାକ୍ତ ଗ୍ରନ୍ଥ ଦେବୀ ଭାଗବତର ଅବଲମ୍ବନରେ 'ଚଣ୍ଡୀ ପୁରାଣ' ଗ୍ରନ୍ଥରୁ ୬୪ ଯୋଗିନୀଙ୍କ ବର୍ଣ୍ଣନା ଉଲ୍ଲେଖ ରହିଛି ।

ଆହେ ପରୀକ୍ଷ ଶୁଣ କହନ୍ତି ଶୁକବ୍ରହ୍ମା
ସଂକ୍ଷେପି କହିବା ଚଉଷଠି ଯୋଗୀଙ୍କ ମହିମା ॥

x x x x

ଶୁଣ ହୋ ପରୀକ୍ଷ ରାଜା ବଦନ୍ତି ଶୁକମୁନି
ଏ ସନକ ନାମ ଅଟେ ଚଉଷଠି ଯୋଗ୍ନୀ ॥

ଦେବୀ ନିଜର ସହଯୋଗିନୀ ରୂପେ ଯୋଗିନୀମାନଙ୍କୁ ଜାତ କରାଇ ସେମାନଙ୍କୁ ବିଭିନ୍ନ ବାହନରେ ଭୂଷିତ କରାଇଥିଲେ ।

**ଗଙ୍ଗବଂଶ ରାଜତ୍ୱରେ ଶକ୍ତି ଉପାସନା**

ଓଡ଼ିଶାର ଧର୍ମ ଇତିହାସରେ ୧୦୭୭ ଖ୍ରୀ:ଅ:ରୁ ୧୪୩୫ ଖ୍ରୀ:ଅ: ପର୍ଯ୍ୟନ୍ତ ଗଙ୍ଗବଂଶର ରାଜାମାନେ ରାଜତ୍ୱ କରୁଥିଲେ । ଧର୍ମ ପରାୟଣ ରାଜାମାନଙ୍କ ସହାୟତା ଓ ସମର୍ଥନ ଲାଭକରି ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମର ଉପାସକମାନେ ସ୍ୱ ସ୍ୱ ମତବାଦର ପ୍ରଚାର ଓ ପ୍ରସାର କରିଥିଲେ । ସେତେବେଳେ ଜୈନ ଓ ବୌଦ୍ଧଧର୍ମର ପ୍ରସାର ସଂପୂର୍ଣ୍ଣ ହ୍ରାସ ପାଇଥିଲା । ସ୍ମୃତି ସାହିତ୍ୟ ମାଧ୍ୟମରେ ବୈଦିକ କ୍ରିୟାକାଣ୍ଡର ପ୍ରସାର ଘଟିଥିଲା । ଏହି ସମୟରେ ପଞ୍ଚୋପାସନା ଗାଣପତ୍ୟ, ସୌର, ବୈଷ୍ଣବ, ଶୈବ ଓ ଶାକ୍ତପୀଠ ରୂପେ ପ୍ରସିଦ୍ଧ ମହାବିନାୟକ, କୋଣାର୍କ, ପୁରୀ, ଭୁବନେଶ୍ୱର ଓ ବିରଜା କ୍ଷେତ୍ରର ସାମୂହିକ ଉନ୍ନତି ସାଧିତ ହୋଇଥିଲା ।

ଏହି ସମୟରେ ପୁରୀ ଅନ୍ୟତମ ତନ୍ତ୍ର କ୍ଷେତ୍ର ରୂପେ ମାନ୍ୟତା ଅର୍ଜନ କରିଥିଲା । 'ଦେବୀ ଭାଗବତ'ର ଉଲ୍ଲେଖାନୁଯାୟୀ ଶ୍ରୀଜଗନ୍ନାଥଙ୍କୁ ଭୈରବ ଓ ବିମଳାଙ୍କୁ ଭୈରବୀ ରୂପେ ଆରାଧନା କରାଯାଉଥିଲା । ଜୈନ, ବୌଦ୍ଧ ପ୍ରଭୃତି ବିଭିନ୍ନ ଧର୍ମର ପ୍ରଭାବ ସତ୍ତ୍ୱେ ଶ୍ରୀଜଗନ୍ନାଥ ତ୍ରିମୂର୍ତ୍ତିଙ୍କୁ ବୈଷ୍ଣବ, ଶୈବ ଓ ଶାକ୍ତ ଭାବନାର ପ୍ରତୀକ ରୂପେ ଗ୍ରହଣ କରାଯାଇଛି । ସୁଭଦ୍ରା ଦେବୀ ଦୁର୍ଗା ବା କାତ୍ୟାୟନୀଙ୍କ ଅବତାର ରୂପୀ ଏକାନଂସା ଭାବେ ପରିଚିତା ହୋଇଆସୁଛନ୍ତି । ଏହି ସମୟରେ ଲିଙ୍ଗରାଜ ମନ୍ଦିର ମଧ୍ୟରେ ପାର୍ବତୀ, ଗୋପାଳିନୀ ଏବଂ ଶ୍ରୀମନ୍ଦିରରେ ଲକ୍ଷ୍ମୀ, ସରସ୍ୱତୀ, ମଙ୍ଗଳା, ଭୁବନେଶ୍ୱରୀ ପ୍ରଭୃତି ଦେବୀ ମୂର୍ତ୍ତିମାନ ସ୍ୱତନ୍ତ୍ର ମନ୍ଦିରରେ ପ୍ରତିଷ୍ଠିତା ହୋଇଥିଲେ ।

ଗଙ୍ଗବଂଶୀୟ ରାଜାମାନେ ବିଶେଷକରି ବୈଷ୍ଣବ ଧର୍ମାବଲମ୍ବୀ ଥିବାରୁ ବୈଷ୍ଣବ ଧର୍ମର ପ୍ରାଧାନ୍ୟ ଯୋଗୁଁ ଶାକ୍ତ ଧର୍ମ ବା ଶାକ୍ତ ଉପାସନା କିଞ୍ଚିତ ମନ୍ଥର ହୋଇଯାଇଥିଲା ବୋଲି ଆଲୋଚକମାନେ ମତ ଦିଅନ୍ତି । 'ଶତାନନ୍ଦ ସଂଗ୍ରହ' ଗ୍ରନ୍ଥରେ ମଧ୍ୟ ସାବିତ୍ରୀବ୍ରତ, ଗୌରୀବ୍ରତ, ଅପରାଜିତା ଦଶମୀ, ଦଶହରା, ଭଦ୍ରାଷ୍ଟମୀ, ବରଦା ଚତୁର୍ଥୀ, ଶ୍ରୀପଞ୍ଚମୀ ଏବଂ କୃତ୍ୟ କୌମୁଦୀ ଗ୍ରନ୍ଥରେ ହରିତାଳିକା, ମହାଷ୍ଟମୀ, ଦୁର୍ଗା ପୂଜା, ଭୈମୀ ଏକାଦଶୀ ପ୍ରଭୃତି ତଥା ଶକ୍ତିପୂଜାର ତିଥି ପର୍ବ ହିସାବରେ ବୀରାଷ୍ଟମୀ ବ୍ରତ, କେଦାରମା ବ୍ରତ, କୁକ୍କୁଟୀ ବ୍ରତ, ପାଞ୍ଚମାସୀ ବ୍ରତ,





ବୁଧେଇ ଓଷା, ବଜ୍ର ମହାକାଳୀ ବ୍ରତ, ରାଧାଷ୍ଟମୀ ବ୍ରତ ପାଳନରୁ ଶକ୍ତି ଉପାସନାର ନିଦର୍ଶନ ମିଳିଥାଏ ।

ଗଙ୍ଗ ଯୁଗରେ ଓଡ଼ିଶାରେ ଶୈବ, ଶାକ୍ତ ଓ ବୈଷ୍ଣବ ଧାରାର ସମନ୍ୱୟ ସାଧିତ ହୋଇଥିଲା । ପୁରୀ, କୋଣାର୍କ ଓ ଭୁବନେଶ୍ୱର ସହିତ ଅନ୍ୟାନ୍ୟ ପୀଠଗୁଡ଼ିକରେ ଉକ୍ତ ତ୍ରିଧାରାର ଦେବଦେବୀଙ୍କ ଉଦ୍ଦେଶ୍ୟରେ ମନ୍ଦିରମାନ ନିର୍ମାଣ କରାଯାଇଥିଲା । ତେଣୁ ଶ୍ରୀଲିଙ୍ଗରାଜ ହରିହର ରୂପରେ, ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ସୁଭଦ୍ରା ଦେବୀ, ବାସୁଦେବ, ଅନନ୍ତ ଓ ଏକାନଂସା ବା ଜଗନ୍ନାଥ, ଶିବ ଓ ଦୁର୍ଗା ରୂପରେ ଅରାଧିତା ହେବାର ଗଙ୍ଗଯୁଗର ଇତିହାସ ଓ ଧର୍ମଗ୍ରନ୍ଥରୁ ପ୍ରମାଣ ମିଳେ ।

## ସୂର୍ଯ୍ୟବଂଶୀ ରାଜତ୍ୱରେ ଶକ୍ତି ଉପାସନା

୧୪୩୫-୧୫୩୫ ଖ୍ରୀ:ଅ: ପର୍ଯ୍ୟନ୍ତ ଗଙ୍ଗକାଳୀନ ଧର୍ମୀୟ ଭାବଧାରା ଅବ୍ୟାହତ ରହିଥିଲା ଶ୍ରୀଚୈତନ୍ୟଙ୍କ ଆଗମନ ପର୍ଯ୍ୟନ୍ତ । ପୁରୀରେ ଶ୍ରୀଚୈତନ୍ୟଙ୍କ ଆଜୀବନ ଅବସ୍ଥାନ ଯୋଗୁଁ ଓଡ଼ିଶାର ବୈଷ୍ଣବ ଧର୍ମରେ ବିଭାଜନ ଦେଖା ଦେଇଥିଲା । ଏହି ଧର୍ମ ଉତ୍କଳୀୟ ଓ ଗୌଡ଼ୀୟ ବୈଷ୍ଣବ ଭାବେ ଦ୍ୱିଧା ବିଭକ୍ତ ହୋଇଥିଲେ । ଉଭୟ ଗୋଷ୍ଠୀର ଉପାସ୍ୟ ଦେବତା ଥିଲେ ଶ୍ରୀଜଗନ୍ନାଥ । ବୈଷ୍ଣବଧର୍ମର ପ୍ରବାହ ସତ୍ତ୍ୱେ ଗଜପତି କପିଳେନ୍ଦ୍ର ଦେବ ପୁରୁଷୋତ୍ତମ ଦେବ ଓ ପ୍ରତାପରୁଦ୍ରଦେବ ନିଜ ନିଜକୁ ଶ୍ରୀଦୁର୍ଗା ଦେବୀଙ୍କର ବରପୁତ୍ର ରୂପେ ଅଭିଲେଖଗୁଡ଼ିକରେ ଉଦ୍‌ଘୋଷଣା କରିଛନ୍ତି ।

ଗଜପତି ପୁରୁଷୋତ୍ତମ ଦେବଙ୍କ ପ୍ରଣୀତ 'ଭୁବନେଶ୍ୱରୀ ପୂଜାପଲ୍ଲବ', ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ 'ଶାରଦା ଶରଦର୍ଚ୍ଚନ ପଦ୍ଧତି, ବାସୁଦେବ ରଥଙ୍କ 'ଶ୍ୟାମାର୍ଚ୍ଚନ ପଦ୍ଧତି' ଓ 'ଭୁବନେଶ୍ୱରୀ ପ୍ରକାଶ' ଗ୍ରନ୍ଥରୁ ଗଜପତି ରାଜତ୍ୱରେ ଶାକ୍ତ ଉପାସନାର ଲୋକପ୍ରିୟତାର ପ୍ରମାଣ ମିଳେ । ଏହା ବ୍ୟତୀତ ଓଡ଼ିଆ ଭାଷାରେ ଲିଖିତ ସାରଳା ଦାସଙ୍କ 'ଚଣ୍ଡୀ ପୁରାଣ' ଓ ମହାଭାରତରେ ଶାକ୍ତମୂର୍ତ୍ତି ଶାକ୍ତ ମନ୍ଦିର ସହିତ ଗ୍ରାମଦେବତୀ ରୂପେ ପୂଜା ପାଇ ଆସୁଥିବା ଅସଂଖ୍ୟ ତାନ୍ତ୍ରିକ ଦେବୀମୂର୍ତ୍ତିମାନଙ୍କ ସମ୍ବନ୍ଧରେ ବହୁ ଅଲୌକିକ କାହାଣୀଗୁଡ଼ିକର ଅବତାରଣା କରାଯାଇଛି ।

ନମସ୍ତେ ମଙ୍ଗଳାମାଗୋ ନମସ୍ତେ ହରଚଣ୍ଡୀ
ତୋତେ ସୁମରିଲେ ମାଗୋ ଦୁର୍ଗତି ହୋଏ ଖଣ୍ଡି

x x x x

କାକଟପୁରରେ ରହିଲୁ ମାଗୋ ମଙ୍ଗଳା ବୋଲାଇ
କୋଣାରକେ ରହିଲୁ ମାଗୋ ଅଭୟେ ରାମଚଣ୍ଡୀ

x x x x

ଭୁବନେଶ୍ୱରରେ ରହିଲୁ ନାମ ତୋ ଗଉରୀ
ନମସ୍ତେ ଚଣ୍ଡିକା ମାଗୋ ଅମ୍ବିକା ମାହେଶ୍ୱରୀ ॥

ଚଣ୍ଡୀପୁରାଣର ତଥ୍ୟ ଓ ବିବରଣୀରୁ ଶକ୍ତିପୀଠ ଓ ଶକ୍ତି ଉପାସନାର ପ୍ରମୁଖ ଦେବୀଶକ୍ତିର ପରିଚୟ ମିଳେ ।

## ଭୋଇବଂଶୀୟ ରାଜତ୍ୱରେ ଶକ୍ତି ଆରାଧନା

ଖୋରଧାର ଭୋଇବଂଶଙ୍କ ରାଜୁତି କାଳରେ ନିର୍ଦ୍ଦିଷ୍ଟ ଭାବେ କୌଣସି ମୂର୍ତ୍ତି ବା ମନ୍ଦିର ନିର୍ମାଣ ହୋଇନଥିଲେ ମଧ୍ୟ ଏହି ସମୟରେ ଲିଖିତ ଶାକ୍ତ ସାହିତ୍ୟ ଗ୍ରନ୍ଥମାନଙ୍କରେ ମାତୃପୂଜାର ସ୍ତୁତି ଓ ସ୍ତବ ଶକ୍ତି ଉପାସନାର ଅବ୍ୟାହତ ଧାରାକୁ ସ୍ମରଣ କରାଇ ଦିଏ । ବିଶ୍ୱନାଥ ସିଂହଙ୍କ 'ସ୍ମୃତିସାର ସଂଗ୍ରହ', ଦିବ୍ୟସିଂ ମହାପାତ୍ରଙ୍କ କାଳଦୀପ, ରଘୁନାଥ ଦାସଙ୍କ 'କାଳନିର୍ଣ୍ଣୟ', କୃଷ୍ଣ ମିଶ୍ରଙ୍କ 'କାଳ ସର୍ବସ୍ୱ' ଗ୍ରନ୍ଥରେ ଶାକ୍ତ ପୂଜାର ସ୍ପଷ୍ଟ ଚିତ୍ର ମିଳିଥାଏ ।

## ଶାରଦୀୟ ପୂଜା କାହିଁକି ?

ଅଦ୍ୟାବଧି ଓଡ଼ିଶାରେ ଶକ୍ତିର ଉପାସନାର ପ୍ରାଧାନ୍ୟ ଦେଖିବାକୁ ମିଳେ । ଶକ୍ତି ଉପାସନା କ୍ଷେତ୍ରରେ ମାତୃଶକ୍ତି ରୂପେ ଦୁର୍ଗା ଦେବୀଙ୍କୁ ଆରାଧନା କରାଯାଏ । ଭାଦ୍ରବ ମାସର ଶୁକ୍ଳପକ୍ଷ ଅଷ୍ଟମୀଠାରୁ (ଦୁର୍ଗା ଶୟନାଷ୍ଟମୀ) ଦେବୀ ପନ୍ଦର ଦିନ ପର୍ଯ୍ୟନ୍ତ ଶୟନ କରନ୍ତି ଓ ଆଶ୍ୱିନ ମାସ କୃଷ୍ଣପକ୍ଷ ଅଷ୍ଟମୀ ଦିନ ଜାଗ୍ରତ ହୁଅନ୍ତି । ଏହି ଦିନ ମା ଦୁର୍ଗାଙ୍କର ଷୋହଳ ପୂଜା ପାଇଁ ସହସ୍ରକୁମ୍ଭ ଅଭିଷେକ କରାଯାଏ । ଶରତକାଳରେ ଏହା ଅନୁଷ୍ଠିତ ହେଉଥିବାରୁ ଏହାକୁ 'ଶାରଦୀୟ ପୂଜା ନାମରେ ନାମିତ କରାଯାଇଛି । ଏହି ପୂଜା ଉତ୍ତର ଭାରତ ଓ ପୂର୍ବୋତ୍ତର ଭାରତରେ ଦେବୀଙ୍କର ଏହି ପୂଜା ନଅ ଦିନ ଧରି କରାଯାଏ । ଏହା 'ନବରାତ୍ରି ପୂଜା' ନାମରେ ଆଖ୍ୟାୟିତ । କେତେକ ସ୍ଥାନରେ ଦ୍ୱିତୀୟାଠାରୁ ପୂଜା ଆରମ୍ଭ ହୁଏ ଓ ଏହାକୁ 'ଅଷ୍ଟ ଦିବସ ପୂଜା' କହନ୍ତି । ବିଶେଷ କରି ପରିବାରମାନଙ୍କରେ ଅଧିଷ୍ଠିତ ଦେବୀଙ୍କର ଏହି ପୂଜା ସପ୍ତମୀଠାରୁ ଆରମ୍ଭ ହୁଏ । ଏହା 'ତ୍ରିଦିବସ ପୂଜା' ଭାବେ ଖ୍ୟାତ ।

ଦେବୀ ପୁରାଣରେ ଅଷ୍ଟମୀ ତିଥିରେ ଦେବୀଙ୍କ ପୂଜା ଦ୍ୱାରା ବିଷ୍ଣୁ ଲୋକ ପ୍ରାପ୍ତି ହୁଏ ବୋଲି ବର୍ଣ୍ଣିତ ହୋଇଛି -

ଅଷ୍ଟମ୍ୟାଂ ରୋହିଣୀ ଋକ୍ଷେ ସୋପବାସନ୍ତୁ ପୂଜୟେତ୍
ବିଷ୍ଣୁ ଲୋକମବାପ୍ନୋତି ସର୍ବକାମସମୁଜ ଝିତମ୍ ।

ଶାରଦୀୟ ଦୁର୍ଗାପୂଜାରେ ଶାକ୍ତମୂର୍ତ୍ତି ସ୍ୱରୂପ ମହିଷାମର୍ଦ୍ଦିନୀ ଦୁର୍ଗା ବା ଶକ୍ତି ଦେବୀଙ୍କୁ ଆରାଧନା କରାଯାଏ । ବୌଦ୍ଧମତାବଲମ୍ବୀଙ୍କ ଅନୁସାରେ ମହିଷକୁ ଅଜ୍ଞାନର ପ୍ରତୀକ ରୂପେ ଗ୍ରହଣ କରାଯାଇ ଏହାର ବିନାଶ କରିବା ପାଇଁ ଜ୍ଞାନର ଦେବୀ ଦୁର୍ଗାଙ୍କର ଆବିର୍ଭାବକୁ ବୁଝାପଡ଼ିଥାଏ । ଅଜ୍ଞାନକୁ ଅସୁର ରୂପେ ଜ୍ଞାନ କରାଯାଉ ନଥିଲା । ଜ୍ଞାନର ଦେବୀ ଦୁର୍ଗା ଅଜ୍ଞାନକୁ ନାଶ କରୁଥିଲେ । ଏହିଭଳି କେତେ ଶହ ବର୍ଷ ପରେ ବୌଦ୍ଧ ପଣ୍ଡିତଙ୍କର ଧାରଣା ହେଲା ମଣିଷମାନଙ୍କ ଭିତରେ ବହୁ ଅଜ୍ଞାନ ଅଛନ୍ତି । ତେଣୁ ସଂପୂର୍ଣ୍ଣ ମହିଷ ବଦଳରେ ମହିଷ





ମୁଣ୍ଡଯୁକ୍ତ ମଣିଷ ଶରୀରର ମହିଷାସୁରକୁ ପ୍ରଜ୍ଞାମୟୀ ଦେବୀ ବିନାଶ କରୁଥିବାର ମୂର୍ତ୍ତି ଗଠନ କରାଗଲା । ମହିଷାସୁରମର୍ଦ୍ଦିନୀ କଥା ପ୍ରଥମେ ଆମେ ମାର୍କଣ୍ଡେୟ ପୁରାଣ ଓ ସେହି ପୁରାଣ ଅନ୍ତର୍ଗତ ସପ୍ତଶତୀ ଚଣ୍ଡୀରୁ ଦେଖିବାକୁ ପାଉ ।

ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତରେ ମଣିଷଭଳି ମହିଷ ମସ୍ତକଯୁକ୍ତ ମାନବଦେହୀ ମହିଷାସୁର ଦକ୍ଷିଣ ଭାରତୀୟ ସଂସ୍କୃତିର ପରିଚାୟକ । ସେହିଭଳି ମହିଷ ଶରୀରରୁ ଅର୍ଦ୍ଧନିଷ୍କ୍ରାନ୍ତ ମାନବଦେହୀ ମହିଷାସୁର ଉତ୍ତର ଭାରତୀୟ ସଂସ୍କୃତିର ପ୍ରତୀକ । ମାନ୍ଦ୍ରାଜ ବା ଚେନାଇସ୍ଥିତ ମହାବଳିପୁରମ୍ ଶିବ ମନ୍ଦିରରେ ମହିଷମୁଣ୍ଡଯୁକ୍ତ ମାନବଦେହୀ ଗଦାହସ୍ତେ ଯୁଦ୍ଧରତ ମହିଷାସୁରର ମୂର୍ତ୍ତି ରହିଛି । ଏହା ସପ୍ତମ ଶତାବ୍ଦୀର ମହିଷାସୁର ଅଷ୍ଟଭୁଜା ଦେବୀ ଦୁର୍ଗାଙ୍କ ସହିତ ଯୁଦ୍ଧରତ ।

କବି ଡିଣ୍ଡିମ ଜୀବଦେବାଚାର୍ଯ୍ୟଙ୍କ ପୁତ୍ର ବର୍ଦ୍ଧନ ମହାପାତ୍ରଙ୍କ ପ୍ରଣୀତ 'ଦୁର୍ଗୋତ୍ସବ ଚନ୍ଦ୍ରିକା'ରେ ଶରତକାଳୀନ ଦୁର୍ଗାପୂଜାର ବୈଶିଷ୍ଟ୍ୟ ଆଲୋଚିତ ହୋଇଛି । ଦେଶ ତଥା ଗୋ-ସମ୍ପଦ, ଶସ୍ୟ ସଂପଦର ସମୃଦ୍ଧି ସହିତ ବର୍ଣ୍ଣ ନର୍ବିଶେଷରେ ପ୍ରଜାବର୍ଗର କଲ୍ୟାଣ ସାଧନ ନିମିତ୍ତ ମହିଷାମର୍ଦ୍ଦିନୀ ଦୁର୍ଗାଙ୍କର ଷୋଡ଼ଶ ଦିବସାବଧି ପୂଜାବିଧିର ଦିଗ୍‌ଦର୍ଶନ ହିଁ ଏହି ପୂଜାର ମୁଖ୍ୟ ପ୍ରତିପାଦ୍ୟ । ତେଣୁ ଦୁର୍ଗାପୂଜା ଏକ ସାର୍ବଜନୀନ ପୂଜା । ଏହି ପୂଜାରେ ଜାତି-ଧର୍ମ-ନିର୍ବିଶେଷରେ ସମସ୍ତେ ଅଂଶ ଗ୍ରହଣ କରିପାରିବେ ବୋଲି ଉଲ୍ଲେଖ ଅଛି -

ରାଜନ୍ୟାନାଂ ବ୍ରାହ୍ମଣାନାଂ ବିଶାଂଚ<br>
ଶୂଦ୍ରାଣାଂ ବା ସର୍ବବର୍ଣ୍ଣାଙ୍ଗକାନାମ୍<br>
ମ୍ଳେଚ୍ଛାନାଂ ବା ଭକ୍ତିଚର୍ଯ୍ୟା ବିଶେଷୈଃ<br>
କର୍ମଣ୍ୟସ୍ମିନ୍ ନିର୍ବିବିଦେଖିକାରଃ । ୨୫ ।

ଉପରୋକ୍ତ ଆଲୋଚନାରୁ ଏହା ସ୍ପଷ୍ଟ ଅନୁମେୟ ଯେ ଓଡ଼ିଶାରେ ଗୁପ୍ତୋତ୍ତର କାଳଠାରୁ ଆଜି ପର୍ଯ୍ୟନ୍ତ ବୈଦିକ, ତାନ୍ତ୍ରିକ ଓ ଲୌକିକ ଦେବ ଦେବୀମାନଙ୍କର ଉପାସନା ଧାରା କ୍ରମବିବର୍ତ୍ତନ ମଧ୍ୟ ଦେଇ ନିରବଚ୍ଛିନ୍ନ ପ୍ରବାହିତ ହେଉଥିବାର ଦେଖାଯାଏ । ଆମ ଓଡ଼ିଶା ଭୂଖଣ୍ଡ ଯେ ଶକ୍ତି ଉପାସନାର ଏକ ପ୍ରାଚୀନତମ ପ୍ରମୁଖ ପୀଠ ରୂପେ ଖ୍ୟାତ ଏବଂ ବିଭିନ୍ନ ମତବାଦର ସମନ୍ୱୟସ୍ଥଳୀ ବା ପୀଠ ସାଜିଥିବା ଓଡ଼ିଶା ତନ୍ତ୍ରଶାସ୍ତ୍ର, ତନ୍ତ୍ର ମତବାଦ ବା ଶାକ୍ତ ଉପାସନାର ଇତିହାସରେ ପ୍ରସାର ଓ ପ୍ରବାହ ଦୃଷ୍ଟିରୁ ଯେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଆସିଛି, ଏଥିରେ ସନ୍ଦେହ ନାହିଁ ।

**ସହାୟକ ଗ୍ରନ୍ଥ**


୧. ଚଣ୍ଡୀପୁରାଣ - ରାଜ୍ୟ ସଂଗ୍ରହାଳୟ ପୋଥି

୨. ଶ୍ୟାମାର୍ଚ୍ଚନା ପଦ୍ଧତି-ସ୍ମୃତିକାର ବାସୁଦେବ ରଥ

୩. ଓଡ଼ିଶାର ଶାକ୍ତ ସଂସ୍କୃତି - ଓଡ଼ିଶା କଲଚରାଲ ଫୋରମ୍

୪. ଦେବୀ ପୁରାଣ

୫. କାଳିକା ସ୍ତୁତି - ସାରଳା ଦାସ

୬. ଓଡ଼ିଶାର ଦେବଦେବୀ - ଉତ୍କଳ ପାଠକ ସଂସଦ



ଅଧ୍ୟକ୍ଷ, ଓଡ଼ିଶା ଶିକ୍ଷା ସେବା<br>
କ୍ୟାପିଟାଲ ହାଇସ୍କୁଲ<br>
ୟୁନିଟ୍-୩, ଭୁବନେଶ୍ୱର


## ଆଦିବାସୀ ଇଲାକାରେ ଛୋଟ ଛୋଟ ଅପରାଧଜନିତ ପୋଲିସ କେଶ୍ ପ୍ରତ୍ୟାହାର ପାଇଁ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ

ଆଦିବାସୀ ଇଲାକାମାନଙ୍କରେ ଘଟିଥିବା ଛୋଟ ଛୋଟ ଅପରାଧଜନିତ ପୋଲିସ କେଶ୍‌ଗୁଡ଼ିକର ମାସକ ମଧ୍ୟରେ ସମୀକ୍ଷା କରି ଆବଶ୍ୟକ ସ୍ଥଳେ ପ୍ରତ୍ୟାହାର କରିଦେବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ନିର୍ଦ୍ଦେଶ ଦେଇଛନ୍ତି ।







# ସର୍ବସ୍ୟାର୍ତ୍ତିହରେ ଦେବୀ

ପୂର୍ଣ୍ଣେନ୍ଦୁ କୁମାର ନନ୍ଦ

**ଶ**କ୍ତି ଦର୍ଶନର ମୂଳ ଉତ୍ସ ରୂପେ ମାର୍କଣ୍ଡେୟ ପୁରାଣ ଅନ୍ତର୍ଗତ ସପ୍ତଶତ ଶ୍ଳୋକ ବିଶିଷ୍ଟ ଶ୍ରୀ ଶ୍ରୀ ଚଣ୍ଡୀ ମାହାତ୍ମ୍ୟ ସମଗ୍ର ଭାରତରେ ସୁପରିଚିତ । ଏହି ଶ୍ରୀ ଶ୍ରୀ ଚଣ୍ଡୀରେ ତିନିଗୋଟି ପ୍ରଧାନ ଚରିତ ରହିଛି । ପ୍ରଥମ ଚରିତରେ ମଧୁକୈଟଭ ଅସୁରଦ୍ୱୟଙ୍କ ବଧ ବିଷୟରେ ବର୍ଣ୍ଣନା କରାଯାଇଛି । ଏଥିରେ ଉଲ୍ଲେଖ ଅଛି ଯେ ବ୍ରହ୍ମାଙ୍କ ସ୍ତୁତି ଫଳରେ ଯୋଗନିଦ୍ରାରୂପିଣୀ ମହାକାଳୀ ଆବିର୍ଭୂତା ହୋଇଥିଲେ । ସେହି ଯୋଗମାୟା ବିଷ୍ଣୁଙ୍କୁ ନିଦ୍ରାରୁ ଉତ୍‌ଥାନ କରାଇବା ଫଳରେ ବିଷ୍ଣୁଙ୍କ ଦ୍ୱାରା ମଧୁକୈଟଭ ଅସୁରଦ୍ୱୟଙ୍କ ବଧ ହୋଇଥିଲା । ଶ୍ରୀଚଣ୍ଡୀର ମଧ୍ୟମ ଚରିତରେ ମହିଷାସୁର ବଧ ବିଷୟରେ ବର୍ଣ୍ଣନା ରହିଛି । ସେଥିରେ ଉଲ୍ଲେଖ ଅଛି ଯେ ଇନ୍ଦ୍ର ଆଦି ଦେବତାଗଣଙ୍କଠାରୁ ମହିଷାସୁର ଦ୍ୱାରା ସେମାନଙ୍କର ପରାଜୟର ବାର୍ତ୍ତା ଶୁଣି ବିଷ୍ଣୁ କ୍ରୋଧରେ କମ୍ପିବାକୁ ଲାଗିଲେ । ରୁଦ୍ର ଆଦି ଅନ୍ୟାନ୍ୟ ଦେବତାମାନେ ମଧ୍ୟ ସେହିପରି କ୍ରୋଧରେ କମ୍ପନ କଲେ । ସୁତରାଂ ସକଳ ଦେବତାଙ୍କର ଶରୀରରୁ ଦିବ୍ୟତେଜ ନିର୍ଗତ ହୋଇ ସେହି ତେଜ ସମୂହର ସମ୍ମିଳିତ ଶକ୍ତି ରୂପେ ମହାଲକ୍ଷ୍ମୀ ଆବିର୍ଭୂତା ହେଲେ । ସେହି ମହାଲକ୍ଷ୍ମୀ ହିଁ ଦୁର୍ଗା ରୂପେ ମହିଷାସୁରକୁ ବଧ କରିଥିଲେ । ବାସ୍ତବରେ ସେହି ମହିଷମର୍ଦ୍ଦିନୀ ମହାଲକ୍ଷ୍ମୀ ଦୁର୍ଗା ରୂପେ ଶରତକାଳରେ ଆବିର୍ଭୂତା ହୋଇଥିଲେ । ଶ୍ରୀଚଣ୍ଡୀର ଉତ୍ତର ଚରିତରେ ଶୁମ୍ଭ ନିଶୁମ୍ଭ ବଧ ବିଷୟରେ ବର୍ଣ୍ଣନା କରାଯାଇଛି । ଦେବୀ କୌଶିକୀ ମୂର୍ତ୍ତିଙ୍କଠାରୁ ମହାସରସ୍ୱତୀ ରୂପେ ଆବିର୍ଭୂତା ହୋଇ ଧୂମ୍ରଲୋଚନ, ରକ୍ତବୀଜ ତଥା ଶୁମ୍ଭ ନିଶୁମ୍ଭଙ୍କୁ ବଧ କରିଥିଲେ । ଶୁମ୍ଭ ଅସୁରକୁ ଦେବୀ ଅଦ୍ୱୈତ ଦର୍ଶନର ରହସ୍ୟ ବୁଝାଇ କହିଥିଲେ - ଏକୈବାହଂ ଜଗତ୍ୟତ୍ର, ଦ୍ୱିତୀୟା କା ମମାପରା ।

ଅର୍ଥାତ୍, ଏ ସକଳ ଜଗତରେ ମୁଁ ହିଁ ଏକମାତ୍ର ଶକ୍ତି ରୂପେ ପରିବ୍ୟାପ୍ତ ରହିଛି । ମୋ'ଠାରୁ ଭିନ୍ନ ଦ୍ୱିତୀୟ ଶକ୍ତି ଆଉ କେହି ନାହାନ୍ତି ।

ମହାଦେବୀ ଦୁର୍ଗା ଅସଂଖ୍ୟ ସୈନ୍ୟ ସାମନ୍ତଙ୍କ ସହିତ ଶୁମ୍ଭ ନିଶୁମ୍ଭ ଆଦିଙ୍କୁ ବଧ କରିବା ପରେ ଇନ୍ଦ୍ର ଆଦି ଦେବତାଗଣ ଅତ୍ୟନ୍ତ ଆନନ୍ଦରେ ହୋମାଗ୍ନି ପ୍ରଜ୍ୱଳିତ କରି ଦିବ୍ୟଜନନୀଙ୍କର ସ୍ତୁତି କରିଥିଲେ । ଏହି ସ୍ତୁତିଟି ଶ୍ରୀଚଣ୍ଡୀର ଏକାଦଶ ଅଧ୍ୟାୟରେ ବର୍ଣ୍ଣନା କରାଯାଇଛି ଓ ଏହାକୁ ନାରାୟଣୀ ସ୍ତୁତି କୁହାଯାଏ । ଏହି ସ୍ତୋତ୍ରଟିରେ ଭାବର ଗାମ୍ଭୀର୍ଯ୍ୟ ଓ ଭକ୍ତିର ମାଧୁର୍ଯ୍ୟ ପ୍ରତିଫଳିତ ହୋଇଛି । ଏହି ସ୍ତୋତ୍ରଟିର ବିଶଦ ଆଲୋଚନା କଲେ ଜଣାଯାଏ ଯେ ଏଥିରେ ଦେବଗଣ ସକଳ ବିପଦରୁ ଉଦ୍ଧାର ପାଇଁ ଭଗବତୀ ଦୁର୍ଗାଙ୍କୁ ଅତ୍ୟନ୍ତ ବିନୀତ ଭାବରେ ଭକ୍ତିପୂର୍ଣ୍ଣ ପ୍ରାର୍ଥନା କରିଛନ୍ତି । ସେଥିରେ କୁହାଯାଇଛି -

'ହେ ଶରଣାଗତ ଦୁଃଖହାରିଣୀ ଦେବି ! ଆପଣ ପ୍ରସନ୍ନା ହୁଅନ୍ତୁ । ଏ ନିଖିଳ ଜଗତର ଆପଣ ଏକମାତ୍ର ଆଧାରସ୍ୱରୂପା । ରସ ରୂପେ ଆପଣ ସମସ୍ତ ବିଶ୍ୱକୁ ଆପ୍ୟାୟିତ କରିଛନ୍ତି । ଆପଣ ଅନନ୍ତ ବୀର୍ଯ୍ୟଶାଳିନୀ ବୈଷ୍ଣବୀ ଶକ୍ତି । ଆପଣ ହିଁ କାମରୂପା ମହାମାୟା, ସକଳ ଜଗତକୁ ମୁଗ୍ଧ କରି ରଖିଛନ୍ତି । ଆପଣ ପ୍ରସନ୍ନା ହେଲେ ଜୀବ ମୁକ୍ତି ଲାଭ କରିଥାଏ । ସକଳ ବିଦ୍ୟା ଆପଣଙ୍କର ମୂର୍ତ୍ତିସ୍ୱରୂପା । ସକଳ ନାରୀମାନଙ୍କ ମଧ୍ୟରେ ଆପଣ କଳାଶକ୍ତି ରୂପେ ବିରାଜିତା । ଆପଣ ହିଁ ସର୍ବସ୍ୱରୂପା, ପ୍ରକାଶରୂପା ଓ ମୋକ୍ଷଦାତ୍ରୀ । ଆପଣ ସ୍ତୁତିର ଉର୍ଦ୍ଧ୍ୱରେ ଅବସ୍ଥିତା । ଆପଣ ଏପରି ଭାବରେ ଉତ୍କୃଷ୍ଟ ଶକ୍ତି ସ୍ୱରୂପା ଯେ ଆପଣଙ୍କୁ ସ୍ତୁତି କରିବା ପାଇଁ ଭାଷାର ସାମର୍ଥ୍ୟ ନାହିଁ ।

ଆପଣ ହିଁ ବୁଦ୍ଧି ରୂପେ ସକଳ ହୃଦୟରେ ଅବସ୍ଥାନ କରିଛନ୍ତି । କଳାକାଷ୍ଠାଦି ରୂପ ଧାରଣ କରି ଆପଣ କାଳସ୍ୱରୂପରେ ସର୍ବଦା ସକଳ ପଦାର୍ଥର ପରିଣାମ ଘଟାଇଥାନ୍ତି । ହେ ନାରାୟଣି ! ଆପଣଙ୍କୁ ଆମ୍ଭେମାନେ ନମସ୍କାର କରୁଅଛୁ ।'

ଦେବତାମାନେ ଦେବୀଙ୍କୁ ପୁନର୍ବାର ସ୍ତୁତି କରି କହିଛନ୍ତି -

'ଆପଣ ସକଳ ମଙ୍ଗଳ ଜନକର ମଙ୍ଗଳ, ସର୍ବ ଶୁଭଫଳ ଦାୟିନୀ, ସର୍ବକାର୍ଯ୍ୟାର୍ଥ ସାଧିନୀ । ଆପଣ ତ୍ର୍ୟମ୍ବକା । ଜନନୀ, ଦୁହିତା ଓ ଜାୟା ଏହି ତିନି ପ୍ରକାରେ ଆପଣ ଅମ୍ବା ସ୍ୱରୂପା । ଆପଣ ଗୌରୀ, ଚିରବଧୂ, ଆପଣଙ୍କୁ ନମସ୍କାର । ଆପଣ ହିଁ ସୃଷ୍ଟି ସ୍ଥିତି ଓ ବିନାଶର ସନାତନୀ ଶକ୍ତି ସ୍ୱରୂପା । ଆପଣ ଶରଣାଗତ ଦୀନ କାତରଗଣଙ୍କର ପରିତ୍ରାଣ କାରିଣୀ ମହାଶକ୍ତି । ଆପଣ ହିଁ ବାସ୍ତବରେ ସକଳ ଜଗତର ଜୀବଗଣଙ୍କର ସର୍ବବ୍ୟାଧି ବିନାଶକାରିଣୀ ମହାଶକ୍ତି ରୂପେ ମହିମାନ୍ୱିତା ।





ଆପଣ ବ୍ରହ୍ମା ଓ ଆପଣ ହଂସଯୁକ୍ତ ବିମାନରେ ଅବସ୍ଥାନ କରନ୍ତି । କୁଶାଗ୍ରଦ୍ୱାରା କମଣ୍ଡଳୁର ଜଳ ସିଞ୍ଚନ କରି ଆପଣ ଶାନ୍ତିବାରି ବର୍ଷଣ କରନ୍ତି । ଆପଣ ମଧ୍ୟ ମାହେଶ୍ୱରୀ । ତ୍ରିଶୂଳ, ଅର୍ଦ୍ଧଚନ୍ଦ୍ର ଓ ସର୍ପଭୂଷଣ ଧାରଣ କରି ଆପଣ ମହାବୃଷଭ ଉପରେ ଆରୋହଣ କରିଛନ୍ତି । ଆପଣ ମଧ୍ୟ କୌମାରୀ । ମହାଶକ୍ତି ଧାରଣ କରି ମୟୂର କୁକ୍କୁଟ ଉପରେ ଆରୋହଣ କରିଛନ୍ତି । ଆପଣ ଶଙ୍ଖ-ଚକ୍ର-ଗଦା-ପଦ୍ମ ଧାରଣୀ ବୈଷ୍ଣବୀ ଶକ୍ତି । ଆପଣ ବାରାହୀ ଶକ୍ତି ରୂପେ ଭୟଙ୍କର ରୂପ ଧାରଣ କରି ମହାପ୍ରଳୟରେ ନିମଗ୍ନା ପୃଥିବୀକୁ ଦନ୍ତଦ୍ୱାରା ଉଦ୍ଧାର କରିଥିଲେ । ଆପଣ ହିଁ ନାରସିଂହୀ ଶକ୍ତି । ନରସିଂହ ରୂପେ ହରିଣ୍ୟକଶିପୁକୁ ବଧ କରି ତ୍ରିଲୋକକୁ ରକ୍ଷା କରିଥିଲେ ।

ଆପଣ କିରୀଟି ଓ ମହାବଜ୍ରଧାରିଣୀ ଐନ୍ଦ୍ରୀଶକ୍ତି । ଆପଣ ସହସ୍ରଲୋଚନ ଓ ବୃତ୍ରାସୁରର ବଧକାରିଣୀ । ଆପଣ ଶିବଦୂତୀ । ଦୈତ୍ୟମାନଙ୍କର ମହାସୈନ୍ୟକୁ ଆପଣ ହିଁ ବିନାଶ କରିଥିଲେ । ଆପଣଙ୍କର ରୂପ ଭୟଙ୍କର, ଶବ୍ଦ ଭୀଷଣ । ଏଣୁ ଆପଣଙ୍କୁ ଚାମୁଣ୍ଡା କୁହାଯାଏ । ବିକଟ ଦନ୍ତ ପାଇଁ ଆପଣଙ୍କର ମୁଖମଣ୍ଡଳ ଭୟଙ୍କର । ଆପଣ ମୁଣ୍ଡମାଳା ଶୋଭିତା । ଆପଣ ହିଁ ଚଣ୍ଡମୁଣ୍ଡ ପରି ମହାଦୈତ୍ୟଙ୍କୁ ବିନାଶ କରିଥିଲେ ।

ଆପଣ ହିଁ ଲକ୍ଷ୍ମୀ, ଲଜ୍ଜା, ମହାବିଦ୍ୟା, ଶ୍ରଦ୍ଧା, ପୁଷ୍ଟି ଓ ସ୍ୱଧା ସ୍ୱରୂପିଣୀ । ଆପଣ ହିଁ ମହାରାତ୍ରି, ମହାମାୟା, ମେଧା, ସରସ୍ୱତୀ, ମହାଶକ୍ତି, ସତ୍ୟସ୍ୱରୂପା, ସର୍ବେଶ୍ୱରୀ ଓ ସର୍ବସମଷ୍ଟିସ୍ୱରୂପା । ହେ ନାରାୟଣି ! ଆପଣଙ୍କୁ ପ୍ରଣାମ କରୁଛୁ, ଆପଣ ପ୍ରସନ୍ନା ହୁଅନ୍ତୁ ।'

ଦେବତାଗଣ ପୁନର୍ବାର ମହାଶକ୍ତିଙ୍କୁ ସ୍ତୁତି କରି କହିଛନ୍ତି -

'ଆପଣଙ୍କର ତ୍ରିନୟନଯୁକ୍ତ ବଦନ ଆମ୍ଭମାନଙ୍କୁ ରକ୍ଷା କରୁ ।' ଆପଣଙ୍କର ତ୍ରିଶୂଳ ଆମ୍ଭମାନଙ୍କର ମଙ୍ଗଳ କରୁ । ଆପଣ ଘଣ୍ଟା ଶବ୍ଦ ଦ୍ୱାରା ଜଗତ୍ ପୂର୍ଣ୍ଣ କରି ଅସୁରଗଣଙ୍କ ତେଜ ନଷ୍ଟ କରିଥିଲେ । ସେହି ଶବ୍ଦ ଦ୍ୱାରା, ମାତା ଯେପରି ପୁତ୍ରକୁ ରକ୍ଷା କରେ, ସେହିପରି ଆମ୍ଭମାନଙ୍କୁ ପାପତାପରୁ ରକ୍ଷା କରନ୍ତୁ । ଅସୁରମାନଙ୍କର ରକ୍ତଲିପ୍ସୁ ଆପଣଙ୍କର ଖଡ୍‌ଗ ଆମ୍ଭମାନଙ୍କର କଲ୍ୟାଣ ପାଇଁ ଉଦ୍ଦିଷ୍ଟ ହେଉ ।

ଆପଣ ସନ୍ତୁଷ୍ଟା ହେଲେ, ସକଳ ଦୁଃଖ ଦୂର ହୁଏ । ଆପଣ ରୁଷ୍ଟା ହେଲେ ସକଳ ଅଭୀଷ୍ଟ ନଷ୍ଟ ହୋଇଯାଏ । ଆପଣଙ୍କୁ ଯେଉଁମାନେ ଆଶ୍ରୟ କରନ୍ତି, ସେମାନେ ସମସ୍ତଙ୍କର ଆଶ୍ରୟସ୍ଥଳ ହୋଇଥାନ୍ତି । ଆପଣ ବହୁ ମୂର୍ତ୍ତି ଧାରଣ କରି ଧର୍ମ ବିଦ୍ୱେଷୀ ଅସୁରମାନଙ୍କୁ ଯେପରି ବଧ କଲେ, ତାହା ଆପଣଙ୍କ ବ୍ୟତୀତ ଆଉ କିଏ କରିବାକୁ ସମର୍ଥ ? ଏକ ପକ୍ଷରେ ଆପଣ ଉଜ୍ଜ୍ୱଳ ଆଲୋକ, ବିବେକ ଦ୍ୱୀପ ଓ ଅନ୍ୟପକ୍ଷେ ଆପଣ ମହାନ୍ଧକାର, ସଂସାର ମମତାଗର୍ତ୍ତ ସ୍ୱରୂପ । ଆପଣ ଜୀବଜଗତକୁ ଏହି ଦୁଇ ଦିଗରେ ପରିଚାଳିତ କରିଥାନ୍ତି ।

ଆପଣ ହିଁ ବିଶ୍ୱେଶ୍ୱରୀ, ବିଶ୍ୱକୁ ରକ୍ଷା କରିଛନ୍ତି । ଆପଣ ବିଶ୍ୱରୂପା ଓ ଏହି ବିଶ୍ୱକୁ ଧାରଣ କରିଛନ୍ତି । ଆପଣ ବିଶ୍ୱେଶ୍ୱରଙ୍କର ମଧ୍ୟ ବନ୍ଦନୀୟା । ଯେଉଁମାନେ ଆପଣଙ୍କ ନିକଟରେ ଭକ୍ତି ପ୍ରଣତ, ସେମାନେ ମଧ୍ୟ ବିଶ୍ୱର ଆଶ୍ରୟ ସ୍ୱରୂପ ହୋଇଥାନ୍ତି । ହେ ବିଶ୍ୱର ସକଳ କ୍ଳେଶ ହାରିଣୀ ଦେବି ! ପ୍ରଣତମାନଙ୍କ ପ୍ରତି ଆପଣ ପ୍ରସନ୍ନା ହୁଅନ୍ତୁ । ତ୍ରିଭୁବନବାସୀଗଣଙ୍କ ପ୍ରତି ବରଦାତ୍ରୀ ହୁଅନ୍ତୁ ।

ଜଗତ୍ ଜନନୀଙ୍କ ସମ୍ମୁଖରେ ଦେବଗଣ ଏହିପରି ପ୍ରାର୍ଥନା କରିବା ପରେ, ଦେବୀ କହିଲେ - 'ମୁଁ ବରଦାତ୍ରୀ । ଜଗତର ହିତ ପାଇଁ ଯେଉଁ ବର ଇଚ୍ଛା କର, ତାହା ମୁଁ ପ୍ରଦାନ କରିବି ।' ଏହା ଶୁଣି ଦେବତାଗଣ କହିଲେ- 'ହେ ଦେବି ! ଆମ୍ଭମାନଙ୍କର ସକଳ ଶତ୍ରୁ ବିନାଶ କରନ୍ତୁ । ଯାହା ଦ୍ୱାରା ବିଶ୍ୱର କଲ୍ୟାଣ ପଥରେ ସକଳ ବାଧା ଦୂରୀଭୂତ ହୋଇପାରିବ । ମାନବ କଲ୍ୟାଣରେ ଯେଉଁମାନେ ବାଧା ଦେବେ, ସେମାନଙ୍କର ଦୁର୍ବୁଦ୍ଧି ଦୂର ହେଉ ।'

ବାସ୍ତବରେ ଦେବଗଣ ଦିବ୍ୟଜନନୀଙ୍କୁ ଏଥିପାଇଁ 'ସର୍ବସ୍ୟାର୍ତ୍ତିହରେ' ବୋଲି ସମ୍ବୋଧନ କରିଥିଲେ । ସମସ୍ତଙ୍କର ସକଳ ପ୍ରକାର ଆର୍ତ୍ତି ହରଣ କରିବାକୁ ଜଗତ୍‌ଜନନୀ ସମର୍ଥା । ଯିଏ ଭୋଗୀ, ତାର ଅନ୍ତରରେ ସର୍ବଦା ଭୋଗ କାମନା ରହିଥାଏ । ଭୋଗ୍ୟବସ୍ତୁ ପାଇବା ପାଇଁ ତା'ର ଆର୍ତ୍ତି ରହିଛି । ଦିବ୍ୟଜନନୀ ଏହି ଆର୍ତ୍ତି ହରଣ କରନ୍ତି । ଯିଏ ଯୋଗୀ, ସେ ମୁକ୍ତି କାମନା କରିଥାଏ । ମୁକ୍ତି ନ ମିଳିଲେ ତା'ର ଅନ୍ତରରେ ଆର୍ତ୍ତି ଜାଗି ଉଠେ । ଦିବ୍ୟଜନନୀ ସେହି ଆର୍ତ୍ତିକୁ ମଧ୍ୟ ଦୂର କରନ୍ତି । ଯିଏ ପ୍ରକୃତରେ ଭୋଗ ଓ ମୋକ୍ଷ କିଛି ଚାହେଁ ନାହିଁ, ସେ ଶୁଦ୍ଧ ଭକ୍ତିଯୋଗୀ ରୂପେ ପରିଚିତ । ଦିବ୍ୟଜନନୀ ସେହିପରି ଭକ୍ତଙ୍କୁ ମଧ୍ୟ କେବଳ ଶୁଦ୍ଧ ଭକ୍ତି ପ୍ରଦାନ କରନ୍ତି । ଯଥାର୍ଥରେ ଶ୍ରୀଚଣ୍ଡୀରେ କୁହାଯାଇଛି -

'ଶରଣାଗତ ଦୀନାର୍ତ୍ତ ପରିତ୍ରାଣ ପରାୟଣେ
ସର୍ବସ୍ୟାର୍ତ୍ତିହରେ ଦେବୀ ନାରାୟଣୀ ନମୋସ୍ତୁତେ ।'

ଓଁ ଶାନ୍ତିଃ

ଡି.-୨୪, କଳ୍ପନା ଫ୍ଲାଟ
ଭୁବନେଶ୍ୱର-୧୪

# ଶକ୍ତି ପାର୍ବଣ - ନବରାତ୍ରୀ

ଶ୍ରୀମତୀ କୃଷ୍ଣପ୍ରିୟା ଦାସ

ବର୍ଷାଋତୁର ଘନଘଟା ଥମିବା ପରେ ଶରତର ସୁନିର୍ମଳ ଗଗନ ଜନ ଜୀବନକୁ ଚଳଚଞ୍ଚଳ କରାଇ ଦିଏ । ଅନେକ ଆଶା, ଅଭିଳାଷ ଓ ଅନ୍ୱେଷା ନେଇ ସ୍ୱପ୍ନ ବିଭୋର ପାଳଟିଯାଏ ସଂସାର ଅପେକ୍ଷାର ପାର୍ବଣ ... ଆଶ୍ୱିନ ଶୁକ୍ଳପକ୍ଷର ନବଦିନ ପୂଜା 'ନବରାତ୍ରୀ' ।

ବର୍ଷକୁ ଚାରିଥର ଅର୍ଥାତ୍ ତିନି ମାସରେ ଥରେ ନବରାତ୍ରୀ ପଡୁଥିଲେ ହେଁ, ଚୈତ୍ର ଶୁକ୍ଳପକ୍ଷର ନବରାତ୍ରୀଠାରୁ ଆରମ୍ଭ ହୁଏ 'ସମ୍ବତ' । ନୂଆବର୍ଷ ବା ସମ୍ବତ୍ସର । ପୁନଶ୍ଚ ଆଶ୍ୱିନ ମାସ ଶୁକ୍ଳପକ୍ଷର ନବଦିନ, ଯେଉଁ ନବରାତ୍ରୀ ସେଥିରେ ମା' ଜଗତ କଲ୍ୟାଣୀ ନବଦୁର୍ଗାଙ୍କ ଆରାଧନାର ଦିବସ । ଏହି ଦୁଇ ନବରାତ୍ରୀ ସଂପୂର୍ଣ୍ଣ ଜାଗ୍ରତ ନବରାତ୍ରୀ । ଏଥିରେ ସାଧକ ତା'ର ଇଚ୍ଛାକୃତ କାର୍ଯ୍ୟ ହାସଲ କରିପାରେ । ଅପର ଦୁଇ ନବରାତ୍ରୀ ଶୁପ୍ତ ... ତଥାପି ସେଥିରେ ମଧ ଅନେକ ତାତ୍ପର୍ଯ୍ୟ ରହିଛି ।

ନିଖିଳ ବ୍ରହ୍ମାଣ୍ଡରେ ଜଡ଼ଠାରୁ ଚେତନ ପର୍ଯ୍ୟନ୍ତ ମା' ଶକ୍ତିମୟୀଙ୍କ ଅଭିନ୍ନ ସ୍ୱରୂପ ଏବଂ ଅଂଶବିଶେଷ । ଶକ୍ତି ରହିତ, ଧୂଳି କଣାଟିଏ ବି ଉଡ଼ିପାରିବ ନାହିଁ । ତେଣୁ ଜୀବ ମାତ୍ରକେ ଏହି ଦୁର୍ଲଭ ନବରାତ୍ରୀ ପୂଜା ମାଧମରେ ଆତ୍ମ ସମର୍ପଣ କରାଇ ଶକ୍ତି, ଶାକ୍ତ ଏକାକାର ହୋଇଯିବାକୁ ଇଚ୍ଛା କରିଥାଆନ୍ତି । ଏହା ହିଁ ସର୍ବଶ୍ରେଷ୍ଠ ସାଧନାର ଅଗ୍ରଗତି ।

ଶାସ୍ତ୍ର ପୁରାଣରେ ଆଶୁରୀ ଶକ୍ତି ଉପରେ ଦେବୀଶକ୍ତିଙ୍କ ବିଜୟ ଘୋଷଣା କରାଯାଇଛି । ସେହିପରି ମନୁଷ୍ୟ ଜୀବନର ଅନ୍ତଦ୍ୱନ୍ଦ, ମମତ୍ୱ ବା କୌଟିଲ୍ୟର ସୁଯୋଗ ପାଇ ରାକ୍ଷସ ପ୍ରବୃତ୍ତିଗୁଡ଼ିକ ଜାଗ୍ରତ ହୋଇ ଉଠନ୍ତି ଏବଂ ମନୁଷ୍ୟର ସର୍ବନାଶ କରିବା ପର୍ଯ୍ୟନ୍ତ ଅପେକ୍ଷା କରି ରହନ୍ତି । ଏମାନଙ୍କୁ ସମୂଳେ ବିନାଶ କରି ବିଜୟ ପ୍ରାପ୍ତ କରିବାକୁ ହେଲେ ଏକମାତ୍ର ଶକ୍ତି ପାର୍ବଣ ବା ନବରାତ୍ରୀ ପୂଜାର ଆଶ୍ରୟ ନେବା ଦରକାର ।

ସମସ୍ତ ସଂହାର ଶକ୍ତିମାନଙ୍କ ମୂଳଶକ୍ତି ହେଉଛନ୍ତି ଭଗବତୀ ଦୁର୍ଗା । ଯେପରି ଅଗ୍ନି ଏବଂ ତା'ର ଦାହିକା ଶକ୍ତି । ବାହ୍ୟ ଦୃଷ୍ଟିରେ



ପୃଥକ୍ ଲାଗୁଥିଲେ ମଧ ଏହା ଏକ ଓ ଅଭିନ୍ନ । ଜୀବନ ଜଞ୍ଜାଳ ଭିତରୁ ସନ୍ଦେହ ରୂପକ ଜାଲକୁ ଛିନ୍ନ କରି ଦ୍ୱନ୍ଦ ରୂପକ ବିଷାକ୍ତ ପବନରୁ ମୁକ୍ତ ହେବାକୁ ହେଲେ, ନବରାତ୍ରୀ ପୂଜା ପୁନଃ ଜାଗ୍ରତ ହେବାକୁ ଅବସର ଯୋଗାଇଥାଏ ।

ଯେ ହେଉଛି ରଚନାକ୍ରମ । ଏଥର ସଂହାର କ୍ରମ ଉପରେ କିଛିଟା ଆଲୋକପାତ କରାଯାଉ । ବ୍ୟକ୍ତି ଜୀବନରେ ଅହରହ ସଂହାର ଲୀଳା ପରିଲକ୍ଷିତ ହେଉଥାଏ । ଯେଉଁ ପ୍ରକ୍ରିୟା ଦେବୀ ଦୁର୍ଗାଙ୍କ ନଅ ଗୋଟି ସ୍ୱରୂପରେ ବିକାଶ ଲାଭକରି, ଜୀବ ମଧରେ ଗୋଟାଏ ଗୋଟାଏ କ୍ରମ ନିର୍ମାଣ ଦ୍ୱାରା ପୂର୍ଣ୍ଣ ଗଠନର ସୁଯୋଗ କରାଇଥାଏ ଏବଂ ଶକ୍ତି ଯୋଗାଇବାରେ ସାହାଯ୍ୟ କରେ ।

ଯଥା- ଆମ ନିକଟରେ ଶସ୍ତ୍ର ଓ ଶାସ୍ତ୍ର ଦୁଇଟା ଗଚ୍ଛିତ ରହିଛି । ଆମେ ତାକୁ କିପରି ସଦୁପଯୋଗ କରିପାରିବା । ଶାସ୍ତ୍ର ହେଉଛି ଆମ ବିଚାର, ସଂସ୍କୃତି, ସଂସ୍କାର ଓ ଜ୍ଞାନ । ମନରୁ ବିନାଶକାରୀ ଭାବନା ସମୂହର ଅନ୍ତ ନ ହେବାଯାଏ ବିଚାର ସ୍ଥିର ହେବ ନାହିଁ । ବିଚାର ସ୍ଥିର





ନହେଲେ, ଆଦ୍ୟାଶକ୍ତିଙ୍କ ସତ୍ତା ଲାଭ କରିବା ସମ୍ଭବ ନୁହେଁ । ଶକ୍ତି ପ୍ରଭାବ ବିନା ଦିବ୍ୟଭାବ, ଶୁଭ ଉଦ୍ଦେଶ୍ୟ ପାଇବା କେଉଁଠୁ ? ତେଣୁ ମନରୁ ବିନାଶକାରୀ ଭାବନାଗୁଡ଼ିକ ନଷ୍ଟ କରିଦେବାକୁ ସ୍ଥିର କରିପାରିଲେ, ସ୍ୱୟଂ ଆଦ୍ୟାଶକ୍ତି ଆମ ଅନ୍ତର ମଧ୍ୟରେ ପ୍ରବେଶ କରି ଉଦ୍ଦେଶ୍ୟ ପୂରଣ କରାଇଦେବେ । ଯାହାଫଳରେ ଦିବ୍ୟ ଚେତନା ଗ୍ରହଣ କରିବା ପାଇଁ ସମର୍ଥ ହୋଇପାରିବା । କାର୍ଯ୍ୟ କାରଣ ମଧ୍ୟରୁ ଗୋଟିଏ ସଫଳ ହୋଇଗଲେ ଅନ୍ୟଟି ମଧ୍ୟ ଆପେ ଆପେ ହୋଇପାରିବ ।

ନବରାତ୍ରୀ ଏକ ଆତ୍ମ ବିଶ୍ଳେଷଣର ସମୟ । ଯେଉଁଥିରେ ସନ୍ଦେହ ରୂପକ ପକ୍ଷୀକୁ ବିତାଡ଼ିତ କରାଇ, ନିଜ ନିଜର ଅଭ୍ୟନ୍ତରରେ ଶୁଦ୍ଧ ରାଜ୍ୟ ସ୍ଥାପନ କରିପାରିବା ।

ତ୍ରିଶକ୍ତି ପର୍ବ - ନବରାତ୍ରୀ -

ନବରାତ୍ରୀ ପର୍ବକୁ ତିନି ଭାଗରେ ବିଭକ୍ତ କରାଯାଇପାରେ, ଯେହେତୁ ଏହା ତିନି ଶକ୍ତିଙ୍କ ସ୍ୱରୂପ ଓ ତିନି ଦେବୀଙ୍କ ସମର୍ପିତ ରାତ୍ରୀ । ନବରାତ୍ରୀ ଅର୍ଥ ନବିନରାତ୍ରୀ ଏବଂ ନବମ ରାତ୍ରୀ । ଏଥିରେ ପ୍ରଥମ ଶକ୍ତି-ଦୁର୍ଗା । ଯିଏକି ଆତ୍ମଶକ୍ତି, କୁଣ୍ଡଳିନୀ ସ୍ୱରୂପ । ଦ୍ୱିତୀୟ ଶକ୍ତି - ଲକ୍ଷ୍ମୀ । ଧନର ଅଧିଷ୍ଠାତ୍ରୀ ଦେବୀ ଏବଂ ତୃତୀୟ ଶକ୍ତି - ସରସ୍ୱତୀ । ଜ୍ଞାନର ମୂର୍ତ୍ତିମନ୍ତ ପ୍ରତୀକା । ଏହି ତିନି ଶକ୍ତି ସଂଯୁକ୍ତ ଶକ୍ତି ଭାବରେ ପରମାତ୍ମାଙ୍କ 'ସ୍ତ୍ରୀ' ଶକ୍ତି ରୂପରେ ବିଦ୍ୟମାନ ହୋଇ ସମଗ୍ର ବିଶ୍ୱ ପରିଚାଳନାରେ ଭାଗ ନେଇ ଥାଆନ୍ତି ।

ସମର୍ପିତ ପୂଜା -

ପ୍ରଥମ ତିନି ଦିନ - କ୍ରିୟା ଶକ୍ତି ଦୁର୍ଗାଙ୍କ ସମର୍ପିତ ପୂଜା । ସେ ତ୍ରି-ବିଧ ରୂପଧାରିଣୀ, ଯଥା - କୌମାରୀ, ପାର୍ବତୀ ଏବଂ କାଳୀ ! ଏହି ତିନି ସ୍ୱରୂପ ନାରୀ ଶକ୍ତିର ତିନି ଭାବରେ ପ୍ରକଟିତ । ପ୍ରଥମ ଭାବ - ବାଳିକା । ଦ୍ୱିତୀୟ ଭାବ - ଅମ୍ବା (ମା) । ତୃତୀୟ ଭାବ - ଜାୟା (ସ୍ତ୍ରୀ), ଏହିପରି ତିନି ଭାବ ।

ଦ୍ୱିତୀୟ ତିନି ଦିନ - ଧନ ଦେବୀ ଲକ୍ଷ୍ମୀଙ୍କ ସମର୍ପିତ ପୂଜା । ଏହି ଶକ୍ତିଙ୍କ ଆରାଧନା ପଛରେ କେବଳ ଧନ ପ୍ରାପ୍ତିର କାମନା ନୁହେଁ, ନିଜେ ନିଜକୁ ଅନୁଭବ କରିବାର ଦିବ୍ୟ ମନୋଭାବ ସ୍ଥାପିତ ହେଲେ, ଜୀବନ ଆନନ୍ଦରୁ ଆନନ୍ଦ ଆଡ଼କୁ ଗତି କରିପାରିବ । ଲକ୍ଷ୍ମୀ ଧନର ଅଧିଷ୍ଠାତ୍ରୀ ହେବା ହେତୁ, ସାଂସାରିକ ସ୍ଥିତି, ଅର୍ଥାତ୍ - ପରିବାର, ମିତ୍ର, ଧନ ଇତ୍ୟାଦିର ସୁରକ୍ଷା ମଧ୍ୟ ଦେଇ ଥାଆନ୍ତି । ନବରାତ୍ରୀ ପଞ୍ଚମ ଦିବସକୁ, ଲଳିତା ପଞ୍ଚମୀ ନାମରେ ନାମିତ କରାଯାଇଛି । ସେହିଦିନ ଗୃହ, ପରିବାର ନିମନ୍ତେ ଶୁଭଦାୟକ । ଗୃହରେ ଥିବା ପୋଥି, ଲେଖନୀ ଇତ୍ୟାଦି ଉପକରଣଗୁଡ଼ିକୁ ପୂଜା ସ୍ଥାନରେ ରଖି ପୂଜା କରାଯାଏ ଓ ଧୂପ, ଦୀପ, କର୍ପୂର, ଆରତୀ, ନୈବେଦ୍ୟ ଚଢ଼ାଇ ସରସ୍ୱତୀଙ୍କୁ ଆହ୍ୱାନ କରାଯାଏ ।

ନବରାତ୍ରୀର ଅନ୍ତିମ ତିନି ଦିନ - ଜ୍ଞାନ ଦେବୀ ସରସ୍ୱତୀଙ୍କ ସମର୍ପିତ ପୂଜା । ଅର୍ଥାତ୍, ଜ୍ଞାନର ଉପାସନା । ଯେଉଁଥିରେ ସଂସାର ବନ୍ଧନରୁ ଆତ୍ମା ମୁକ୍ତିଲାଭ କରିପାରିବ ।

ଏହା ସତ୍ୟ ଯେ, ମନୁଷ୍ୟ ବିଭିନ୍ନ ପ୍ରକାର କାମନା ଦ୍ୱାରା ବଶବର୍ତ୍ତୀ ହୋଇ ବିଶେଷ ଐଶ୍ୱର୍ଯ୍ୟ ପ୍ରାପ୍ତିର ଆଶା ପ୍ରୟାସ କରୁଥାଏ । ନିଜେ ନିଜକୁ ଅପୂର୍ଣ୍ଣ ମନେକରି ଅସନ୍ତୁଷ୍ଟ ରହେ । ଏପରି ସ୍ଥଳେ ବେଦାନ୍ତ ଉପରେ ଦୃଷ୍ଟି ଦେଲେ ଜଣାଯାଏ, ମନୁଷ୍ୟ ଜୀବନର ଲକ୍ଷ୍ୟ ହେଉଛି ଆତ୍ମଜ୍ଞାନ ଜାଗ୍ରତ କରାଇ ଆତ୍ମା ଶାନ୍ତି ପ୍ରାପ୍ତ କରିବା । ଦେବୀ ସରସ୍ୱତୀଙ୍କ ଉପାସନା ଏହି ମର୍ମରେ ହେବା ଉଚିତ । ନ ହେଲେ ଆଧାତ୍ମିକ ମୁକ୍ତିରୁ ବଞ୍ଚିତ ହେବାକୁ ହେବ । ମୁକ୍ତି ମାର୍ଗରେ ମଧ୍ୟ ଅନେକ ବାଧା ଦେଖା ଦେଇପାରେ । ଯଥା- କାମନା, ବାସନା ଓ ତୃଷ୍ଣା । ଆତ୍ମାଜ୍ଞାନ ଜାଗ୍ରତ କରିଥିବା ମନୁଷ୍ୟ ଏ ସମସ୍ତ ବାଧାକୁ ଅତିକ୍ରମ କରି, ଏକ ସୁନ୍ଦର ରାଜ୍ୟ ଦିବ୍ୟ ଧାମରେ ପହଞ୍ଚିପାରେ । ଦେବୀ ମହାତ୍ମ୍ୟରେ ଯେଉଁସବୁ ଉପଦେଶ ଦିଆଯାଇଛି, ତାହା ପ୍ରତ୍ୟେକ ମନୁଷ୍ୟ ଯଦି ପାଳନ କରିପାରନ୍ତେ ଅନେକାଂଶରେ ଶୁଭପ୍ରଦ ହୋଇପାରନ୍ତା ।

ବର୍ତ୍ତମାନ ଜୀବନ ଉପରେ ଅନ୍ୟର ପ୍ରଭାବ ଦେଖାଯାଉ । ପ୍ରାରବ୍ଧ କର୍ମାନୁସାରେ ଫଳ । ଯାହାକି ବାଧା ସ୍ୱରୂପ ସାମନା କରିବାକୁ ହୋଇଥାଏ । ଏଗୁଡ଼ିକ ମାୟା, କାମନା ଓ କ୍ରୋଧ, ଏହି ତିନି ପ୍ରତିବନ୍ଧକ ପରସ୍ପର ସଂଲଗ୍ନ ହୋଇ ରହିଥାନ୍ତି । ମାୟାର ବନ୍ଧନ-ବାୟୁ ସ୍ୱରୂପ ମଧୁର । ସେହି ମଧୁର ଅୟସ ଭିତରୁ ଫୁଟି ଉଠେ କାମନା । କାମନା ତ ଅନନ୍ତ ସାଗର ସଦୃଶ୍ୟ । ଖୋଜିଲେ ଅନ୍ତ ମିଳେ ନାହିଁ । ସେହି କାମନା ଯଦି ଅପୂର୍ଣ୍ଣ ରହିଯାଏ, ମାଡ଼ି ଆସେ କ୍ରୋଧାଗ୍ନି । ଏହି ତିନି ବିପଦରୁ ପାର ହେବାକୁ ହେଲେ, ବିକ୍ଷୋପ, ମନ, ଶକ୍ତିର ପରିବର୍ତ୍ତନ ହିଁ ବିଜୟର ପୂର୍ଣ୍ଣତ୍ୱ ଦେଇପାରିବ, ଅନ୍ୟଥା ନୁହେଁ ।

ସପ୍ତସତୀ ଚଣ୍ଡିରେ ରାଜା ସୁରଥଙ୍କ କଥା ରହିଛି । ଯିଏକି ଶତ୍ରୁ ଦ୍ୱାରା ପରାସ୍ତ ହୋଇ ମେଧା ଋଷିଙ୍କ ଶରଣାଗତ ହୋଇଥିଲେ । ତାଙ୍କ ରାଜ୍ୟ, ସଂପଦ ହରାଇଥିବା କଥା ଉପରେ ବିଚାରାଲୋଚନା ଶେଷ ନ ହେଉଣୁ, ଆଉ ଜଣେ ବଣିକ, ବ୍ୟାପାର ମାଧ୍ୟମରେ ସବୁ ସଂପଦ ହରାଇ ନିଃସ୍ୱ ଭାବରେ ଆସି ମେଧା ଋଷିଙ୍କ ଆଶ୍ରମରେ ପହଞ୍ଚି ଗଲେ । ଋଷି ଉଭୟଙ୍କ ଦୁରବସ୍ଥାକୁ ଲକ୍ଷ୍ୟ କରି, ମାୟା ଉପରେ କିଛିଟା ବ୍ୟାଖ୍ୟା କରି, ବୁଝାଇ କହିଥିଲେ ଯେ, ଭଗବାନ କିପରି ସ୍ୱୟଂ ଶକ୍ତି ବଳରେ, ସଂସାରର ମାୟା ରଚନା କରାଇଥାନ୍ତି ଏବଂ ସେ ସମସ୍ତ ମାୟାକୁ ପରିଚାଳନା କରି ଶେଷରେ କିପରି କବଳିତ କରି ପକାନ୍ତି । ଯେଉଁଥିରେ ସଂସାର ପୁନଃ ଶୁଦ୍ଧ, ସଂସ୍କାର ହୋଇ ଗଢ଼ି ଉଠେ ।





ଏହିପରି ମନୁଷ୍ୟର ସମସ୍ତ କାର୍ଯ୍ୟରେ କିଛି ନା କିଛି ଆଧ୍ୟାତ୍ମିକ ଅର୍ଥ ରହିଛି । ନବରାତ୍ରୀର ତାତ୍ପର୍ଯ୍ୟ କେବଳ, ନାଚ, ଗୀତ, ସାଜ-ସଜ୍ଜା, ଚାନ୍ଦା, ମସ୍ତି ପାଇଁ ନୁହେଁ, ବରଂ ସେହି ସମୟଗୁଡ଼ିକୁ ସାଧନରେ ବିତାଇ ପାରିଲେ ବେଶ୍ ଲାଭ ହୁଅନ୍ତା ।

ସୃଷ୍ଟିର ପ୍ରାରମ୍ଭରେ ମହାବିଷ୍ଣୁଙ୍କ କର୍ଣ୍ଣ ମଳିରୁ, ମଧୁ ଆଉ କୈଠଭ ନାମରେ ଦୁଇ ଦୈତ୍ୟଙ୍କ ଆବିର୍ଭାବ ଘଟିଥିଲା । ସେମାନେ ଏତେ ବଳଶାଳୀ ଥିଲେ ଯେ ତାଙ୍କ ଆକ୍ରମଣରେ ବ୍ରହ୍ମା ମଧ ବିଚଳିତ ହୋଇ ଆଦ୍ୟାଶକ୍ତିଙ୍କୁ ଜାଗ୍ରତ କରାଇବା ନିମନ୍ତେ ବାଧ ହେଲେ । ଆଦ୍ୟାଶକ୍ତି ଶ୍ରୀବିଷ୍ଣୁଙ୍କ ଯୋଗ ନିଦ୍ରା ଭାଙ୍ଗି, ଦୁଇ ଶକ୍ତି (ପୁରୁଷ ଓ ସ୍ତ୍ରୀ)ଙ୍କ ଉଦ୍‌ଯୋଗକ୍ରମେ ମାୟାବି, ଦ୍ୱୟ, କାମ ତଥା କ୍ରୋଧର ଅବସାନ ଘଟିଥିଲା । ଏଥିପାଇଁ 'ପ୍ରଥମ ତିନି ଦିନର ପୂଜା', ମଣିଷ ଜୀବନର ବିନାଶକାରୀ ମାୟା, କ୍ରୋଧ ଯେ କି, ନିମ୍ନ ମାନସିକରୁ ଜନ୍ମ ନେଇଥାଏ, ତାକୁ ସମୂଳେ ବିନାଶ କରିବା ପାଇଁ ଦୁର୍ଗା ଏବଂ କାଳୀଙ୍କ ସାଧନା ସୂଚାରୁ ରୂପେ ପୂର୍ଣ୍ଣାଙ୍ଗ କରିବାକୁ ପଡ଼େ ।

ଦ୍ୱିତୀୟ - ତିନି ଦିନ ମହାଲକ୍ଷ୍ମୀ ଅର୍ଥାତ୍ ଅମ୍ବାଙ୍କ ଆରାଧନା । ଏହି ମାତୃଶକ୍ତି ଅମ୍ବାଙ୍କ ହାତରେ ମହିଷାସୁର ଓ ରକ୍ତବିର୍ଯ୍ୟର ନିଧନ ହୋଇଥିଲା । ଏଠି ମହିଷାସୁର ଓ ରକ୍ତବିର୍ଯ୍ୟର ତାତ୍ପର୍ଯ୍ୟ କ'ଣ, ମନେ ରଖିବା ଦରକାର । ମହିଷା ହେଉଛି ମାୟା ଓ ଛଳନାକାରୀ ରାକ୍ଷସ । ଯୁଦ୍ଧକ୍ଷେତ୍ରରେ ବିଭିନ୍ନ ରୂପ ଧାରଣ କରି, ଦେବୀ ସେନା ମଧରେ ଘୋର ଅନ୍ୟାୟ ସୃଷ୍ଟି କରୁଥିଲା । ଏପରି ମାୟାବୀ ଦାନବକୁ ଅମ୍ବା ଯଦି ସମାପ୍ତ କରିନଥାନ୍ତେ, ସଂସାର ପବିତ୍ର ଲକ୍ଷ୍ୟରୁ ବିଚ୍ୟୁତ ହୋଇ କେବଳ ଅନ୍ତର୍ଦ୍ୱନ୍ଦରେ କର୍ତ୍ତିତ ହେଉ ଥାଆନ୍ତା । ସେହିପରି ରକ୍ତବିଜ ... ଆକ୍ରମଣର ଶୋଣିତ ଧାରରେ କୋଟି କୋଟି ରକ୍ତବିଜର ଉତ୍ପତ୍ତିକୁ ଦେବୀଙ୍କ ଲେଲୀହାନ ଲୋଳିତ ଜିହ୍ୱା ବୁଲାଇ ରକ୍ତ ସହିତ ରକ୍ତବିଜକୁ ଯଦି କବଳ କରି ନଥାନ୍ତେ କୁକ୍ଷ୍ର କାମନାଗୁଡ଼ିକ ମନୁଷ୍ୟ ଜୀବନରେ ପ୍ରବେଶ କରି କିପ୍ରକାର ବାଧାଧିକାରରେ ନଚାଉ ନଥାନ୍ତେ ? ଫଳରେ କେବଳ ମହିଷା ଓ ରକ୍ତବିର୍ଯ୍ୟର ରାଜୁତି ଅହରହ ଲାଗି ରହିଥାଆନ୍ତା । ତଥାପି ମନୁଷ୍ୟ ଜୀବନରେ କାମନା ବାସନାର ଅନ୍ତ ନାହିଁ । ଗୋଟିଏ ଇଚ୍ଛା ପୂର୍ଣ୍ଣ ହେବା ମାତ୍ରେ ଦ୍ୱିତୀୟ ଇଚ୍ଛା ପ୍ରକାଶ ପାଇଯାଏ । ଏହିପରି ଅଗଣିତ କାମନା । ଏହିସବୁ ଅଶୁଦ୍ଧ ବାସନାର ବୃକ୍ଷଗୁଡ଼ିକୁ କାଠୁରିଆ କାଟିବା ଅପେକ୍ଷା, ନିଜ ମନରୁ ତା'ର, ଚେର ମୂଳ ସହିତ ଅଙ୍କୁରଗୁଡ଼ିକୁ ଉତ୍ପାଟନ କରି ଦେଲେ କେମିତି ହୁଅନ୍ତା ?

ତୃତୀୟ ତିନିଦିନ - ମହାସରସ୍ୱତୀଙ୍କ ରଣ କୌଶଳରେ ଶୁମ୍ଭ, ନିଶୁମ୍ଭ ଦୁଇ ରାକ୍ଷସ ମୃତ୍ୟୁବରଣ କରିଅଛନ୍ତି । ଶୁମ୍ଭ-ନିଶୁମ୍ଭ ହେଲେ ଅଜ୍ଞାନ ଓ ଅବର୍ଣ୍ଣର ପ୍ରତୀକ । ଯାଙ୍କୁ ବିନାଶ କରିବାକୁ ହେଲେ ଜ୍ଞାନ, ବୁଦ୍ଧି, କଳାର ବିଶେଷ ଆବଶ୍ୟକତା ରହିଛି । ଏଥିପାଇଁ ମହାସରସ୍ୱତୀଙ୍କୁ ଆହ୍ୱାନ କରାଇ, ଶୁମ୍ଭ-ନିଶୁମ୍ଭ ପରି ବିପରୀତ ବୁଦ୍ଧି, ଶତ୍ରୁତା ଓ ଦ୍ୱେଷର ମୂଳପୋଛ କରିବାକୁ ପଡ଼ିବ । କାରଣ ଯେଉଁଠି ସରସ୍ୱତୀ ବିଦ୍ୟମାନ ହୋଇଯାଆନ୍ତି, ଜ୍ଞାନ ସେଇଠି ସଂସ୍ଥାପିତ ହୋଇଯାଏ ଏବଂ ସାଂସାରିକ ସ୍ଥିତି ଉପରେ ସଜାଗ ହୁଏ ମନୁଷ୍ୟ ।

ବୈଦିକ ସିଦ୍ଧାନ୍ତ ଅନୁସାରେ, ନିଜେ ନିଜକୁ ବୁଝାଇ ପାରିବା ଭଳି ଶୁଦ୍ଧ ମାନସିକତାର ଆବଶ୍ୟକ ରହିଛି । ଏଥିପାଇଁ ଅନ୍ତଃକରଣକୁ ନିରନ୍ତର କ୍ରିୟାଶୀଳ କରାଇବା ଉଚିତ । କାମ, କ୍ରୋଧ, ମାୟାର ତ୍ରି-ଗୁଣ ବିନାଶ ପାଇଁ ତିନୋଟି ମାର୍ଗ ରହିଛି । ପ୍ରଥମ ମାର୍ଗ-କର୍ମ ଅର୍ଥାତ୍, କ୍ରିୟା । ଆରାଧନା ଦ୍ୱାରା ମାୟାର ଆବରଣ ନଷ୍ଟ ହୋଇଯାଏ । କ୍ରୋଧର ଆବରଣ ନଷ୍ଟ କରିବା ପାଇଁ ଉପାସନା ତଥା ମାନସ ପୂଜାର ଏକାନ୍ତ ଆବଶ୍ୟକ । ଯୋଗ ବା ସାଧନା ଦ୍ୱାରା କାମର ଆବରଣକୁ ଭାଙ୍ଗି, ମନୁଷ୍ୟ ତିନି ନର୍କରୁ ପାର ପାଇପାରିବ । ଏହା ହିଁ ବିଧି ସାଧନ ନବରାତ୍ରୀ ।

ଦଶମୀ ଦିନକୁ ଦେବୀ ଦଶହରା ବା ବିଶ୍ରାମ ପର୍ବ କୁହାଯାଏ । ତିନି ଶକ୍ତିଙ୍କ ଆରାଧନା ବଳରେ ଜୀବ ତ୍ରିତାପରୁ ମୁକ୍ତି ହୋଇ, ଜ୍ଞାନ ମାର୍ଗରେ ପରିଚାଳିତ ହେବାକୁ ସମର୍ଥ ହୋଇଥାଏ । ଏହା ହିଁ ନବରାତ୍ରୀ ପୂଜାର ବିଶେଷ ମହତ୍ୱ ।

ବର୍ତ୍ତମାନ ଦେବୀ ଦୁର୍ଗାଙ୍କ ସ୍ୱରୂପ ଉପରେ କିଛିଟା ଆଲୋକପାତ କରିବା ଉଚିତ ।

ସଚରାଚର ସୃଷ୍ଟିରେ ନାରୀ ଶକ୍ତିକୁ 'ନ' ରୂପରେ ବ୍ୟାଖ୍ୟା କରାଯାଇଅଛି । ସଂସାର ସର୍ଜନାର ଆଦ୍ୟରୁ ମହାକାଳ ରୁଦ୍ରଙ୍କ ଅବତାର କରଣ କାଳରୁ, ତାଙ୍କ ସହିତ ତାଙ୍କର ଅଭିନ୍ନ ଶକ୍ତି ଭଷ୍ମା ଅର୍ଥାତ୍ ମହାକାଳୀ ରୁଦ୍ରାଣୀଙ୍କ ଅବତାର ଘଟିଥିଲା । ତେଣୁ ତାଙ୍କୁ ଆଦ୍ୟାଶକ୍ତି ବୋଲି ଗ୍ରହଣ କରାଯାଇଛି । ଶିବଙ୍କ ପରେ କ୍ରିୟାତ୍ମକ ଶକ୍ତି ବ୍ରହ୍ମା । ତାଙ୍କ ପରେ ସୃଜନ ଶକ୍ତି ଭାବରେ ବିଷ୍ଣୁ । ଯିଏ ଯାହାର ଶକ୍ତି ସଂଯୁକ୍ତ ହୋଇ ଆବିର୍ଭାବ ହୋଇଥିଲେ ।

ବ୍ରହ୍ମାଙ୍କ ସହିତ ଜ୍ଞାନର ଅଧିଷ୍ଠାତ୍ରୀ ଦେବୀ ସରସ୍ୱତୀ । ବିଷ୍ଣୁଙ୍କ ସହିତ ପ୍ରକାଶ ଶକ୍ତି ମହାଲକ୍ଷ୍ମୀ । ଏହି ଦୁଇ ନାରୀ ଶକ୍ତି ସଂସାର ରଚନା ପାଇଁ ଇଚ୍ଛୁକ ହେବାରୁ, ବ୍ରହ୍ମାଣ୍ଡର ରଚୟକ, ପାଳକ ବିଷ୍ଣୁ କହିଲେ ଜଗତରେ ଏକ ଚକ୍ର ସ୍ଥାପିତ ନ ହେବା ପର୍ଯ୍ୟନ୍ତ, ଲକ୍ଷ୍ମୀ-ନାରାୟଣ ସ୍ଥାପିତ ହୋଇ ପାରିବେ ନାହିଁ । ମହାକାଳ ଶିବ ହେଉଛନ୍ତି ବସ୍ତୁମାନଙ୍କ ଊର୍ଦ୍ଧ୍ୱରେ । ତାଙ୍କ ବନ୍ଧନ ସମ୍ଭବ ହେବ କିପରି ? ତେଣୁ ସ୍ୱୟଂ ଶିବ ହିଁ ଏହାର ଉପାୟ କରିପାରନ୍ତି ।

ଏପରି ପରିସ୍ଥିତିରେ ମହାକାଳ ଶିବଙ୍କୁ ବ୍ରହ୍ମାଣ୍ଡରେ ନବମ ପ୍ରକାର ସ୍ତର ରଚନା କରିବାକୁ ପଡ଼ିଥିଲା । ତାଙ୍କ ଇଚ୍ଛାରେ ନାରୀ ଶକ୍ତି ନବଧା ରୂପରେ ପ୍ରକାଶମାନା ହେଲେ ଯେଉଁଥିରେ ଶିବ ଏକ ବର୍ତ୍ତୁଳ ସ୍ଥିତିରେ ପ୍ରଚଳିତ ହେବାକୁ ଲାଗିଲେ ।





ଶକ୍ତିଗୁଡ଼ିକର 'ନ' ସ୍ଥିତି ପରସ୍ପର ସମନ୍ୱୟ ବିଗ୍ରହ । ଏହି କାରଣରୁ ଯେଉଁ ବ୍ୟକ୍ତି ଏହିମାନଙ୍କ ସମନ୍ୱୟ ସ୍ଥାପିତ କରି ଦେବ, ସେ ପରମ ଶିବ ଭାବକୁ ମଧ୍ୟ ସ୍ଥାପିତ କରି ପାରିବ । ଏଥର ଶିବଙ୍କ ଶକ୍ତି ସଂଯୋଗ ଉପରେ ସାମାନ୍ୟ ଧାରଣା କରାଯିବା ଦରକାର ।

ପ୍ରଥମ ସ୍ୱରୂପ ବା ସ୍ଥିତିରେ - ଶିବ (କାଳ), ସତୀ (ଭକ୍ତି)ଙ୍କ ସହିତ ସଂଯୋଗ ସ୍ଥାପନ କରିବା ପୂର୍ବରୁ, ଅହଂକାର ପ୍ରତୀକ ଦକ୍ଷ ପ୍ରବେଶ କରି କାଳଙ୍କ ବିରୋଧାଚରଣ ଆରମ୍ଭ କରି ଦେଲେ । ଯାହାଫଳରେ ସତୀ ଭକ୍ତି ରୂପିଣୀ ଶିବ ସଂଯୋଗରୁ ବଞ୍ଚିତ ହୋଇ ମହାକ୍ଷୋଭରେ ଯଜ୍ଞାନଳକୁ ଡେଇଁ ନିଜକୁ ସମାପ୍ତ କରିବା ପର୍ଯ୍ୟନ୍ତ କଥା ଗଲା ।

ଦ୍ୱିତୀୟ ସ୍ୱରୂପରେ - ପର୍ବତ କନ୍ୟା ପାର୍ବତୀ ମହାକାଳଙ୍କ ସଂଯୋଗରେ, ଯଦିଓ ଗଣେଶଙ୍କର ମାତା ଭାବରେ ବିଦିତ ହେଲେ, ପିତା ଭାବରେ ଶିବଙ୍କୁ ପରିଚିତ କରାଇ ନଥିଲେ । ଏହି କାରଣରୁ ଅଜ୍ଞାତ ସଂଘର୍ଷ ନେଇ, ଗଣପତିଙ୍କ ଶିରଚ୍ଛେଦ ପର୍ଯ୍ୟନ୍ତ କଥା ବଢ଼ିଗଲା । ଶେଷରେ ଶିବ ଶକ୍ତିଙ୍କ ବଶୀଭୂତ ହୋଇ ଗଣେଶଙ୍କୁ ଗଜାନନ ରୂପରେ ଜୀବଦାନ ଦେଇ ଅଗ୍ର ପୂଜ୍ୟ କରାଇ ଦେଲେ ।

ତୃତୀୟ ସ୍ୱରୂପ - ଜ୍ଞାନ ଅର୍ଥାତ୍- ଗାୟତ୍ରୀ । ମହାକାଳ ତାଙ୍କ ସହିତ ସଂଯୋଗ ସ୍ଥାପନ ପାଇଁ ଅଗ୍ରସର ହେବାରୁ ଅହରହ ଅଧ୍ୟୟନରତା ଗାୟତ୍ରୀ, ମହାକାଳ ଶିବଙ୍କ ଉପରେ ଆଦୌ ଧ୍ୟାନ ନଦେବା ହେତୁ, ଏହି ସଂଯୋଗରେ ବିଘ୍ନ ଘଟି ଅଚିରେ ଛିନ୍ନ ହୋଇଗଲା ।

ଚତୁର୍ଥ ସ୍ୱରୂପ - କ୍ରିୟା, ଅର୍ଥାତ୍- ରୁଦ୍ରାଣୀ । ସେ ଅହରହ କାର୍ଯ୍ୟ ବ୍ୟସ୍ତ ରହି ସମସ୍ତ ସମୟ ଗୃହ କାର୍ଯ୍ୟରେ ବ୍ୟୟ କରୁଥିବାରୁ, ମହାକାଳ ସଂଯୋଗର ସୁଯୋଗ ନପାଇ ଆଗକୁ ଅଧିକ ଶକ୍ତି ଲୀଳା କରିବା ପାଇଁ ଆଗ୍ରହୀ ହୋଇ ପଡ଼ିଲେ ।

ପଞ୍ଚମ ସ୍ୱରୂପରେ - ପ୍ରେମ, ଅର୍ଥାତ୍- ନାରାୟଣୀଙ୍କ ସହିତ ମହାକାଳଙ୍କ ସଂଯୋଗ ପର୍ଯ୍ୟାୟ ଆରମ୍ଭ ହେଲା । ପ୍ରେମ ତ ଅହରହ ସଂଯୋଗରେ ଆବଦ୍ଧ ରହିବାକୁ ମନାସୁଥାଏ । ସେ ଆଉ କାଳଙ୍କଠାରୁ ମୁହୂର୍ତ୍ତେ ଭିନ୍ନ ହେବାକୁ ଇଚ୍ଛା କଲେ ନାହିଁ । ନିବିଡ଼ ପ୍ରେମ ବନ୍ଧନରେ କାଳ ମଧ୍ୟ ପ୍ରଭାବିତ ହୋଇ କିଛି ସମୟ ଅଟକି ଯିବାରୁ ସୃଷ୍ଟିରେ ଘୋର ଅଭାବ ଦେଖା ଦେଲା । କାରଣ କାଳ କଦାପି ବନ୍ଧନଯୁକ୍ତ ନୁହନ୍ତି । ସେ ନିୟମ ଅଧିନିୟମର ବହୁ ଊର୍ଦ୍ଧ୍ୱରେ । ଶେଷରେ ତାଙ୍କୁ ସ୍ଥିତି ପରିତ୍ୟାଗ କରି ଜଗତ କାରଣ କରିବାକୁ ପଡ଼ିଥିଲା ।

ଷଷ୍ଠ ସ୍ୱରୂପ - ଉର୍ଜା, ଅର୍ଥାତ୍- ଚାମୁଣ୍ଡା । ତାଙ୍କ ସହିତ କାଳଙ୍କ ସଂଯୋଗ ହେବାରୁ ସେ ଶକ୍ତି ତାଙ୍କର ଉଦୀପ୍ତମାନ ଅଗ୍ନି ସମାନ ତେଜ ରଶ୍ମି ପ୍ରକାଶ କରି ଶିବଙ୍କ ଉପରେ ଏପରି ପ୍ରଭାବ ସୃଷ୍ଟି କଲେ ଯେ ଯେଉଁ ସ୍ଥିତିରେ କାଳଙ୍କ କରାଳତା ମଧ୍ୟ ହାର ମାନି ଦ୍ରବିତ ହୋଇଗଲା । ପରିଶେଷରେ ସେହି ଅତୃପ୍ତ ଶୋଷଣ ଶକ୍ତିଙ୍କ ସଙ୍ଗ ପରିତ୍ୟାଗ କରିବାକୁ ପଡ଼ିଲା ।

ସପ୍ତମ ସ୍ୱରୂପ - ଭାବନା, ଅର୍ଥାତ୍- ଗଙ୍ଗା ! ଭାବନା ହେଉଛି ଏକ ପ୍ରକାର ବହବମାନ ନଈ । ପ୍ରତିକ୍ଷଣ ସେହି ତରଙ୍ଗାୟିତ ଜଳ ପ୍ରବାହର ଆକର୍ଷଣରେ ଆକର୍ଷି ନେବାର ଦୁର୍ବାର ଲାଳସା ଶିବଙ୍କୁ ସନ୍ତୁଷ୍ଟ କରିପାରି ନଥିଲା । ସେ ଅସ୍ଥିର ସଂଯୋଗରୁ ମୁକ୍ତି ହେବା ପାଇଁ ଭାବନା ରୂପୀ ଗଙ୍ଗାଙ୍କଠାରୁ ଦୂରେଇ ଗଲେ ।

ଅଷ୍ଟମ ସ୍ୱରୂପ - ଧନର ଅଧିଷ୍ଠାତ୍ରୀ ଦେବୀ ଲକ୍ଷ୍ମୀ ! ମହାକାଳ ତାଙ୍କ ସହିତ ସଂଯୋଗ ସ୍ଥାପନ କରିବା ଉଦ୍ଦେଶ୍ୟରେ ଅଗ୍ରସର ହେବାରୁ, ପରିସ୍ଥିତି ଜଟିଳ ରୂପ ଧାରଣ କଲା । କାରଣ ଧନ ଅର୍ଥାତ୍ ଲକ୍ଷ୍ମୀ ସଦୈବ ସାଂସାରିକ ବସ୍ତୁ ଉପରେ ଆକୃଷ୍ଟ ରହେ । ମହାକାଳ ଏଥିରେ ଆଦୌ ଜଡ଼ିତ ହୋଇ ପାରୁନଥିବା ହେତୁ ମତଭେଦ ପ୍ରକାଶ ହେଲା ଏବଂ ପରିଶେଷରେ ଏହି ସଂଯୋଗ ବିଚ୍ଛେଦର କାରଣ ମଧ୍ୟ ପାଲଟି ଗଲା ।

ନବମ ସ୍ୱରୂପ - ସଂହାର କାରିଣୀ ଶକ୍ତି ମହାକାଳୀ । ଯିଏ ଶିବ ସଂଯୁକ୍ତା, ନିତ୍ୟ ସିଦ୍ଧା, ମହାଭୀମା । ଶିବ ଯେତେବେଳେ ତାଙ୍କ ସହିତ ସଂଯୋଗ ସ୍ଥାପନ ପାଇଁ ମନ ବଳାଇଲେ ସେ ଦେବୀ ଉଗ୍ର ତାଣ୍ଡବିନୀ, କାଳ ତଥା ସମୟର ଊର୍ଦ୍ଧ୍ୱରେ ପ୍ରକଟ ରହିବାରୁ ସ୍ୱାଭାବିକ ସ୍ଥିତିରେ ପହଞ୍ଚି ପାରିଲେ ନାହିଁ । ଅସ୍ୱାଭାବିକ ପରିସ୍ଥିତି ହେତୁ ଆପଣା ଶକ୍ତି ସଂଯୋଗ ଆଦୌ ସମ୍ଭବ ହେଉ ନଥିଲା । ଫଳରେ କାଳୀଙ୍କୁ ଆକୃଷ୍ଟ କରାଇବା ପାଇଁ କାଳ ଅନେକ ଥର ଦିଗମ୍ବର ହୋଇ କାଳୀଙ୍କ ପାଦ ତଳେ ମୃତବତ୍ ପଡ଼ି ରହନ୍ତି । ଯାହାକି କାଳୀଙ୍କ ବିବରଣୀରେ ଦେଖିବାକୁ ମିଳିଥାଏ ।

ଏଠାରେ ମହାକାଳ ଶିବ କେବଳ ସଂଯୋଗକାରକ ନଥିଲେ । ସମସ୍ତ ଅଶୁଦ୍ଧ ବୃତ୍ତିର ଅବସାନ ଘଟାଇ ପୁନଶ୍ଚ ଶୁଦ୍ଧତମ ସୃଷ୍ଟି ରଚନା କରିବା ଥିଲା ଏକାନ୍ତ ଉଦ୍ଦେଶ୍ୟ । ତେଣୁ ଅସଂଯୋଗ ଶକ୍ତି କାଳୀଙ୍କଠାରୁ ପୃଥକ୍ ରହି ନୀରବ ସାଧନା ଆରମ୍ଭ କରି ଦେଲେ । ଯେଉଁ ସାଧନା ବଳରେ ସମସ୍ତ ଶକ୍ତିମାନଙ୍କୁ ଏକତ୍ର କରି ନିଜ ଭିତରେ ସମାହିତ କଲେ, ପୁନଶ୍ଚ ସବୁ ଶକ୍ତିମାନଙ୍କ ସଦ୍‌ଗୁଣଗୁଡ଼ିକ ଏକତ୍ର କରି ଯେଉଁ ଶକ୍ତିଙ୍କର ପ୍ରକାଶ କରାଇଲେ ସେହି ଦିବ୍ୟ ଶକ୍ତିଙ୍କ ପରିଚୟ ହେଲା 'ନବ ଦୁର୍ଗା' ଯିଏ ଶିବ ଅର୍ଦ୍ଧାଙ୍ଗିନୀ ରୂପେ ପୂଜା ପାଉଅଛନ୍ତି ।

ସେଥିପାଇଁ ପବିତ୍ର ନବରାତ୍ରୀ ମାଧ୍ୟମରେ ନବଗୁଣ ସଂଯୁକ୍ତା ନବଦୁର୍ଗାଙ୍କ ଉପାସନା କଲେ ସାଧକ ତା'ର ଅଭିଷ୍ଟ ସିଦ୍ଧ କରିବା ସଂଗେସଂଗେ ଦୁର୍ଲଭ ନବଗୁଣର ଅଧିକାରୀ ହୋଇଥାଏ । କେବଳ ଏତିକି ନୁହେଁ ପୁରୁଷ ରୂପୀ ଜୀବ, ଶିବ ସ୍ୱରୂପ ହୋଇ ଏକ ପୂର୍ଣ୍ଣାଙ୍ଗ 'ସ୍ତ୍ରୀ' ଉପରେ ବିଜୟ ପ୍ରାପ୍ତ ପୂର୍ବକ ପୂର୍ଣ୍ଣ ସଂଯୋଗ ସ୍ଥାପନ ପାଇଁ ସମର୍ଥ ହୋଇଥାଏ ।





ମନୁଷ୍ୟକୁ ଶିବ ସ୍ୱରୂପ କହିବାର ତାତ୍ପର୍ଯ୍ୟ, ସେ ପ୍ରତିକ୍ଷଣ କୌଣସି ନା କୌଣସି ଭାବରେ ଶକ୍ତି ସହିତ ସଲଗ୍ନ ହୋଇ କାର୍ଯ୍ୟ କରିଚାଲିଛି । ଯଥା- ଭାବନା ଶକ୍ତି, କ୍ରିୟା ଶକ୍ତି, ଜ୍ଞାନ ଶକ୍ତି, ଅଧିକାର ଶକ୍ତି, ସଂହାର ଶକ୍ତି, ନିର୍ମାଣ ଶକ୍ତି, ଆନନ୍ଦ ଶକ୍ତି, ଧନ ଶକ୍ତି ଓ ପ୍ରେମ ଶକ୍ତି । ଏହିପରି ନଅଗୋଟି ଶକ୍ତିର ଆବଶ୍ୟକତା ନେଇ ସଂସାର କାର୍ଯ୍ୟ ନିର୍ବାହ କରାଯାଏ । ଏଥିମଧ୍ୟରୁ ଗୋଟିକର ଅପ୍ରାପ୍ତି ହେଲେ ଜୀବନ ଅଧୁରା ହୋଇଯିବ । ଏହି ମର୍ମରେ ନବଦୁର୍ଗାଙ୍କ ଶରଣଭିକ୍ଷା ଏକାନ୍ତ ଆବଶ୍ୟକ ।

ଶାସ୍ତ୍ର ମତରେ ସ୍ତ୍ରୀ, ପୁରୁଷ ଉଭୟେ ଜୀବାତ୍ମା । ତେଣୁ ଜୀବର ଜୀବନରେ ଶକ୍ତିକୁ ବାଦ୍ ଦେଲେ କିଛି ନାହିଁ । ଏହି ଅଭାବ ପୂରଣ ପାଇଁ ପ୍ରତ୍ୟେକ ନାରୀ, ନର ନବରାତ୍ରୀର ପରମ ସୁଯୋଗ ନେଇ ନବଦୁର୍ଗା ଉପାସନାରେ ଦେବୀଙ୍କୁ ସନ୍ତୁଷ୍ଟ କରିବା କଥା । କାରଣ ଏହି ସମୟରେ ଦେବୀ ମହାର୍ଘ୍ୟ ରୂପ ଧାରଣ କରି ଗଗନ ପବନରେ ବିଚରଣ କରୁଥାଆନ୍ତି । ସାଧକ ଦିବ୍ୟ ସାଧନା ବଳରେ ତାଙ୍କୁ ହୃଦୟ କମଳରେ ସ୍ଥାପନ କରିପାରିଲେ, ଦେଶ, ଦଶର ମଙ୍ଗଳ ସାଧନ କରିପାରିବ । ନବରାତ୍ରୀ ପୂଜାରେ କେଉଁ ଦିନ କେଉଁ ଶକ୍ତିଙ୍କୁ ଆହ୍ୱାନ କଲେ, ସେହି ଶକ୍ତିଙ୍କ କୃପା ଲାଭ ହେବ, ତାହା ନିମ୍ନରେ ପ୍ରଦତ୍ତ କରାଗଲା -

ପ୍ରଥମ ଦିନ - ସରସ୍ୱତୀ (ଜ୍ଞାନ) । ଦ୍ୱିତୀୟ ଦିନ - ପାର୍ବତୀ (ମାତୃତ୍ୱ), ତୃତୀୟେ- ଗୌରୀ (ପ୍ରେମ), ଚତୁର୍ଥେ- ରୁଦ୍ରାଣୀ (କ୍ରିୟା), ପଞ୍ଚମେ- ନାରାୟଣୀ (ଆନନ୍ଦ), ଷଷ୍ଠେ- ଚାମୁଣ୍ଡା (ଅଧିକାର), ସପ୍ତମେ- ଗଙ୍ଗା (ଭାବନା), ଅଷ୍ଟମେ- ଲକ୍ଷ୍ମୀ (ଧନ), ନବମେ- କାଳୀ (ସଂହାର) ନବଦିନାତ୍ମକ ପୂଜା ପାର୍ବଣରେ ନବଶକ୍ତିଙ୍କୁ ସନ୍ତୁଷ୍ଟ କଲେ ଦେବୀ ସମୂହ ନିଜ ନିଜ ଗୁଣରେ ଭକ୍ତକୁ ସଗୁଣବନ୍ତ କରି ଯଶ ପ୍ରଦାନ କରାନ୍ତି । ତେଣୁ ଭାଗ୍ୟବାନ ମନୁଷ୍ୟ ଏହି ପୂଜାର ଲାଭ ଉଠାଇବା ଉଚିତ । ପରିଶେଷରେ ନବଶକ୍ତି ପ୍ରଦାୟିନୀ ନବଦୁର୍ଗାଙ୍କ ଚରଣ କମଳରେ କ୍ଷମା ପ୍ରାର୍ଥନା ସହ ଉପସଂହାର କରୁଛି ।

'ଅପରାଧ ସହସ୍ରାଣୀ କ୍ରିୟତେ□ହର୍ନିଶଂ ମୟା ।
ଦାସୋୟାମିତି ମାଂ ମତ୍ୱା କ୍ଷମସ୍ୱ ପରମେଶ୍ୱରୀ ॥'

୫୮, ଗଜପତି ନଗର
ମୈଥିଳୀ ନିବାସ
ପୁରୀ - ୨

## ଗୁରୁଦିବସରୁ ବିଜୁ କମ୍ପ୍ୟୁଟର ଶିକ୍ଷାର ଶୁଭାରମ୍ଭ

ବର୍ତ୍ତମାନ କମ୍ପ୍ୟୁଟରର ଯୁଗ । ପ୍ରାଥମିକ ସ୍ତରରେ ସ୍କୁଲ ପିଲାମାନଙ୍କୁ କମ୍ପ୍ୟୁଟର ଶିକ୍ଷା ଦେଇ ସେମାନଙ୍କର ବୌଦ୍ଧିକ ଓ ମାନସିକ ଶକ୍ତିର ବିକାଶ ଲକ୍ଷ୍ୟରେ ସେପ୍ଟେମ୍ବର ୫, ପବିତ୍ର ଗୁରୁ ଦିବସରୁ, ସର୍ବଶିକ୍ଷା ଅଭିଯାନ ଅଧୀନରେ ରାଜ୍ୟରେ ବିଜୁ ପଟ୍ଟନାୟକ କମ୍ପ୍ୟୁଟର ଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି । ଭୁବନେଶ୍ୱରର ଓ.ଏସ୍.ଇ.ବି., ୟୁ.ପି. ସ୍କୁଲରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ସେହିଦିନ ଏହି କାର୍ଯ୍ୟକ୍ରମକୁ ଉଦ୍‌ଘାଟନ କରିଥିଲେ, ଉଦ୍‌ଘାଟନ ଉତ୍ସବରେ ଗଣଶିକ୍ଷା ମନ୍ତ୍ରୀ ଶ୍ରୀ ନଗେନ୍ଦ୍ର ପ୍ରଧାନ ମଧ୍ୟ ଉପସ୍ଥିତ ଥିଲେ ।

ରାଜ୍ୟରେ ପ୍ରଥମ ପର୍ଯ୍ୟାୟରେ ୬୦୦ ସ୍କୁଲରେ ଏହି କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି ଏବଂ ପରେ ପରେ ଆଉ ୩୦୦ ସ୍କୁଲକୁ ଏଥିରେ ଅନ୍ତର୍ଭୁକ୍ତ କରାଯିବ । ଯେଉଁ ସ୍କୁଲଗୁଡ଼ିକରେ ବିଦ୍ୟୁତ ସୁବିଧା ଥିବ ପ୍ରଥମେ ସେହି ସ୍କୁଲଗୁଡ଼ିକରେ ବିଜୁ କମ୍ପ୍ୟୁଟର ଶିକ୍ଷା କାର୍ଯ୍ୟକ୍ରମ ପ୍ରଚଳନ କରାଯିବ । ଏହି କାର୍ଯ୍ୟକ୍ରମ ମାଧ୍ୟମରେ କମ୍ପ୍ୟୁଟର ସିଡ଼ି ଯୋଗେ ଇଂରାଜୀ, ଗଣିତ ଓ ବିଜ୍ଞାନ ବିଷୟଗୁଡ଼ିକ ପଢ଼ାଯିବ । ଏହାଫଳରେ ଅନଗ୍ରସର ଅଞ୍ଚଳର ପିଲାଙ୍କ ପାଇଁ ଏହି ସବୁ ବିଷୟ ଶିକ୍ଷା କରିବା ସହଜ ହେବା ସହ ସ୍କୁଲପ୍ରତି ସେମାନଙ୍କର ଆଗ୍ରହ ବଢ଼ିବ । ରାଜ୍ୟର ଓପେପା ସଂସ୍ଥା ପକ୍ଷରୁ ନିର୍ଦ୍ଦେଶକ ଶ୍ରୀ ସନ୍ତୋଷ ଷଡଙ୍ଗୀଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏହି କାର୍ଯ୍ୟକ୍ରମ ପରିଚାଳନା କରାଯାଉଛି ।

ସଂଗୃହୀତ : ଗବେଷଣା ଓ ତଥ୍ୟ ସୂଚନା ଶାଖା, ସୂଚନା ଓ ଲୋକ ସଂପର୍କ ବିଭାଗ







# ଦେବୀମାତା ଓ ନବରାତ୍ର ପୂଜା

ଦୁର୍ଗାମାଧବ ଦାଶ

ଆଶ୍ୱିନ ମାସ ଶୁକ୍ଳପକ୍ଷର ପ୍ରଥମ ନଅ ଦିନରେ ଆମେ ଭଗବାନଙ୍କ ପରାଶକ୍ତିକୁ ବିଭିନ୍ନ ରୂପରେ ପୂଜା କରିଥାଉ । ଏହାକୁ ନବରାତ୍ର ପୂଜା ବୋଲି କୁହାଯାଏ । ଏହି ପକ୍ଷର ଦଶମ ଦିନରେ ପରାଶକ୍ତିଙ୍କ ଯେଉଁ ପୂଜା ସମାହିତ ହୋଇଥାଏ, ତାକୁ ବିଜୟ ଦଶମୀ ବୋଲି କୁହାଯାଏ । ଏମିତି ଏଇ ଦଶ ଦିନର ପୂଜାକୁ ଦଶହରା ପର୍ବ ବୋଲି ଆଖ୍ୟା ଦିଆଯାଇଥାଏ । ନବରାତ୍ର ପୂଜାକୁ ତିନି ଦିନ କରି ତିନି ଭାଗରେ ବିଭକ୍ତ କରାଯାଇଥାଏ । ପ୍ରଥମ ତିନି ଦିନ ଧରି ଦେବୀମାତାଙ୍କୁ ମହାକାଳୀ ବା ଦୁର୍ଗା ରୂପରେ ପୂଜା କରାଯାଏ । ଦ୍ୱିତୀୟ ତିନି ଦିନ ଧରି ଦେବୀମାତାଙ୍କୁ ମହାଲକ୍ଷ୍ମୀ ରୂପେ ପୂଜା କରାଯାଏ । ସେହିପରି ଶେଷ ତିନି ଦିନରେ ଦେବୀମାତାଙ୍କୁ ମହାସରସ୍ୱତୀ ରୂପେ କଳ୍ପନା କରି ପୂଜା କରାଯାଏ । ଏହିପରି ଦେବୀମାତାଙ୍କୁ ଏଇ ନଅ ଦିନରେ ତିନି ବିଭିନ୍ନ ରୂପରେ କଳ୍ପନା କରି ପୂଜା କରାଯାଏ । ହିନ୍ଦୁଧର୍ମ ମୁତାବକ ଦଶହରା ସମୟର ପୂଜା ଏକ ତତ୍ତ୍ୱପୂର୍ଣ୍ଣ ଉପାସନା ଅଟେ ।

ଦେବୀ ଭାଗବତ ଓ ଉପନିଷଦ ମୁତାବକ ପରମେଶ୍ୱର ପରମାତ୍ମା ଏ ସୃଷ୍ଟିର ସର୍ବବ୍ୟାପ୍ତ ବ୍ରହ୍ମ ଅଟନ୍ତି । ଚିନ୍ମୟୀମାତା, ଯାହାଙ୍କୁ ଆମେ ଦେବୀମାତା ଆଖ୍ୟା ଦେଇ ନବରାତ୍ର ସମୟରେ ପୂଜା କରିଥାଉ, ସେହି ଶକ୍ତି ବାସ୍ତବରେ ଏହି ପରମାତ୍ମା ପରଂବ୍ରହ୍ମଙ୍କର ଏକ ଅଲୌକିକ ଓ ଅବ୍ୟକ୍ତ ଶକ୍ତି ଅଟନ୍ତି । ପରଂବ୍ରହ୍ମ ଅସୀମ ଓ ସର୍ବବ୍ୟାପୀ ହୋଇଥିବା ଦୃଷ୍ଟିରୁ ତାଙ୍କୁ ନିଶ୍ଚଳ ଓ ନିଷ୍କ୍ରିୟ ବୋଲି ଦର୍ଶାଯାଇଥାଏ । ତେଣୁ ତାଙ୍କଠାରେ କୌଣସି ଗତି ବା କ୍ରିୟାଶୀଳ ଶକ୍ତି ଥିବାର ପ୍ରଶ୍ନ ଉଠୁ ନାହିଁ । ଦେବୀମାତା ହିଁ ପରଂବ୍ରହ୍ମଙ୍କର ସକ୍ରୀୟ ଶକ୍ତି ଅଟନ୍ତି । ସେ ପରମାଶକ୍ତି ରୂପେ ସୃଷ୍ଟିର ସର୍ବମୟୀ କର୍ତ୍ତୀ ଅଟନ୍ତି । ଦେବୀତତ୍ତ୍ୱ ମୁତାବକ ମହାମାୟାଙ୍କୁ ଛାଡ଼ି ପରଂବ୍ରହ୍ମଙ୍କ ଗୁଣ ବା ସ୍ୱରୂପ କୌଣସି ମତେ ଚିନ୍ତା କରାଯାଇପାରିବ ନାହିଁ । ସେ ଦୁହେଁ ଅଭିନ୍ନ ଅଟନ୍ତି । ସ୍ୱାମୀ ଚିଦାନନ୍ଦ ସରସ୍ୱତୀ ମହାରାଜଙ୍କ ବ୍ୟାଖ୍ୟା ମୁତାବକ ଦୁଧକଥା ଚିନ୍ତା କଲାବେଳେ ଯେମିତି ଏହାର ଧଳା ରଂଗ ଆମ ମନ ଭିତରକୁ ଆପେ ଆପେ ଆସିଥାଏ, ଠିକ୍ ସେହିପରି ପରଂବ୍ରହ୍ମଙ୍କ ସଗୁଣ ଓ ନିର୍ଗୁଣ ଭାବ ଚିନ୍ତା କଲାବେଳେ ଏହି ଦେବୀଶକ୍ତିଙ୍କ ପରାକାଷ୍ଠା ଆମ ମନ ଭିତରେ ସ୍ୱତଃ ଜାଗ୍ରତ ହୋଇଥାଏ । ଦେବୀଶକ୍ତିଙ୍କୁ ପରମାତ୍ମା ଭଗବାନଙ୍କ ମାତୃଶକ୍ତି ଓ ମାୟାଶକ୍ତି ରୂପେ ବର୍ଣ୍ଣନା କରାଯାଇଛି । ମାୟାଶକ୍ତିକୁ ହିଁ ତାଙ୍କ କ୍ରିୟାଶୀଳ ପରମାଶକ୍ତି ରୂପେ ନିରୂପଣ କରାଯାଇଛି । ଏହି ଶକ୍ତି ଦ୍ୱାରା ହିଁ ପରମାତ୍ମା ବିଶ୍ୱ ବ୍ରହ୍ମାଣ୍ଡକୁ ସର୍ଜନା କରିବାରେ ସକ୍ଷମ ହୋଇପାରିଛନ୍ତି । ଏଣୁ ଭଗବାନଙ୍କ ପରାଶକ୍ତିକୁ ସୃଷ୍ଟିର ପ୍ରାଣକେନ୍ଦ୍ର ବୋଲି କୁହାଯାଇଥାଏ । ସୃଷ୍ଟିତତ୍ତ୍ୱ ମୁତାବକ ଏହି ବିଶ୍ୱରେ ଯାହା ସବୁ ସୃଷ୍ଟି ହୋଇଛି - ଜୀବଠାରୁ ବସ୍ତୁ ପର୍ଯ୍ୟନ୍ତ, ସବୁର ମୂଳରେ ଏହି ମହାମାୟାଙ୍କ ପରମା ଶକ୍ତି ହିଁ ଅନ୍ତର୍ନିହିତ । ଋକ୍‌ବେଦରେ ଦେବୀମାତା ଅର୍ଥାତ୍ ଏହିପରି ଶକ୍ତିଙ୍କୁ ପରମାତ୍ମାଙ୍କ ଅଲୌକିକ ଶକ୍ତି ରୂପେ ପ୍ରଦୀପନ କରାଯାଇଛି ।

ଦେବୀଙ୍କ ନବରାତ୍ର ପୂଜା ମୁଖ୍ୟତଃ ଶାକ୍ତ ଉପାସନା ଅଟେ । ଶାକ୍ତ ପରମ୍ପରାରୁ ଦେବୀଙ୍କ ପୂଜା ପଦ୍ଧତିର ଉଦ୍‌ଭବ ହୋଇଛି । ଦୁର୍ଗା ସପ୍ତଶତୀ ପୁସ୍ତକରେ ଦେବୀ ମହାତ୍ମ୍ୟ ବିଷୟକୁ ନେଇ ଅନେକ ତତ୍ତ୍ୱ ବିସ୍ତୃତ ଭାବେ ବର୍ଣ୍ଣନା କରାଯାଇଛି । ଏଣୁ ଦୁର୍ଗା ସପ୍ତଶତୀକୁ ଦେବୀ ମହାତ୍ମ୍ୟ ବୋଲି କୁହାଯାଏ । ଏହା ସାତଶହ ଶ୍ଳୋକ ବିଶିଷ୍ଟ ପୁସ୍ତକଟିଏ ହୋଇଥିବାରୁ ଏହାକୁ ସପ୍ତଶତୀ ଆଖ୍ୟା ଦିଆଯାଇଛି । ଭାରତର ବିଭିନ୍ନ ସ୍ଥାନରେ ସପ୍ତଶତୀ ପାଠକୁ ଚଣ୍ଡୀପାଠ ବୋଲି କୁହାଯାଏ । କାରଣ ଦେବୀଙ୍କୁ ଚଣ୍ଡୀକା ନାମରେ ମଧ୍ୟ ପୂଜା କରାଯାଇଥାଏ । ଦୁର୍ଗା ସପ୍ତଶତୀ ପୁସ୍ତକରେ ଦେବୀମାତାଙ୍କ ବିଭିନ୍ନ ରୂପକୁ ବର୍ଣ୍ଣନା କରାଯାଇଥିବା ସଂଗେସଂଗେ ତାଙ୍କ ତାତ୍ତ୍ୱିକ ଗୁଣକୁ ମଧ୍ୟ ବିଶେଷ ଭାବେ ଆଲୋଚନା କରାଯାଇଛି । ଶାକ୍ତ ଦର୍ଶନ ମୁତାବକ ଚଣ୍ଡୀପାଠ ହିଁ ଜୀବନର ପ୍ରକୃତ ସାଧନା ଅଟେ । ନିଷ୍ଠା ଓ ନିୟମର ସହିତ ଚଣ୍ଡୀପାଠ ନକଲେ ଚଣ୍ଡୀପାଠର ମୂଲ୍ୟ ମିଳିନଥାଏ ବୋଲି ଶାକ୍ତ ପଦ୍ଧତିରେ ବର୍ଣ୍ଣନା କରାଯାଇଛି ।

ଦୁର୍ଗା ସପ୍ତଶତୀରେ ଦେବୀ ତତ୍ତ୍ୱ ବିଷୟକୁ ଏକ କାହାଣୀ ମାଧ୍ୟମରେ ବିସ୍ତୃତ ଭାବେ ଆଲୋଚନା କରାଯାଇଛି । ଏହି ପରିପ୍ରେକ୍ଷୀରେ ଏହି ପୁସ୍ତକରେ ଦେବୀଙ୍କ ସଂପର୍କରେ କେତୋଟି





ହୃଦସ୍ପର୍ଶୀ ସ୍ତବରାଜ ସହ ଦେବୀପୂଜାର ବିଧିବିଧାନ ସଂପର୍କରେ ସବିସ୍ତୃତ ରେଖାନ୍ୟାସ କରାଯାଇଛି ।

ଏହି ପୁସ୍ତକର କଥାବସ୍ତୁ ମୁତାବକ, ଅନେକ ବର୍ଷ ପୂର୍ବେ ସୂର୍ଯ୍ୟ ବଂଶରେ ସୁରଥ ନାମକ ଜଣେ ରାଜା ରାଜୁତି କରୁଥିଲେ । ସେ ଜଣେ ଦକ୍ଷ ପ୍ରଜାରଂଜକ ଶାସକ ଥିଲେ । ଥରେ ସେ ଶତ୍ରୁମାନଙ୍କ ଦ୍ୱାରା ପରାଜିତ ହୋଇ ରାଜ୍ୟ ଛାଡ଼ି ଜଂଗଲକୁ ପଳାୟନ କରିବାକୁ ବାଧ୍ୟ ହୋଇଥିଲେ । ସେ ଜଂଗଲକୁ ପଳାୟନ କରିଥିଲେ ସିନା, ହେଲେ ନିଜ ରାଜ୍ୟର କଥାଗୁଡ଼ିକୁ ଭୁଲି ପାରି ନଥିଲେ । ସବୁବେଳେ ରାଜ୍ୟ କଥା ଭାବି ଭାବି ମାନସିକ ଅସ୍ଥିରତାରେ ଉବୁଟୁବୁ ହେଉଥିଲେ । ଜଂଗଲରେ ଏମିତି ହତାଶରେ ବୁଲୁ ବୁଲୁ ଦିନେ ସେ ବ୍ରହ୍ମର୍ଷି ମେଧା ଋଷିଙ୍କ ଆଶ୍ରମରେ ପହଞ୍ଚିଲେ । ଆଶ୍ରମର ସୁନ୍ଦର ପରିବେଶରେ ମୁଗ୍ଧ ହୋଇ ସେ ମେଧା ଋଷିଙ୍କ ପାଖରେ ଆଶ୍ରୟ ନେଇଥିଲେ । ସେହି ଆଶ୍ରମରେ ସମାଧି ନାମକ ଜଣେ ବୈଶ୍ୟଙ୍କ ସହ ତାଙ୍କର ଦେଖା ହୋଇଥିଲା । ସମାଧି ବଶ୍ୟ ବି ଅନୁରୂପ ପରିସ୍ଥିତିରେ ପଡ଼ି ତାଙ୍କ ଘରଦ୍ୱାର ଛାଡ଼ି ଜଂଗଲକୁ ଚାଲି ଆସିଥିଲେ । ସେ ମଧ୍ୟ ଏମିତି ବୁଲୁ ବୁଲୁ ସୁରଥଙ୍କ ପରି ମେଧା ଋଷିଙ୍କ ଆଶ୍ରମରେ ପହଞ୍ଚି ସେହି ଆଶ୍ରମର ପରିବେଶ ଭିତରେ ରହିବାପାଇଁ ଇଚ୍ଛା ପ୍ରକାଶ କରିଥିଲେ । ସୁରଥ ଓ ସମାଧିଙ୍କ ମଧ୍ୟରେ କ୍ରମଶଃ ବନ୍ଧୁତ୍ୱ ସଂପର୍କ ବଢ଼ିବାକୁ ଲାଗିଲା । ଉଭୟେ ଗୋଟିଏ ଦଶାର ଶୀକାର ହୋଇ ମେଧା ଋଷିଙ୍କ ପାଖରେ ଆଶ୍ରୟ ନେଇଥିବାରୁ ଉଭୟଙ୍କ ମଧ୍ୟରେ ଗଢ଼ି ଉଠିଥିବା ସଂପର୍କ କ୍ରମଶଃ ଘନିଷ୍ଠ ହେବାକୁ ଲାଗିଲା । ସମାଧି ବଶ୍ୟ ମଧ୍ୟ ବାରମ୍ବାର ତାଙ୍କ ଘର ଓ ପରିଜନମାନଙ୍କ କଥା ଭାବି ଭାବି ଦୁଃଖରେ ଭାଙ୍ଗି ପଡୁଥାନ୍ତି ।

ଦିନକର ଘଟଣା । ସେମାନେ ଆଶ୍ରମରେ ବସି ଭାବିବାକୁ ଲାଗିଲେ, କି ବିଚିତ୍ର ଏ ମନଟା ଦେଖିଲ । ନିଜର ସଂପର୍କୀୟମାନେ ସେମାନଙ୍କ ଦୁଃଖର କାରଣ ହୋଇଥିଲେ ବି ସେମାନଙ୍କ ମାୟାରେ ଜୁଡୁବୁଡୁ ହୋଇ ସେମାନଙ୍କୁ କେମିତି ଭୁଲି ପାରୁନାହାନ୍ତି । ଏହି ସମସ୍ୟାର ସମାଧାନ ପାଇଁ ସେ ମେଧା ଋଷିଙ୍କ ପାଖକୁ ଯାଇ ବିନିତ ଭାବରେ ଜଣାଇଲେ, ହେ ଋଷି ଶ୍ରେଷ୍ଠ ! ଆପଣ ଆମକୁ ଆଶୀର୍ବାଦ କରନ୍ତୁ । ଏ କ୍ରନ୍ଦନଶୀଳ ଦୁନିଆଟା ଆମର ଦୁଃଖର କାରଣ ହେଲେ ବି, ଆମେ ଆମ ସଂସାରକୁ ତଥା ପରିବାରବର୍ଗଙ୍କୁ ଆଦୌ ଭୁଲି ପାରୁନାହୁଁ । ସେହି ଧନ-ସଂପତ୍ତି ପୂର୍ବବତ୍ ଆମ ମନକୁ ବାରମ୍ବାର ଆକର୍ଷିତ କରି ଆମକୁ ଅଧିକରୁ ଅଧିକତର ଦୁଃଖ ଦେଉଛି । ଆମେ ଆମ ସାଂସାରିକ ଆସକ୍ତିରୁ ଆଦୌ ମୁକୁଳି ପାରୁନୁ । ଏହି ମୋହର କାରଣ କ'ଣ, ଦୟାକରି ଏ ସନ୍ଦେହରୁ ଆମକୁ ମୁକ୍ତି ଦିଅନ୍ତୁ ।

ଏହି ପ୍ରଶ୍ନର ଉତ୍ତରରେ ମେଧା ଋଷି ସୁରଥ ଓ ସମାଧିଙ୍କ ସନ୍ଦେହ ମୋଚନ ପାଇଁ ସେମାନଙ୍କୁ ଯାହା ଶୁଣାଇଥିଲେ, ତାହା ହିଁ ଦେବୀ ଭାଗବତର ମୁଖ୍ୟ ସାରାଂଶ ଅଟେ ।

ଦେବୀ ତତ୍ତ୍ୱର ବ୍ୟାଖ୍ୟାରୁ ଜଣାଯାଏ ଯେ ମନୁଷ୍ୟର ମନ ଏକ ମାୟାଶକ୍ତି ଦ୍ୱାରା ବନ୍ଧା ହୋଇଥିବାରୁ ତା'ର ବିଚାର ଶକ୍ତି ଏକ ଅନ୍ଧକାର ଭିତରେ ଆବୃତ ହୋଇ ରହିଥାଏ । ସବୁକଥା ଅନୁଧ୍ୟାନ କରିବା ପାଇଁ ମନର ଯଥୋଚିତ ଶକ୍ତି ଓ ସାମର୍ଥ୍ୟ ରହିଥିଲେ ବି ଏହି ମାୟାଶକ୍ତିର ଆଭରଣ ଯୋଗୁଁ ସେ ଦୁଃଖ ଓ ଦୁର୍ଦ୍ଦଶା କାରଣ ଅର୍ଥାତ୍ ଧନ, ସଂପତ୍ତିର ମୋହ ଭିତରେ ଉବୁଟୁବୁ ହୋଇ ସେହି ଚିନ୍ତାରେ ସବୁବେଳେ ଘାରି ହୋଇ ବିଚଳିତ ହୋଇଥାଏ । ଏହି ମାୟା ଦେବୀ ମାତାଙ୍କ ଅଲୌକିକ ଶକ୍ତି ଅଟେ । ତାକୁ ହିଁ ତନ୍ତ୍ରଶାସ୍ତ୍ରରେ ବିଶ୍ୱମାୟା ବୋଲି କୁହାଯାଏ । ଏହି ବିଶ୍ୱମାୟା ବା ମହାମାୟା ପରଂବ୍ରହ୍ମ ପରମାତ୍ମାଙ୍କ ବିଶ୍ୱବ୍ୟାପିନୀ ବିମୋହିନୀ ଶକ୍ତି ଅଟନ୍ତି । ଯେଉଁସବୁ ଦୃଶ୍ୟ ଏହି ଜଗତରେ ଆମର ଦୃଷ୍ଟିଗୋଚର ହେଉଛି, ତାହା ସବୁ ପରଂବ୍ରହ୍ମଙ୍କ ପରାଶକ୍ତିର କ୍ରିୟା ଫଳରେ ସମ୍ଭବପର ହୋଇଥାଏ । ତତ୍ତ୍ୱଜ୍ଞାନୀ ଋଷିଗଣ ଏହି ଗୂଢ଼ ତତ୍ତ୍ୱକୁ ବ୍ୟାଖ୍ୟାକରି କହିଛନ୍ତିଯେ ପରଂବ୍ରହ୍ମ ଓ ଏ ଜଗତକୁ ଆଭରଣ କରି ରଖିଥିବା ମାୟାଶକ୍ତି ତତ୍ତ୍ୱତଃ ଏକ ଓ ଅଭିନ୍ନ ଅଟେ । ବାହାରକୁ ସେମାନଙ୍କ ଭିତରେ ପାର୍ଥକ୍ୟ ରହିଥିବା ପରିଦୃଷ୍ଟ ହେଉଥିଲେ ମଧ୍ୟ ବାସ୍ତବରେ ସେମାନେ ଏକ ହିଁ ଏକ ଅଟନ୍ତି । ଏଣୁ ପରମାତ୍ମା ପରଂବ୍ରହ୍ମ ଓ ତାଙ୍କ ପରାଶକ୍ତିଙ୍କ ମଧ୍ୟରେ କୌଣସି ପ୍ରଭେଦ ନଥାଏ । ତତ୍ତ୍ୱଜ୍ଞମାନଙ୍କ ମତରେ ପରମାତ୍ମାଙ୍କ ଅବ୍ୟକ୍ତ ଭାବ ଓ ବ୍ୟକ୍ତ ସ୍ୱରୂପକୁ ମହାମାୟା ହିଁ ସଂଯୋଜିତ କରି ରଖିଛନ୍ତି । ପରଂବ୍ରହ୍ମ ତାଙ୍କ ସର୍ବ ପରିବ୍ୟାପ୍ତ ଗୁଣ ଯୋଗୁଁ ନିଷ୍କ୍ରିୟ ହୋଇଥିଲେ ବି ସେ ପରାଶକ୍ତିଙ୍କ (ଯାହାଙ୍କୁ ଆମେ ଦେବୀମାତା ବୋଲି ଆରାଧନା କରିଥାଉ) ସଂସ୍ପର୍ଶରୁ ଏ ବିଶ୍ୱସୃଷ୍ଟିର ସକ୍ରିୟ କାରଣ ହୋଇଥାନ୍ତି । ଏ ବିଶ୍ୱରେ ସ୍ଥୂଳଠାରୁ ସୂକ୍ଷ୍ମ ଯାହାକିଛି ରହିଛି, ତାହା ସେହି ପରମାତ୍ମାଙ୍କ ପରିପ୍ରକାଶ ତଥା ପରଂବ୍ରହ୍ମଙ୍କ ଅଲୌକିକ ବିକାଶ ଅଟେ ।

ପରଂବ୍ରହ୍ମଙ୍କ ଏହି ପରାଶକ୍ତିକୁ ନବରାତ୍ର ସମୟରେ ଆମେ ମାତୃଶକ୍ତି ରୂପରେ ପୂଜା କରିଥାଉ । ଦେବୀଶାସ୍ତ୍ର ମୁତାବକ ଏ ସଂସାର ସୃଷ୍ଟି ପ୍ରପଞ୍ଚରେ ଆମେ ଆମ ମନ ବା ଇନ୍ଦ୍ରିୟ ଦ୍ୱାରା ଯାହାକିଛି ଜାଣୁଛୁ ବା ଉପଲବ୍ଧି କରୁଛୁ, ତାହା କେବଳ ସେ ମାତୃଶକ୍ତିଙ୍କ ରୂପ ଅଟେ । ସେହି ମାତା ସର୍ବଶକ୍ତିମୟୀ ଅଟନ୍ତି । ଏହି ସୃଷ୍ଟି ପ୍ରପଞ୍ଚର ପଶ୍ଚାତ୍ ଭାଗରେ ଏହି ମାତୃଶକ୍ତି ହିଁ ବିଦ୍ୟମାନ । ସେ ସକଳ ସୃଷ୍ଟି ଓ ସକଳ ପ୍ରକାଶର ମୁଖ୍ୟ କାରଣ ଅଟନ୍ତି । ଏପରିକି ସେ ଏହି ସଂସାରର ସୃଜକ, ପାଳକ ଓ ସଂହାରକଙ୍କ ମଧ୍ୟ ସୃଷ୍ଟିକର୍ତ୍ତ୍ରୀ ଅଟନ୍ତି । ଅତଏବ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ବି ତାଙ୍କ ଭିତରେ ଅବସ୍ଥିତ ହୋଇ ରହିଛନ୍ତି । ଏହି ସୃଷ୍ଟିର ବ୍ୟକ୍ତ, ଅବ୍ୟକ୍ତର ପ୍ରତ୍ୟେକ କ୍ରୀଡ଼ା ତାଙ୍କ କୃପାରୁ ସମାହିତ ହୋଇଥାଏ । ଶକ୍ତିତତ୍ତ୍ୱ ମୁତାବକ ପରମାତ୍ମା ପରଂବ୍ରହ୍ମଙ୍କ ଭିତରେ ଏହି ମାତୃଶକ୍ତି ହିଁ ବ୍ରହ୍ମଶକ୍ତି ଭାବେ ମହାସରସ୍ୱତୀ ରୂପରେ ବିଦ୍ୟମାନ ହୋଇଥାନ୍ତି । କେବଳ ସେତିକି ନୁହେଁ, ପରଂବ୍ରହ୍ମଙ୍କ ଭିତରେ ସେ ଶିବଶକ୍ତି ଭାବେ ପାର୍ବତୀ ରୂପରେ ଓ ବିଷ୍ଣୁ ଶକ୍ତି ଭାବେ ମହାଲକ୍ଷ୍ମୀଙ୍କ





ରୂପରେ ମଧ ପ୍ରକଟିତ ହୋଇଥାନ୍ତି । ଏହା ହିଁ ସେହି ପରାଶକ୍ତିଙ୍କ ଅଦ୍‌ଭୂତ ବିଶ୍ୱ ଲୀଳା ଅଟେ ।

ପୁନଶ୍ଚ ତନ୍ତ୍ରଶାସ୍ତ୍ର ମୁତାବକ ସର୍ବଶକ୍ତି ସ୍ୱରୂପିଣୀ ମହାମାୟାଙ୍କର ଦୁଇଟି ରୂପ ରହିଛି । ତାଙ୍କର ଗୋଟିଏ ରୂପକୁ ବିଶ୍ୱମୋହିନୀ ରୂପ କୁହାଯାଏ । ଏହା ଆବରଣୀ ମାୟା ଦ୍ୱାରା ପରିବ୍ୟାପ୍ତ ଅଟେ । ତାଙ୍କ ଅନ୍ୟରୂପଟି ମୁକ୍ତିଦାୟିନୀ ରୂପ ଅଟେ । ତାଙ୍କ ପ୍ରଥମ ରୂପର ଅଲୌକିକ ମାୟାବିନୀ ଶକ୍ତି ଦ୍ୱାରା ସେ ସମଗ୍ର ସଂସାରକୁ ମାୟାଜାଲରେ ବାନ୍ଧି ରଖିଛନ୍ତି । ତନ୍ତ୍ରଶାସ୍ତ୍ର ମୁତାବକ ଏହି ଭାବରେ ପରିବ୍ୟାପ୍ତ ହୋଇଥିବା ମହାମାୟାଙ୍କୁ ଅବିଦ୍ୟା ଶକ୍ତି ବୋଲି କୁହାଯାଏ । ଏହା ଆଧାତ୍ମିକ ଭାବ ଓ ଜ୍ଞାନର ପ୍ରତିକୂଳ ଅଟେ । କିନ୍ତୁ ସେ ତାଙ୍କର ମୁକ୍ତିଦାୟିନୀ ରୂପରେ ମାୟାଜାଲରେ ବାନ୍ଧି ହୋଇ ରହିଥିବା ଜୀବ ସମୂହଙ୍କୁ ପରମ ମୁକ୍ତି ପ୍ରଦାନ କରିଥାନ୍ତି । ଏଣୁ ଏହି ଭାବରେ ତାଙ୍କୁ ପରମ ମୁକ୍ତି ପ୍ରଦାୟିନୀ ରୂପେ ଆରାଧନା କରାଯାଏ । ଏହି ରୂପରେ ଦେବୀମାତାଙ୍କୁ ବିଦ୍ୟାମାୟା ବୋଲି କୁହାଯାଇଥାଏ । ଏଣୁ ଦେବୀମାତା ଉଭୟ ବିଦ୍ୟାମାୟା ଓ ଅବିଦ୍ୟା ମାୟାର ଅଦ୍‌ଭୁତ ଯୁଗ୍ମଶକ୍ତି ଅଟନ୍ତି । ସେଥିପାଇଁ ତାଙ୍କୁ ଅନିର୍ବଚନୀୟା ବୋଲି କୁହାଯାଇଥାଏ । ଏଣୁ ଦେବୀମାତା ଏକ ଅଦ୍ୱିତୀୟା ରହସ୍ୟମୟୀ ଶକ୍ତି ଅଟନ୍ତି ।

ଭାରତର ବିଭିନ୍ନ ସ୍ଥାନରେ ମହାମାୟାଙ୍କୁ କାଳୀ ରୂପରେ ପୂଜା କରାଯାଇଥାଏ । ଯେଉଁଠି କାଳୀମାତାଙ୍କୁ ଦେବୀଶକ୍ତି ରୂପେ ପୂଜା କରାଯାଏ, ସେଇଠି କାଳୀ ମୂର୍ତ୍ତିଙ୍କୁ ଦେଖିଲେ ଆମ ମନ ଭିତରେ ଅତିଶୟ ଭୟଭାବ ଜାଗ୍ରତ ହୋଇଥାଏ । ବସ୍ତୁତଃ ଆମର ଧାରଣା ମୁତାବକ କାଳୀଙ୍କ ଉପାସକଙ୍କୁ ଆମେ ତାମସିକ ଆଖ୍ୟା ଦେଇଥାଉ । କାଳୀଙ୍କୁ ଆମେ ଏକ ଭୟଙ୍କର ଦେବୀଙ୍କ ପ୍ରତୀକ ବୋଲି କହିଥାଉ । ଦକ୍ଷିଣ ଭାରତରେ କାଳୀ ମାତାଙ୍କୁ ପ୍ରାୟତଃ କେହି ବି ଘରେ ପୂଜା କରନ୍ତିନି । ସେ ଦେଖିବାକୁ କୃଷ୍ଣବର୍ଣ୍ଣା, ରକ୍ତବର୍ଣ୍ଣା, ମୁଣ୍ଡମାଳା ବିଭୂଷିତା ନୁହନ୍ତି କି ? କିନ୍ତୁ ପ୍ରକୃତରେ ସେ ତାହା ନୁହନ୍ତି । ବାସ୍ତବରେ ସେ ପ୍ରେମମୟୀ, କରୁଣାମୟୀ ଅଟନ୍ତି । କାଳୀମାତାଙ୍କୁ ଭୟଙ୍କର ରୂପରେ ଆରାଧନା କରିବାର ନିର୍ଦ୍ଦିଷ୍ଟ ଦାର୍ଶନିକ କାରଣ ରହିଛି । ଏହି ଭାବ ସମସ୍ତେ ଉପଲବ୍ଧି କରିବା ନିତାନ୍ତ ଆବଶ୍ୟକ ।

ଏହି ତତ୍ତ୍ୱକୁ ପ୍ରାଞ୍ଜଳ ଭାବେ ବୁଝାଇବା ପାଇଁ ଗୋଟିଏ ଛୋଟାଏ ଉଦାହରଣ ଦିଆଯାଇପାରେ ।

ସ୍ୱାମୀ ବିବେକାନନ୍ଦଙ୍କ ବିଷୟରେ ପ୍ରାୟତଃ ସମସ୍ତଙ୍କର କିଛି ନା କିଛି ଧାରଣା ଥିବ । ସେ ରାମକୃଷ୍ଣ ପରମହଂସଙ୍କର ମୁଖ୍ୟଶିଷ୍ୟ ଥିଲେ । ତାଙ୍କ ପିଲାଦିନର ନାମ ଥିଲା ନରେନ୍ । ସେ ଜଣେ ଉଚ୍ଚକୋଟୀର ବାଳକ ଥିଲେ । ସେ ପାଠପଢୁ ଥିବା ବେଳେ ତାଙ୍କ ପିତାଙ୍କ ମୃତ୍ୟୁବରଣ ହୋଇଥିଲା । ନରେନ୍‌ଙ୍କ ପରିବାର ଗୋଟିଏ ବଡ଼ ପରିବାର ଥିଲା । ସେତେବେଳେ ତାଙ୍କ ଘରେ କୌରସି ଭାଇ ବି ରୋଜଗାରକ୍ଷମ ନଥିଲେ । ଏଣୁ ଅର୍ଥାଭାବ ଯୋଗୁଁ ସେମାନଙ୍କ ଚଳିବାରେ ଅନେକ ଅସୁବିଧା ସୃଷ୍ଟି ହୋଇଥିଲା । ଘର କେମିତି ଚଳିବ, ଏହି କଥା ଭାବି ଭାବି ନରେନ୍ ଅତିଶୟ ବିବ୍ରତ ହୋଇ ପଡ଼ିଥିଲେ । ଚଳିବା ପାଇଁ ତାଙ୍କର ଅନ୍ୟ କୌଣସି ପନ୍ଥା ନଥିଲା । ଦିନେ ସେ ହତୋତ୍ସାହରେ ଏଣେତେଣେ ବୁଲୁଥିବା ବେଳେ ସେ ଖବର ପାଇଲେ ଯେ, ଦକ୍ଷିଣେଶ୍ୱର ମନ୍ଦିରର ପୂଜାରୀ, ରାମକୃଷ୍ଣ ମହାରାଜ ଯଦି ଦୟା କରନ୍ତି, ତାହା ହେଲେ ତାଙ୍କ ପରିବାରର କୌଣସି ଦୁଃଖ ରହିବନି । ତାଙ୍କ ଘରର ସବୁ ସମସ୍ୟା ଆପେ ଆପେ ସମାଧାନ ହୋଇଯିବ । ଏହା ଶୁଣି ଶେଷରେ ଦିନେ ସେ ରାମକୃଷ୍ଣ ମହାରାଜାଙ୍କ ପାଖକୁ ଯାଇ ତାଙ୍କୁ ଦକ୍ଷିଣେଶ୍ୱର ମନ୍ଦିରରେ ସାକ୍ଷାତ କରିଥିଲେ । ରାମକୃଷ୍ଣ ନରେନ୍‌ଙ୍କୁ ଦେଖି ଆନନ୍ଦରେ ଆତ୍ମହରା ହୋଇ ପଡ଼ିଥିଲେ । ସେ ନେରେନ୍‌ଙ୍କୁ ଦେଖି କହିଥିଲେ, ତୁମେ ଆସିଗଲ ନରେନ୍ । ସତେ ଯେମିତି ଅନେକ ଦିନ ଧରି ସେ ତାଙ୍କୁ ପ୍ରତୀକ୍ଷା କରି ବସିଥିଲେ । କିନ୍ତୁ ନରେନ୍ କିଛି ବୁଝିପାରି ନଥିଲେ । ସେ ତ କେବଳ ଗୋଟିଏ ସମସ୍ୟାକୁ ନେଇ ରାମକୃଷ୍ଣଙ୍କ ପାଖକୁ ଆସିଥିଲେ । ସେହି ଗୋଟିଏ ସମସ୍ୟା ହିଁ ତାଙ୍କ ଆଖି ଆଗରେ ନାଚୁଥିଲା । ସବୁ ତ ସେହି ମା'ଙ୍କ ମାୟା । ସେ କେମିତି ଜାଣିବେ ତାଙ୍କ ଭବିଷ୍ୟତ ପାଇଁ କ'ଣ ସଂଚିତ ହୋଇ ରହିଥିଲା । ନରେନ୍ ପ୍ରଥମେ ରାମକୃଷ୍ଣଙ୍କୁ ଦେଖି ସମ୍ଭାଳି ପାରି ନଥିଲେ - ସେ ତାଙ୍କୁ ଅନୁନୟ ବିନୟରେ କହିଲେ, ହେ ମହାଶୟ, ଆମେ ବହୁତ ଅସୁବିଧାରେ ପଡ଼ିଛୁ । ଆମ ପିତା ଇହଧାମ ଛାଡ଼ି ଚାଲିଯିବା ପରେ ଆମର ଚଳିବାରେ ଭାରି ଅସୁବିଧା ହେଉଛି । ଶୁଣିଲି ଆପଣ ସବୁକିଛି ସମାଧାନ କରିପାରନ୍ତି । ଏଣୁ ଶେଷରେ ଏହାର ସମାଧାନ ପାଇଁ ମୁଁ ଆପଣଙ୍କ ନିକଟକୁ ଆସିଛି । ରାମକୃଷ୍ଣ ସେତେବେଳେ ସବୁକିଛି ଜାଣି ପାରିଥିଲେ । ଗମ୍ଭୀର ଭାବରେ ସେ କହିଲେ, ଠିକ୍ ଅଛି । ତୁମର ଯାହା କହିବାର ଅଛି ମା'ଙ୍କ ପାଖକୁ ଯାଇ କୁହ । ସେ ତୁମର ସବୁକଥା ଶୁଣିବେ । ଶୋକାତୁର ନରେନ୍ କିଛି ବୁଝି ପାରିନଥିଲେ । ସେ ଭିତରକୁ ଯାଇ ମା' କାଳୀଙ୍କୁ ଦର୍ଶନ କରିଥିଲେ । କାଳୀମାତା, ଯାହାଙ୍କୁ ଆମେ ଭୟଙ୍କର ଦେବୀ ବୋଲି କହିଥାଉ, ଯିଏ ମୁଣ୍ଡମାଳାରେ ବିଭୂଷିତା, ଯିଏ କୃଷ୍ଣବର୍ଣ୍ଣା, ଯିଏ ରକ୍ତବର୍ଣ୍ଣା, ଯାହାଙ୍କ ଲୋଳ ଜିହ୍ୱା ବାହାରକୁ ନାଲି ଟହ ଟହ ହୋଇ ଦେଖା ଯାଉଥିଲା, ତାଙ୍କୁ ଦର୍ଶନ କରିବା ପାଇଁ ସେଦିନ ନରେନ୍ ମନ୍ଦିର ଭିତରକୁ ଯାଇଥିଲେ । ଛିନ୍ନମସ୍ତା କଟୀ ପରିବୃତା ରୁଧିରାପ୍ଲୁତ ଖଡ଼୍‌ଗ ହସ୍ତା ମାତାକାଳୀଙ୍କୁ ସେଦିନ ସେ ଗୁହାରି କରିବାକୁ ଯାଇଥିଲେ । କିନ୍ତୁ କାଳୀଙ୍କୁ ସେ ମାତୃ ରୂପରେ ଧ୍ୟାନ କରିଥିଲେ । ମା' ମୁଁ ଦୁର୍ଜୟ ମନର ଶୀକାର ହୋଇଥିବା ଯୋଗୁଁ ଅଧୀର ହୋଇ ପଡ଼ିଛି, ଅହଂକାର ଓ ଇନ୍ଦ୍ରିୟ ଲାଳସାର ଦାସ ହୋଇପଡ଼ିଛି, କାମନା, ବାସନାର ମାୟାରେ ପଡ଼ି ମୁଁ ଅନବରତ ଯୁଦ୍ଧ କରିଚାଲିଛି । ମୋତେ ରକ୍ଷା କର ମା' ।

ମା' ଶେଷରେ ତାଙ୍କୁ ଦେଖା ଦେଇଥିଲେ । ନରେନ୍ ମା'ଙ୍କୁ ଦେଖି ଆନନ୍ଦରେ ଅଭିଭୂତ ହୋଇ ପଡ଼ିଥିଲେ । ମା'ଙ୍କ ସେତେବେଳର ରୂପ ଥିଲା ବିଦ୍ୟାମାୟାର ଚିତ୍ତାକର୍ଷକ ରୂପ ।

ମାଗ ନରେନ୍ । କ'ଣ ତୁମର ଦରକାର ମାଗ । କାଳୀ ତାଙ୍କ ସମ୍ମୁଖରେ ଉଭା ହୋଇ ତାଙ୍କୁ ଏମିତି ଆଶ୍ୱାସନା ଦେଇଥିଲେ ।

ନରେନ୍ ସେତିକିବେଳେ ସାଂସାରିକ ଜଂଜାଳ କଥା ସବୁ ଭୁଲି ଯାଇଥିଲେ । ସେ କେବଳ ଜ୍ଞାନ ଓ ଭକ୍ତି ପ୍ରଦାନ କରିବା ପାଇଁ ମା'ଙ୍କୁ ଗୁହାରି କରିଥିଲେ । ଏମିତି ଭାବ ବିନିମୟରେ ମା' ତଥାସ୍ତୁ କହି ସେଠାରୁ ଅନ୍ତର୍ଦ୍ଧାନ ହୋଇଯାଇଥିଲେ । କାହିଁ, ମା'ଙ୍କ ରୂପତ ନରେନ୍‌ଙ୍କୁ ଆତଙ୍କିତ କରିନଥିଲା ।

ନରେନ୍ ଫେରି ରାମକୃଷ୍ଣଙ୍କୁ ସବୁକଥା କହିଥିଲେ । ସେ ହସି ହସି ନରେନ୍‌କୁ ପଚାରିଲେ, 'କ'ଣ ବାବା, ମା'ଙ୍କୁ କ'ଣ ମାଗିଲ ?' ନରେନ୍ ରାମକୃଷ୍ଣଙ୍କୁ ବଲବଲ କରି ଦେଖୁଥାନ୍ତି । ନରେନ୍ ଗୋଟି ଗୋଟି କରି ସବୁ କଥା କହିଗଲେ । ରାମକୃଷ୍ଣ କହିଲେ ନା, ଆଉ ଥରେ ଯାଅ । ତୁମର ଯାହା ନିତାନ୍ତ ଆବଶ୍ୟକ, ତାହା ହିଁ ମା'ଙ୍କୁ ମାଗିବ ।

ନରେନ୍ ଆଉ ଥରେ ଯାଇ ମା'ଙ୍କୁ ପ୍ରାର୍ଥନା କରିଥିଲେ । ମା' ଆଉଥରେ ପୂର୍ବବତ୍ ସେହି ରୂପରେ ହିଁ ଦେଖା ଦେଇଥିଲେ । ଏଇଥର ବି ସେ ମା'ଙ୍କଠାରେ ଜ୍ଞାନ ଓ ଭକ୍ତି ପାଇଁ ଭିକ୍ଷା କରିଥିଲେ ।

ମା'ଙ୍କଠାରୁ ଫେରି ଶେଷରେ ସେ ରାମକୃଷ୍ଣ ପରମହଂସଙ୍କୁ କହିଲେ, ଏତେବଡ଼ ରାଜରାଜେଶ୍ୱରୀଙ୍କୁ ମୋର ଅର୍ଥ ଆବଶ୍ୟକ ବୋଲି କହିବା କେତେବଡ଼ ଛୋଟ କଥାଟିଏ ହୋଇଥାନ୍ତା କହିଲେ, ଠାକୁର ବାବା । ନାଁ, ମୋର କିଛି ଦରକାର ନାହିଁ । ମୁଁ ଯାହା ମାଗିଛି ଠିକ୍ ମାଗିଛି ।

ରାମକୃଷ୍ଣ କହିଲେ, ବାଃରେ ନରେନ୍ ବାଃ । ତୁମେ ଯାହା ମାଗିବା କଥା, ଠିକ୍ ମାଗିଛ । ଏଥର ଘରକୁ ଫେରିଯାଅ । ତୁମେ ଯାହାକିଛି ପାଇବା କଥା ସବୁ ପାଇ ଯାଇଛ । ତୁମର ଆଉ ଦୁଃଖ ରହିବ ନାହିଁ ।

ମା' କଦାପି ଭୀଷଣ ଓ ଭୟଙ୍କର ପ୍ରକୃତିର ହୋଇ ନପାରନ୍ତି । ସେ କରୁଣାମୟୀ, ସେ ପ୍ରେମମୟୀ, ସେ ଆନନ୍ଦ ଦାତ୍ରୀ । ସେ ସଚ୍ଚିଦାନନ୍ଦ ଭଗବାନଙ୍କ ଆହ୍ଲାଦିନୀ ଶକ୍ତି ଅଟନ୍ତି ।

ସ୍ୱାମୀ ଚିଦାନନ୍ଦ ସରସ୍ୱତୀ ମହାରାଜ ଗୋଟିଏ ସୁନ୍ଦର ଉଦାହରଣ ମାଧ୍ୟମରେ ଏଇ ଉକ୍ତିଟିକୁ ପ୍ରାଞ୍ଜଳ ଭାବେ ବର୍ଣ୍ଣନା କରିଛନ୍ତି । ସେ କହିଛନ୍ତି, ଯେତେବେଳେ ଆମକୁ ଜ୍ୱର ହୁଏ, ଆମେ ବିଭିନ୍ନ ପ୍ରକାରର ଆଣ୍ଟିବାୟୋଟିକ୍ ଔଷଧ ଡାକ୍ତରଙ୍କ ପରାମର୍ଶ କ୍ରମେ ଗ୍ରହଣ କରିଥାଉ । ଆଣ୍ଟିବାୟୋଟିକ୍ ଘୋର ମାରାତ୍ମକ ଔଷଧ ଅଟେ । ଏକରେ ଠିକ୍ ଭାବରେ ଗ୍ରହଣ ନକଲେ ଏହା ଶରୀର ଭିତରେ ଅନେକ କ୍ଷତି ଘଟାଇଥାଏ । ଦୁଇରେ ଠିକ୍‌ଭାବେ ସେବନ କଲେ ବି ଏହା ଶରୀର ଭିତରକୁ ଯାଇ ଶରୀର ଭିତରେ ଥିବା କୀଟାଣୁମାନଙ୍କୁ ସମୂଳେ ଧ୍ୱଂସ କରିଥାଏ । ଯେଉଁ ବାଟରେ ହେଉ ଧ୍ୱଂସ କରିବା ହିଁ ଏହାର ମୂଳ ଧର୍ମ ଅଟେ । ତେବେ ଏହାକୁ ସଠିକ୍ ପ୍ରଣାଳୀରେ ସେବନ କଲେ ଏହା ଆମର ଅତ୍ୟନ୍ତ ସହାୟକ ହୋଇଥାଏ ଏବଂ ଆମେ ରୋଗମୁକ୍ତ ହୋଇଥାଉ । ଏହାର ଧ୍ୱଂସକାରୀ ଗୁଣ ସତ୍ତ୍ୱେ ଏହାକୁ ଡାକ୍ତରମାନେ ଜୀବନ ପ୍ରଦାୟିନୀ ମହୋଷଧୀ ବୋଲି କହିଥାନ୍ତି । ଯଦି ଏହି ଔଷଧକୁ ଧ୍ୱଂସକାରୀ ଔଷଧ ବୋଲି କହିବା, ତାହାହେଲେ ମା' କାଳୀଙ୍କୁ ବି ଧ୍ୱଂସକାରୀ ଦେବୀ ବୋଲି କୁହାଯାଇପାରେ, ନଚେତ୍ ନୁହେଁ । ଏଣୁ ନିର୍ଦ୍ଦିଷ୍ଟ ଭାବେ କହିବାକୁ ଗଲେ, ପାଳନ ପାଇ ହିଁ ମାତା ଚିର ସଂହାର କରିଥାନ୍ତି । ତେଣୁ ମା'ଙ୍କୁ ପାଳନକର୍ତ୍ତ୍ରୀ ବୋଲି କହିଲେ କୌଣସି ଭୁଲ ହେବନି । ଯେଉଁ ମାତା ସର୍ବମୟୀକର୍ତ୍ତ୍ରୀ ଅଟନ୍ତି ସେହି ମାତା ଧ୍ୱଂସ ମାଧ୍ୟମରେ ହିଁ ଜ୍ଞାନ ଓ ଭକ୍ତି ପ୍ରଦାନ କରିଥାନ୍ତି । ତେଣୁ କହିବାକୁ ଗଲେ ମହାମାୟୀ କାଳୀ ଆମକୁ ଏମିତି ଭାବରେ ସଂସାର ଜଂଜାଳରୁ ଉଦ୍ଧାର କରିଥାନ୍ତି । ଏହି ଭାବର କଳ୍ପନା କେବଳ ଆମ ଧର୍ମରେ ନୁହେଁ, ବିଶ୍ୱର ଅନ୍ୟ ଧର୍ମମାନଙ୍କରେ ମଧ୍ୟ ପରିକଳ୍ପିତ ହୋଇଛି । ଆମ ଧର୍ମରେ ଆମେ ଯାହାକୁ ଅବିଦ୍ୟା ବୋଲି କହିଥାଉ, ଖ୍ରୀଷ୍ଟ ଧର୍ମରେ ତାକୁ ସୈତାନ୍ ବୋଲି ଗ୍ରହଣ କରାଯାଇଥାଏ । ଠିକ୍ ସେହିପରି ପାର୍ସି ଧର୍ମରେ ତାକୁ ଆରମାନ୍ ଓ ଆହୁଦା ମାଜ୍‌ଦା ବୋଲି କୁହାଯାଇଥାଏ । ହିନ୍ଦୁ ଧର୍ମରେ ଆମେ ଯାହାକୁ ମାୟା ବା ଅଜ୍ଞାନ ବୋଲି କହିଥାଉ, ବେଦାନ୍ତରେ ତାକୁ ଅନାତ୍ମା ବୋଲି ବର୍ଣ୍ଣନା କରାଯାଇଛି । ଏହା ସପ୍ତଶତୀର ମୁଖ୍ୟ ବିଷୟବସ୍ତୁ ଅଟେ ।

ସପ୍ତଶତୀରୁ ଆମେ ଅନେକ କିଛି ଶିକ୍ଷା ଲାଭ କରିବାର ଅଛି । ପ୍ରଥମ କଥା ହେଲା ଦିବ୍ୟ ଚେତନା ଲାଭ କରିବାକୁ ହେଲେ ଆମକୁ ଅନାବଶ୍ୟକ ଭ୍ରାନ୍ତ ଧାରଣାଠାରୁ ଦୂରରେ ରହିବାକୁ ପଡ଼ିବ । ସପ୍ତଶତୀ ତିନୋଟି ଭାଗରେ ବିଭକ୍ତ । ଏହି ପୁସ୍ତକର ପ୍ରଥମ ଭାଗରେ ମଧୁ କୈଟଭ ବଧ କଥା ବର୍ଣ୍ଣନା କରାଯାଇଛି । ଏହାର ଦ୍ୱିତୀୟ ଭାଗରେ ମହିଷାସୁର ମର୍ଦ୍ଦନ କଥା ବ୍ୟାଖ୍ୟା କରାଯାଇଛି । ସେହିପରି ତୃତୀୟ ଭାଗରେ ଶୁମ୍ଭ-ନିଶୁମ୍ଭ ଭାତୃଦ୍ୱୟଙ୍କ ବଧ କଥା ଆଲୋଚନା କରାଯାଇଛି । ଏହି ଚରିତ୍ର ଯେ କେହି ବ୍ୟକ୍ତି ହୁଅନ୍ତୁନା କାହିଁକି, ଏମାନେ ନୀଚ ପ୍ରକୃତି ସାଙ୍କେତିକ ଉକ୍ତି ଅଟନ୍ତି । ବୈଶିଷ୍ଟ୍ୟ ସୂଚକ ଅଭିପ୍ରାୟ ଦୃଷ୍ଟିରୁ ଆଲୋଚନା କଲେ, ପ୍ରତିଭାତ ହେବ ଯେ ଜୀବ ନୀଚ ସ୍ତରରୁ ଊର୍ଦ୍ଧ୍ୱକୁ ଉଠିବାକୁ ହେଲେ ପ୍ରଥମେ ନିଜର ନୀଚ ପ୍ରକୃତିକୁ ବିନାଶ କରିବାକୁ ପଡ଼ିବ । ଏହା ପ୍ରଥମ ପର୍ଯ୍ୟାୟ ଅଭିପ୍ରାୟ ଅଟେ । ଦ୍ୱିତୀୟ ପର୍ଯ୍ୟାୟରେ ବର୍ଣ୍ଣନା କରାଯାଇଥିବା ମହିଷାସୁରର କାର୍ଯ୍ୟାବଳୀ ରଜୋଗୁଣର ପ୍ରତୀକ ଅଟେ । ବସ୍ତୁତଃ ରଜୋଗୁଣ ବିଶେଷ ସମୃଦ୍ଧିର




କାରଣ ହୋଇଥିଲେ ହେଁ ଏହାର ଅତ୍ୟଧିକ ସାଂସାରିକ ପ୍ରୟୋଗ କେବଳ ନିଜ ପାଇଁ ନୁହେଁ, ସାରା ସମାଜ ପାଇଁ ବି ବିନାଶର କାରଣ ହୋଇଥାଏ । ଏଣୁ ଆଧ୍ୟାତ୍ମିକ ମାର୍ଗରେ ଅଗ୍ରସର ହେବାକୁ ହେଲେ ରଜୋଗୁଣକୁ ଈଶ୍ୱରାଭିମୁଖୀ କରିବାକୁ ପଡ଼ିବ । ଏହିଭାବ ମହିଷାସୁର ମର୍ଦ୍ଦନର ସାଂସାରିକ ବ୍ୟାଖ୍ୟା ଅଟେ । ତୃତୀୟ ପର୍ଯ୍ୟାୟରେ ବର୍ଣ୍ଣିତ ଶୁମ୍ଭ-ନିଶୁମ୍ଭ ମଣିଷ ଜୀବନର ଅତ୍ୟଧିକ ଅହଂଭାବର ପ୍ରତୀକ ଅଟନ୍ତି । ଅହଂଭାବ ମାନବ ଜୀବନରେ ସାମୂହିକ ଉନ୍ନତିର ବିନାଶର କାରଣ ହୋଇଥାଏ । ଏହି ଅବିଦ୍ୟା ଗୁଣ ହିଁ ଦିବ୍ୟ ଚୈତନ୍ୟ ଭାବରେ ଉପନୀତ ହେବାପାଇଁ ସବୁ ପ୍ରକାର ଅନ୍ତରାୟ ସୃଷ୍ଟି କରିଥାଏ । ଏଣୁ 'ମୁଁ' ଭାବକୁ ବିନାଶ କରିବା ପ୍ରତ୍ୟେକ ଜୀବର ପ୍ରଧାନ କର୍ତ୍ତବ୍ୟ ଅଟେ ।

ଏହି ଦୃଷ୍ଟିରୁ ବିଚାର କଲେ ଦେବୀ ପୀଠରେ ସମାହିତ କରାଯାଉଥିବା ବଳିପ୍ରଥା ହୀନମନ୍ୟତାର ପ୍ରତୀକ ନୁହେଁ କି ? ଏହା ମଣିଷର ନୀଚ ପ୍ରବୃତ୍ତି ବା ଆସୁରୀ ପ୍ରବୃତ୍ତି ନୁହେଁ କି ? ଆତ୍ମ ସଂସ୍କାରର ଅବକ୍ଷୟ ଘଟିଲେ ପଶୁତ୍ୱର ଭାବ ଜାଗ୍ରତ ହୋଇଥାଏ । ବଳିପ୍ରଥାର ପ୍ରକୃତ ଅର୍ଥ ହେଉଛି ନିଜର ପଶୁ ପ୍ରବୃତ୍ତିକୁ ବଳି ଦେବା । ମଣିଷ ଭିତରେ ଥିବା ବ୍ୟାଘ୍ରର ହିଂସ୍ରତାକୁ ବଳି ଦେବା । ଶୃଗାଳର ଧୂର୍ତ୍ତତାକୁ ବଳି ଦେବା, ସର୍ପର ବିଷାକ୍ତତାକୁ ବଳି ଦେବା, କୌଣସି ପଶୁକୁ ବଳି ଦେବା ନୁହେଁ ।

ଆବର୍ତ୍ତନର ଶିଢ଼ିରେ ମଣିଷ ବୁଦ୍ଧି ଓ ବିବେକର ଅଧିକାରୀ ହୋଇ ସବୁଠାରୁ ଉଚ୍ଚକୋଟୀର ଜୀବ ରୂପେ ପରିଗଣିତ ହୋଇଥିବା ସତ୍ତ୍ୱେ ସେ ଏପରି ପଶୁତ୍ୱର ଲୀଳା ସଂପାଦନ କରୁଛି କାହିଁକି ? ସାମାଜିକ ନ୍ୟାୟ ଦୃଷ୍ଟିରୁ ଏହା ଏକ ଗୁରୁତର ପ୍ରଶ୍ନ ଅଟେ । ଏହାର ଉତ୍ତର ହିଁ ମାତୃ ତତ୍ତ୍ୱର ଯଥାର୍ଥ ଆଧ୍ୟାତ୍ମିକ ସମାଧାନ ଅଟେ । ସନାତନ ସଂସ୍କୃତିରେ ଏହି ତତ୍ତ୍ୱକୁ ବିଶେଷ ଧ୍ୟାନର ସହ ବର୍ଣ୍ଣନା କରାଯାଇଛି ।

ମଣିଷର ପୂର୍ବ ଜନ୍ମର ସିଦ୍ଧାନ୍ତ ବିଷୟକୁ ନେଇ ବର୍ଣ୍ଣନା କରାଯାଇଛି ଯେ ଜୀବ ମଣିଷ ଶରୀର ପ୍ରାପ୍ତ କରିବା ପର୍ଯ୍ୟନ୍ତ ଅସଂଖ୍ୟ ଯୋନିରେ ଜନ୍ମ ଗ୍ରହଣ କରିଥାଏ । ଗୋଟିଏ ଜନ୍ମ ସାରି ଅନ୍ୟ ଗୋଟିଏ ଜନ୍ମ ଗ୍ରହଣ କରିବା ବେଳେ ଜୀବ ତା ଚେତନାରେ ପୂର୍ବ ଜନ୍ମର ବିଶେଷ ଗୁଣଗୁଡ଼ିକୁ ସଂସ୍କାର ରୂପେ ଗ୍ରହଣ କରିଥାଏ । ଏହି ଭାବରେ ଜୀବ ଯେତେବେଳେ ମାନବ ଶରୀର ଗ୍ରହଣ କରେ, ସେତେବେଳେ ସେ ତା'ର ସମସ୍ତ ନିମ୍ନ ଜନ୍ମମାନଙ୍କ ବିଶେଷ ଗୁଣଗୁଡ଼ିକୁ ନିଜ ଚେତନାରେ ଆପେ ଆପେ ଗ୍ରହଣ କରିଥାଏ । ଏଣୁ ତା' ଚେତନାରେ ପଶୁତ୍ୱର ଗୁଣଗୁଡ଼ିକ ବିଶେଷ ଭାବେ ପରିଦୃଷ୍ଟ ହୋଇଥାଏ । ଏଥିପାଇଁ ମଣିଷ ଶରୀର ଲାଭ କରିବା ପରେ ମଧ୍ୟ ତା'ର ସ୍ୱାଭାବିକ ବୁଦ୍ଧି ବିବେକ ତଥା ତା' ବିଚାର ଶକ୍ତି ସହିତ ତା' ପୂର୍ବ ଜନ୍ମର ଅନେକ ସଂସ୍କାର ବା ପ୍ରବୃତ୍ତି ତା' ସ୍ୱଭାବରେ ଲାଗି ରହିଥାଏ । ଏଣୁ ଅନେକ ସମୟରେ ତା' ନିତିଦିନିଆ ଜୀବନରେ ପଶୁମାନଙ୍କଠାରେ ଅନ୍ତର୍ନିହିତ ଥିବା ଗୁଣଗୁଡ଼ିକ ତା'ର ଆଚାର ବ୍ୟବହାରରେ ପରିଦୃଷ୍ଟ ହୋଇଥାଏ । ତେଣୁ ମନୁଷ୍ୟକୁ ବୁଦ୍ଧି, ବିବେକ ଓ ବିଚାର ଶକ୍ତି ସଂପନ୍ନ ପଶୁ ବୋଲି କୁହାଯାଇଥାଏ । ଏହା ଫଳରେ ସେ କେତେବେଳେ ବ୍ୟାଘ୍ର ପରି ହିଂସ୍ର ହୋଇଥାଏ ତ କେତେବେଳେ ଉନ୍ନତ ଅବସ୍ଥାକୁ ଉଠି ଦୟା, କରୁଣା ଓ କ୍ଷମାଶୀଳ ଭାବକୁ ପ୍ରଦର୍ଶନ କରିଥାଏ । ସେ ଯାହା ହେଉ ନା କାହିଁକି, ମାନବ ଜୀବନ ଦିବ୍ୟଭାବ ସଂପନ୍ନ ହୋଇଥିବାରୁ ଦିବ୍ୟତା ହିଁ ତା'ର ମୁଖ୍ୟ ସ୍ୱଭାବ ଅଟେ । ମଣିଷ ସେହି ମାତୃଶକ୍ତିଙ୍କ ମାୟାର ଆଭରଣ ଭିତରେ ରହି ଜୀବନ ନିର୍ବାହ କରୁଥିବାରୁ, ସେ ତା'ର ଦିବ୍ୟଭାବକୁ ଭୁଲି ଯାଇ ପରିପ୍ରକାଶ କରିପାରେ ନି ।

ଏଣୁ ମା'ଙ୍କୁ ବିଦ୍ୟା-ମାତା ରୂପେ ଆରାଧନା କରି ଅବିଦ୍ୟା ଗୁଣଗୁଡ଼ିକୁ ବିନାଶ କରିବା ଦେବୀ ପୂଜାର ମୂଳ ଲକ୍ଷ୍ୟ ଅଟେ । ଏହି ଉଦ୍ଦେଶ୍ୟକୁ ସଫଳ କରିବାକୁ ହେଲେ, ସାଧକ ପ୍ରଥମେ ନିଜ ମନକୁ ବିଶ୍ଳେଷଣ କରିବାକୁ ପଡ଼ିବ । ଏଥିପାଇଁ ତିତିକ୍ଷା ନିତାନ୍ତ ଆବଶ୍ୟକ । ଯାହା ଆଧ୍ୟାତ୍ମିକ ଭାବର ଅବାଞ୍ଛନୀୟ, ତାକୁ ତ୍ୟାଗ କରିବା ପାଇଁ ଯେଉଁ ଶକ୍ତି ଆବଶ୍ୟକ, ତାହା ତିତିକ୍ଷାରୁ ଆସିଥାଏ । ଏଣୁ ନବରାତ୍ର ପୂଜା ସମୟରେ ଅଯଥା ଆଡ଼ମ୍ବରରେ ନ-ମାତି ଆମକୁ ତିତିକ୍ଷାର ସାଧନା କରିବାକୁ ପଡ଼ିବ । ନିଜକୁ ଭଲ ଭାବେ ଆତ୍ମ ନିରୀକ୍ଷଣ କରିବାକୁ ପଡ଼ିବ । ଏଥିପାଇଁ ନବରାତ୍ର ସମୟରେ ଦେବୀମାତାକୁ ବିଭିନ୍ନ ରୂପରେ ପୂଜା କରାଯାଇଥାଏ । ସେ ମାତୃଶକ୍ତି କାଳୀ ହୁଅନ୍ତୁ ବା ମହାଲକ୍ଷ୍ମୀ ହୁଅନ୍ତୁ ବା ମହାସରସ୍ୱତୀ ହୁଅନ୍ତୁ, ସପ୍ତଶତୀ ଶାସ୍ତ୍ର ଦୃଷ୍ଟିରୁ ମା'ଙ୍କ ବିଭିନ୍ନ ରୂପ ମଧ୍ୟରେ କୌଣସି ପାର୍ଥକ୍ୟ ନଥାଏ । କାଳୀମାତା ପ୍ରଳୟ କର୍ତ୍ତୀ ରୂପେ ପୂଜା ପାଉଥିବାବେଳେ, ମହାଲକ୍ଷ୍ମୀ ପାଳନ କର୍ତ୍ତୀ ରୂପରେ ପୂଜା ପାଇଥାନ୍ତି । ସେହିପରି ଏହି ପୂଜାବେଳେ ମହାସରସ୍ୱତୀଙ୍କୁ ବିଶ୍ୱର ଜ୍ଞାନ ପ୍ରଦାୟିନୀ ଓ ମୋକ୍ଷ୍ୟଦାତ୍ତ୍ରୀ ଶକ୍ତି ରୂପେ ପୂଜା କରାଯାଇଥାଏ । ସେମାନେ ସମସ୍ତେ ସିଦ୍ଧି ତଥା ସଫଳତାର ଦେବୀ ଅଟନ୍ତି ।

ଦେବୀମାତାଙ୍କ କୃପା ପ୍ରାପ୍ତି ମାତ୍ରେ ସାଧକର ଚେତନାରେ ପରମ ପୁରୁଷଙ୍କ ଜ୍ଞାନ ଉଦ୍‌ଭାସିତ ହୋଇଥାଏ । ଦେବୀମାତା ସୃଷ୍ଟି ସ୍ଥିତି ଓ ଲୟ ରୂପକ ନାଟକର ରହସ୍ୟମୟୀ ଶକ୍ତି ଅଟନ୍ତି । ସେ ପରମାତ୍ମା ପରମ ପୁରୁଷଙ୍କୁ ନାମ ରୂପକ ସଂସାର ଭିତରେ ପରିପ୍ରକାଶ କରୁଛନ୍ତି । ଜୀବକୁ ମାୟାରେ ଗୁଡ଼ାଇ କେତେବେଳେ ବାନ୍ଧି ରଖୁଛନ୍ତି ତ, କେତେବେଳେ ମହାସରସ୍ୱତୀ ରୂପରେ ସାଧକକୁ ମୋହ ଫାସରୁ ମୁକ୍ତି କରି ପରମାନନ୍ଦ ପ୍ରଦାନ କରୁଛନ୍ତି । ସେହି କୃପାମୟୀ ମାତା ଆମକୁ ଜ୍ଞାନ ପ୍ରଦାନ କରି ଭକ୍ତିର ତରଣୀରେ ସଂସାର ବୈତରଣୀକୁ ପାର କରାଇ ନିଅନ୍ତୁ, ଏହା ହିଁ ତାଙ୍କଠାରେ ଆମର ବିନମ୍ର ପ୍ରାର୍ଥନା ।

ସି - ୮୦
ପଳାଶପଲ୍ଲୀ, ଭୁବନେଶ୍ୱର





# ଶାକ୍ତ ପରମ୍ପରାରେ ଦେବୀ ଭୁବନେଶ୍ୱରୀ

ସୁଶାନ୍ତ କୁମାର ସ୍ୱାଇଁ

**ଶା**କ୍ତ ଧର୍ମର ଉନ୍ମେଷ ବହୁ ପ୍ରାଚୀନ କାଳରୁ । ସମ୍ଭବତଃ ପ୍ରାଗ୍‌ବୈଦିକ ଯୁଗରୁ ଆରମ୍ଭ କରି ଏହି ଶାକ୍ତଧର୍ମ କ୍ରମେ ବିକାଶ ଲାଭ କରିପାରିଛି । ପୂର୍ବେ ପଞ୍ଚୋପାସନାରେ ଶକ୍ତିଙ୍କୁ ପୂଜାଅର୍ଚ୍ଚନା କରାଯାଉଥିବା ବେଳେ, ସମୟ ସ୍ରୋତରେ ଏହାର ବିଭାଗ ସ୍ୱରୂପ ଶାକ୍ତ ଧର୍ମର ପ୍ରଭାବ ବିଭିନ୍ନ ଧର୍ମରେ ପରିଲକ୍ଷିତ ହୋଇପାରିଛି । ଶାକ୍ତ ଧର୍ମର ଆଦ୍ୟପୀଠ ଦେବଭୂମି ପୂଣ୍ୟଭୂମି ଉତ୍କଳ ବୋଲି ବହୁ ଗବେଷକ, ବୁଦ୍ଧିଜୀବୀ, ଐତିହାସିକ, ବିଜ୍ଞ ଓ ପଣ୍ଡିତମାନଙ୍କ ମତବାଦରୁ ଜଣାପଡ଼େ । ଡକ୍ଟର ନବୀନ କୁମାର ସାହୁ 'ଉଡ୍‌ଡୀୟାନ ପୀଠ'ରେ ପ୍ରଥମେ ଶାକ୍ତ ପରମ୍ପରା ଓ ଶକ୍ତିପୀଠ ପୂର୍ବକ ଏହି ଉଡ୍‌ଡୀୟାନ ପୀଠକୁ ଓଡ଼ିଶା ବା ଉତ୍କଳକୁ ଗ୍ରହଣ କରିଅଛନ୍ତି । ସେ ଯାହା ହେଉନା କାହିଁକି କେବଳ ଭାରତବର୍ଷରେ ନୁହେଁ ସମଗ୍ର ପୃଥିବୀ ପୃଷ୍ଠରେ ଆଦ୍ୟ ଶକ୍ତିପୀଠ ଉତ୍କଳର ବିରଜା କ୍ଷେତ୍ରକୁ ବିବେଚନା କରାଯାଇଛି ।

ପାଶ୍ଚାତ୍ୟ ଦେଶର ଗବେଷକମାନେ ଗବେଷଣା ପୂର୍ବକ ଉତ୍ପତ୍ତି ମୂଳରେ ଏକ ଶକ୍ତି ବିଦ୍ୟମାନ ବୋଲି କହିଥିବାବେଳେ ଏହାକୁ ଚେତନହୀନ ଜଡ଼ବସ୍ତୁ କହିବାବେଳେ, ଭାରତୀୟମାନେ ଏହାକୁ ଚୈତନ୍ୟମୟୀ, ଆନନ୍ଦମୟୀ, ଶକ୍ତିମୟୀ ଭଗବତୀ ରୂପେ ସ୍ୱୀକାର କରିଛନ୍ତି । ଯୁଗେ ଯୁଗେ ଶକ୍ତିକୁ ନାରୀଭାବେ ଚିତ୍ରଣ କରି ଆରାଧନା କରିଆସିଛନ୍ତି । ଏହି ଶକ୍ତି ହିଁ ପରମ ମହେଶ୍ୱରୀ ରୂପେ ସ୍ୱୀକାର ପୂର୍ବକ ଭଗବାନ ଶ୍ରୀବିଷ୍ଣୁଙ୍କ ଅର୍ଦ୍ଧାଙ୍ଗିନୀ ପରମ ବୈଷ୍ଣବୀ ଦେବଦେବ ମହାଦେବଙ୍କ ଶିବାନୀ ଓ ବ୍ରହ୍ମାଙ୍କ ପତ୍ନୀ ମହାସରସ୍ୱତୀ ଭାବେ ଗ୍ରହଣ କରାଯାଇଛି ।

ଗୁପ୍ତଯୁଗରେ ଶାକ୍ତ ପରମ୍ପରାରେ ଦେବୀ ଦୁର୍ଗାଙ୍କୁ ବିଷ୍ଣୁଙ୍କର ଦଶାବତାର ପରିକଳ୍ପନାର ଅନୁକରଣରେ ଦଶ ମହାବିଦ୍ୟା ରୂପେ ବର୍ଣ୍ଣନା କରାଗଲା । ଆଦ୍ୟାଶକ୍ତି ମା'ଦୁର୍ଗାଙ୍କର ଚତୁର୍ଥ ଦେବୀ ଭୁବନେଶ୍ୱରୀ । ଏହି ଦଶ ମହାବିଦ୍ୟା ରୂପ ପରବର୍ତ୍ତୀ ସମୟରେ ଶାକ୍ତ ପରମ୍ପରା, ତନ୍ତ୍ରପୀଠ, ଶକ୍ତି ଉପାସନାରେ ଏପରି ପ୍ରଭାବ ପକାଇଲା ଯେ କେବଳ ଉତ୍କଳରେ ନୁହେଁ ସମଗ୍ର ଭାରତବର୍ଷରେ ସ୍ଥାପତ୍ୟ, ଶିଳ୍ପ, କଳା, ଭାସ୍କର୍ଯ୍ୟରେ ସ୍ଥାନିତ ପୂର୍ବକ ଉପାସିତ ହେଲେ । ଏହି ଦଶ



ମହାବିଦ୍ୟାକୁ ନେଇ ଅନେକ ଶକ୍ତିପୀଠ ସୃଷ୍ଟି ହେଲା ଓ ତନ୍ତ୍ର ମାଧ୍ୟମରେ ଉପାସନା ପରିଚାଳିତ ହେଲା ଏବଂ ଏହାର ପ୍ରଚାର ଓ ପ୍ରସାରକ୍ରମେ ବୃଦ୍ଧି ପାଇବାକୁ ଲାଗିଲା । ସେଥିରୁ ଉତ୍କଳୀୟ ଜନସମାଜ ବିରତି ନଯାଇ ତନ୍ତ୍ର ଉପଚାର ମାଧ୍ୟମରେ ସ୍ୱଳ୍ପ ସମୟ ମଧ୍ୟରେ ସଫଳତା ପ୍ରାପ୍ତି ପାଇଁ ଶକ୍ତି ଉପାସନା କରିବାକୁ ଆରମ୍ଭ କଲେ ଏବଂ ଏହାର ପ୍ରଭାବରେ ଦଶ ମହାବିଦ୍ୟା ମନ୍ଦିରମାନ ନିର୍ମାଣ କାର୍ଯ୍ୟ ତ୍ୱରାନ୍ୱିତ ହେଲା । ଦେବୀମାନଙ୍କ ଅବସ୍ଥାନ ପୂର୍ବକ ପୂଜାର୍ଚ୍ଚନା ଆରମ୍ଭ ହେଲା ।

ଦଶ ମହାବିଦ୍ୟାରେ ମା' ଦୁର୍ଗାଙ୍କର ଚତୁର୍ଥ ଅବତାର ଭୁବନେଶ୍ୱରୀ । ବିଷ୍ଣୁଙ୍କର ଦଶାବତାର ସହିତ ସମନ୍ୱୟ ରଖି ତୋଡ଼ଳ ତନ୍ତ୍ରରେ ତାରାଙ୍କୁ ମତ୍ସ୍ୟ ରୂପିଣୀ, ବଗଳାଙ୍କୁ କୁର୍ମ, ଧୂମାବତୀଙ୍କୁ ବରାହ, ଛିନ୍ନମସ୍ତାଙ୍କୁ ନୃସିଂହ, ଭୁବନେଶ୍ୱରୀଙ୍କୁ ବାମନ, ମାତଙ୍ଗୀଙ୍କୁ ରାମ, ଷୋଡ଼ଶୀଙ୍କୁ ପରଶୁରାମ, ଭୈରବୀଙ୍କୁ ବଳରାମ, ମହାଲକ୍ଷ୍ମୀଙ୍କୁ ବୁଦ୍ଧ, ଦୁର୍ଗାଙ୍କୁ କଳ୍‌କୀ ଓ କାଳୀଙ୍କୁ କୃଷ୍ଣ ସ୍ୱରୂପରେ ଗ୍ରହଣ କରାଯାଏ ।





'ତାରା ଦେବୀ ମୀନାରୂପା ବଗଳା କୂର୍ମ ମୂର୍ତ୍ତିକା ।
ଧୂମାବତୀ ବରାହ ହସ୍ୟାତ୍ ଛିନ୍ନମସ୍ତା ନୃସିଂହିକା ॥
ଭୁବନେଶୀ ବାମନଃସ୍ୟାନ୍ନାତଙ୍ଗୀ ରାମ ମୂର୍ତ୍ତିକା ।
ତ୍ରିପୁରା ଜାମଦଗ୍ନ୍ୟସାଦ୍ ବଳଭଦ୍ରସ୍ତୁ ଭୈରବୀ ॥
ମହାଲକ୍ଷ୍ମୀର୍ଭବେଦ୍‌ବୁଦ୍ଧୋ ଦୁର୍ଗାସ୍ୟାଦ୍ କଲ୍‌କୀ ରୂପିଣୀ ।
ସ୍ୱୟଂ ଭଗବତୀ କାଳୀ କୃଷ୍ଣମୂର୍ତ୍ତି ସମୁଦ୍‌ଭବୀ ॥ (ତୋଡ଼ଳତନ୍ତ୍ର)

ତେଣୁ ଏଥିରୁ ସ୍ପଷ୍ଟ ବାରୀ ହୋଇପଡ଼େ, ଦେବୀ ଭୁବନେଶ୍ୱରୀ ଅବତାରୀ ଦୁର୍ଗାଙ୍କର ଚତୁର୍ଥ ଅବତାର ସତ୍ତ୍ୱେ ସେ ବିଷ୍ଣୁଙ୍କ ପଞ୍ଚମ ଅବତାର ବାମନ ଅବତାର ସହ ସମକକ୍ଷ ।

ମା' ଭୁବନେଶ୍ୱରୀ ଚଉଦ ବ୍ରହ୍ମାଣ୍ଡ ଓ ତ୍ରିଭୁବନର ଅଧିଷ୍ଠାତ୍ରୀ ଦେବୀ । ସଂସାରରେ ଯେତେ ଜୀବମଣ୍ଡଳ ଅଛନ୍ତି, ଏହି ତ୍ରିଭୁବନ ବ୍ୟାପିନୀ ଭୁବନେଶ୍ୱରୀ ସେମାନଙ୍କୁ ଅନ୍ନ ଯୋଗାଇଥାନ୍ତି । ତେଣୁ ତାଙ୍କୁ ମଧ କେହି କେହି ଅନ୍ନଦ୍ଧାତ୍ରୀ କହିଥାନ୍ତି । ପ୍ରାଚୀନ ନଗରୀ ଐତିହ୍ୟ ସମ୍ପନ୍ନ ଭୁବନେଶ୍ୱରର ପ୍ରତ୍ୟକ୍ଷ ଦେବୀ ହେଉଛନ୍ତି ମା' ଭୁବନେଶ୍ୱରୀ । ଦେବୀ ଭୁବନେଶ୍ୱରୀ ହେଉଛନ୍ତି କୃତିବାସ ଲିଙ୍ଗରାଜ ମହାପ୍ରଭୁ ତ୍ରିଭୁବନେଶ୍ୱରଙ୍କ ପତ୍ନୀ । ଯାହାଙ୍କର ନାମ ଲୋକାଚାର ମତରେ ସ୍ୱନାମଧନ୍ୟ ହୋଇଛି ଗୋପାଳୁଣୀ ବା ଗୋପାଳିନୀ । ଲିଙ୍ଗରାଜ ମନ୍ଦିର ପରେ ମା' ଭୁବନେଶ୍ୱରୀ ଗୋପାଳୁଣୀଙ୍କ ମନ୍ଦିର ପ୍ରତିଷ୍ଠା କରାଯାଇ ଦେବୀଙ୍କୁ ଉପାସନା କରାଯାଇଛି । ଓଡ଼ିଶାର ଅନ୍ୟାନ୍ୟ ଶୈବପୀଠମାନଙ୍କରେ ଶିବଙ୍କର ଅର୍ଦ୍ଧାଙ୍ଗିନୀ ରୂପେ ପାର୍ବତୀଙ୍କୁ ପ୍ରାଧାନ୍ୟ ଦିଆଯାଇଥିବା ସତ୍ତ୍ୱେ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ପ୍ରାଙ୍ଗଣ ମଧ୍ୟରେ ଲିଙ୍ଗରାଜ ମନ୍ଦିର ନିର୍ମାଣ ହେବାର ବହୁବର୍ଷ ପରେ ଦେବୀ ପାର୍ବତୀ ମନ୍ଦିର ନିର୍ମାଣ ପୂର୍ବକ ଦେବୀଙ୍କର ପୂଜାର୍ଚ୍ଚନା କରାଯାଉଛି । ତଥାପି ଏଠାରେ ଭିନ୍ନତା ପରିଲକ୍ଷିତ ପୂର୍ବକ କୀର୍ତ୍ତିବାସ ଲିଙ୍ଗରାଜଙ୍କ ସହିତ ମା' ଭୁବନେଶ୍ୱରୀଙ୍କୁ ବିଭିନ୍ନ ପର୍ବପର୍ବାଣିରେ ସାମିଲ୍ କରାଯାଏ । ରାତିରେ ପ୍ରଥମେ ଦେବୀ ପାର୍ବତୀଙ୍କ ମନ୍ଦିରରେ ପ୍ରସାଦ ଲାଗି ହୋଇ ପହୁଡ଼ ହେଲା ପରେ ପ୍ରତ୍ୟେକ ମନ୍ଦିର ପହୁଡ଼ ହୋଇଯାଏ କିନ୍ତୁ ସର୍ବ ଶେଷରେ ମା' ଭୁବନେଶ୍ୱରୀଙ୍କ ଶେଷ ଧୂପ, ଆଳତୀ, ପ୍ରସାଦ ଲାଗି ହେଲା ପରେ ପହୁଡ଼ ପଡ଼ିଥାଏ । ସେହିପରି ଗୋପାଳିନୀ ନାମ ଧାରିଣୀ ଭୁବନେଶ୍ୱରୀ ଅଶୋକାଷ୍ଟମୀ ରଥଯାତ୍ରାରେ ବାସୁଦେବ କୃଷ୍ଣ ଓ କୃତିବାସ ଲିଙ୍ଗରାଜଙ୍କ ସହିତ ବହିର୍ଗମନ ପୂର୍ବକ ରାମେଶ୍ୱର ମନ୍ଦିରକୁ ଯାତ୍ରା କରନ୍ତି । ଏସବୁ ବିଷୟରୁ ଜଣାଯାଏ ଭୁବନେଶ୍ୱରୀଙ୍କୁ ଭୁବନେଶ୍ୱରରେ ଅଧିକ ପ୍ରାଧାନ୍ୟ ଦେବା ସଂଗେ ପ୍ରଧାନ ଦେବୀ ରୂପେ ବିବେଚନା କରାଯାଏ । ଶାକ୍ତ ପ୍ରମୋଦରେ ଦେବୀ ଭୁବନେଶ୍ୱରୀଙ୍କ ନିମ୍ନଲିଖିତ ଧ୍ୟାନ ବର୍ଣ୍ଣିତ :

'ଉଦ୍ୟତ ଦିନଦ୍ୟୁତି ମିନ୍ଦୁକିରୀଟାଂ
ତୁଙ୍ଗକୁଚାଂ ନୟନ ତ୍ରୟଯୁକ୍ତାଂ
ସ୍ମେରମୁଖୀ ବରଦାଙ୍କୁଶ ପାଭୀତିକରାଂ
ପ୍ରଭଜେ ଭୁବନେଶ୍ୟମି ।'

ଦାର୍ଶନିକମାନଙ୍କ ମତରେ ସୂର୍ଯ୍ୟଦେବତା ଉତ୍ପନ୍ନ ହେବାପରେ ପରମେଷ୍ଠୀ ସୋମ ଯଜ୍ଞରେ ଆହୂତି ଦିଆଗଲା । ଏ ବିଷୟରେ ପୂର୍ବ ସୂଚନା ଦିଆଯାଇଛି । ଯଜ୍ଞ ଦ୍ୱାରା ତ୍ରୈଲୋକ୍ୟ ନିର୍ମିତ ହେଲା । ଏହାପରେ ତ୍ରିଭୁବନ ଉତ୍ପନ୍ନ ହେଲା । ବିଶ୍ୱୋତ୍ପତ୍ତିରେ ଷୋଡ଼ଶୀଙ୍କର ଅବଦାନ ଥିଲା । ବର୍ତ୍ତମାନ ତ୍ରିଭୁବନର ଉତ୍ପତ୍ତି ପାଇଁ ଶ୍ରୀଭୁବନେଶ୍ୱରୀଙ୍କ ଆବିର୍ଭାବ ହେଲା । ତ୍ରିଭୁବନ ବ୍ୟାପିନୀ ମା' ଭୁବନେଶ୍ୱରୀ ସଂସାରର ସମସ୍ତ ପ୍ରାଣୀଙ୍କୁ ଅନ୍ନ ଯୋଗାଇଥାନ୍ତି । ବର, ଅଙ୍କୁଶ, ପାଶ ଓ ଅଭୟ ଧାରିଣୀ ଏହି ମହାବିଦ୍ୟା ତ୍ରିଭୁବନେଶ୍ୱରୀ ଜଗତର ପାଳନକର୍ତ୍ତ୍ରୀ । ଏହାଙ୍କର ଧାମକୁ 'ମଣିଦ୍ୱୀପ' କୁହାଯାଏ ଓ ନିବାସ ସ୍ଥଳୀକୁ 'ଚିନ୍ତାମଣି ସଦନ' କୁହାଯାଏ । ଚଉଦ ଭୁବନର ପାଳନକର୍ତ୍ତ୍ରୀ ଭୁବନେଶ୍ୱରୀଙ୍କର ଭୈରବଙ୍କୁ 'ତ୍ର୍ୟମ୍ବକ ଶିବା' କୁହାଯାଏ ।

ତନ୍ତ୍ରଶାସ୍ତ୍ରର ପ୍ରବାହରେ ସ୍ଥାପତ୍ୟ କଳାରେ ଭୁବନେଶ୍ୱରୀଙ୍କୁ କେତେକ ସ୍ଥଳେ ରକ୍ତବର୍ଣ୍ଣା ଦ୍ୱିଭୁଜା ରୂପେ ଓ ଅନ୍ୟ କେତେକ ସ୍ଥଳେ ଶ୍ୟାମବର୍ଣ୍ଣା, ଚତୁର୍ଭୁଜା ରୂପେ କଳ୍ପନା କରାଯାଇଛି । ଏଣୁ ଅନ୍ୟ ଏକ ଧ୍ୟାନରେ ଦେବୀଙ୍କୁ ସିନ୍ଦୁରବତ୍ ରକ୍ତବର୍ଣ୍ଣା, ତ୍ରିନୟନା ମସ୍ତକ ଉପରେ ମାଣିକ୍ୟ ଶୋଭିତା, ମସ୍ତକରେ ଚନ୍ଦ୍ରକଳା ଶୋଭିତା, ସଦାହାସ୍ୟ ମୁଖୀ, ପୀନୋନ୍ନତ ପୟୋଧରା ଏକ ହସ୍ତରେ ମଣିପୂର୍ଣ୍ଣ ରତ୍ନ ଖଚିତ ପାନପତ୍ର ଓ ଅନ୍ୟ ହସ୍ତରେ ପଦ୍ମପୁଷ୍ପ ଧାରଣ କରିଥିବାର ପରିକଳ୍ପନା କରାଯାଇଛି ।

ଦେବୀ ଭାଗବତ, ତନ୍ତ୍ରସାର, ଶାକ୍ତ ପ୍ରମୋଦ, ଭୁବନେଶ୍ୱରୀ ଉପନିଷଦ ଓ ଭୁବନେଶ୍ୱରୀ ପାରିଜାତ ପ୍ରଭୃତିରେ ଦେବୀଙ୍କ ପୂଜାପଦ୍ଧତି, ମନ୍ତ୍ରଯନ୍ତ୍ର ଓ ସାଧନାର ବିଧିବର୍ଣ୍ଣନା କରାଯାଇଛି । 'ଦେବୀ ଭାଗବତ'ରେ ଉଲ୍ଲେଖ କରାଯାଇଛି ଯେ ଦେବୀ ହ'କାର ରୂପୀ ସ୍ଥୂଳ, ର'କାର ରୂପୀ ସୂକ୍ଷ୍ମ, ଇ'କାର ରୂପୀ କାରଣ ଏବଂ ଓଁକାର ରୂପୀ ତୁରୀୟ ଶରୀର ଧାରଣ କରି ବ୍ୟଷ୍ଟି ଓ ସମଷ୍ଟିରେ ଐକ୍ୟ ପ୍ରତିଷ୍ଠିତ କରିଛନ୍ତି । ସେ ସର୍ବଶକ୍ତିମୟୀ, ଶବ୍ଦ ବ୍ରହ୍ମସ୍ୱରୂପିଣୀ । ପରମାନନ୍ଦ ରୂପିଣୀ ଆନନ୍ଦମୟୀ, ସର୍ବମନ୍ତ୍ରାତ୍ମିକା, ମୁଖମୋକ୍ଷଦାତ୍ରୀ, ପାପତାପହାରିଣୀ ଓ ଧର୍ମର ଆତ୍ମଜ୍ଞାନ ପ୍ରଦାୟିନୀ, ମାୟାବୀଜ 'ହ୍ରୀଁ' ମନ୍ତ୍ର ଜପ ଦ୍ୱାରା ଏହି ଦେବୀଙ୍କୁ ସନ୍ତୁଷ୍ଟ କରାଯାଇଥାଏ ।

ଶାରଦୀୟ ଦୁର୍ଗୋତ୍ସବରେ ଏକାମ୍ରକ୍ଷେତ୍ରର ଅଧିଷ୍ଠାତ୍ରୀ ଦେବୀ ଭୁବନେଶ୍ୱରୀଙ୍କ ଜଗମୋହନରେ ଅବସ୍ଥିତ ଯଜ୍ଞ କୁଣ୍ଡରେ ଯଜ୍ଞ ଅନୁଷ୍ଠିତ ହୋଇଥାଏ । ଏହି ଯଜ୍ଞ କୁଣ୍ଡରେ ତ୍ରିଶାଖା ବେଲ୍ୱପତ୍ର ଏଥିରେ ପକା ଯାଇଥାଏ । ଓଡ଼ିଶାରେ ଶ୍ରୀକ୍ଷେତ୍ର ପୁରୀର ପରମ ଆରାଧ୍ୟା ଦେବୀ ବିମଳାଙ୍କ ପୀଠରେ, ଦେବୀ ସୁଭଦ୍ରାଙ୍କ ପୂଜା ପଦ୍ଧତିରେ ଓ ଚକ୍ରକ୍ଷେତ୍ର ଭୁବନେଶ୍ୱରସ୍ଥ ଲିଙ୍ଗରାଜ ମନ୍ଦିର ପ୍ରାଙ୍ଗଣରେ ଥିବା ଦେବୀ

ଗୋପାଳିନୀଙ୍କ ପୀଠରେ ବହୁ ପ୍ରାଚୀନ କାଳରୁ ଭୁବନେଶ୍ୱରୀଙ୍କ ଧ୍ୟାନ ମନ୍ତ୍ର ହ୍ରୀଂ । ଦେବୀ ଭାଗବତରେ ଏହି ତ୍ରିଦେବୀଙ୍କର ନାମୋଲ୍ଲେଖ କରାଯାଇଥିବାର ପ୍ରମାଣ ମିଳେ । ଯଥା-

'ଏକାମ୍ର ପୀଠେ ସଂପ୍ରୋକ୍ତା ଦେବୀ ସା କୀର୍ତ୍ତି ମତ୍ୟପି
ଗୟାୟାଂ ମଙ୍ଗଳାପ୍ରୋକ୍ତା ବିମଳା ପୁରୁଷୋତ୍ତମେ
ବାଞ୍ଛାର୍ତାର୍ଥସ୍ୟ ସିଦ୍ଧ୍ୟର୍ଥଂ ସୁଭଦ୍ରା ପୂଜୟେତ୍ର ସଦା
ମୟାବୀଜେନ ହ୍ରୀଂ ଦେବେଶୀ ତତ୍ ତତ୍ ପୀଠାଧିବାସିନୀଂ
ପୂଜୟେଦନୀଶଂ ରାଜନ୍ ପୁରଶ୍ଚରଣ କୃତ ଭବେତ୍ ।'

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଶ୍ରୀମନ୍ଦିର ପ୍ରାଙ୍ଗଣସ୍ଥିତ ତଥା 'ଗୋପାଳତୀର୍ଥ ମଠ' ଥିବା ଭୁବନେଶ୍ୱରୀଙ୍କ ସ୍ୱତନ୍ତ୍ର ପୀଠ ଉପରୋକ୍ତ ତିନିପୀଠଠାରୁ ଅର୍ବାଚୀନ ।

ଶ୍ରୀକ୍ଷେତ୍ରରେ ସ୍ୱତନ୍ତ୍ର ଭାବେ ମା' ଭୁବନେଶ୍ୱରୀଙ୍କ ଚତୁର୍ଭୁଜା ମୂର୍ତ୍ତି ପ୍ରତିଷ୍ଠା କରାଯାଇଛି । ଦେବୀ ଚତୁଃହସ୍ତରେ ବର, ଅଙ୍କୁଶ, ପାଶ ଓ ଅଭୟ ଧାରଣ କରିଛନ୍ତି । କିନ୍ତୁ ଏକାମ୍ରକ୍ଷେତ୍ରରେ ଦୁଇ ହସ୍ତ ବିଶିଷ୍ଟା କଳାପଥରରେ ଦୁଇ ଫୁଟ ଉଚ୍ଚ ବିଶିଷ୍ଟ ଦେବୀ ଭୁବନେଶ୍ୱରୀ ଏକ ହସ୍ତରେ ପାନପତ୍ର ଓ ଅନ୍ୟ ହସ୍ତରେ ପଦ୍ମ ଧାରଣ କରିଥିବାର ଦୃଷ୍ଟିଗୋଚର ହୁଏ । ଦେବୀ ମଧ୍ୟ ପଦ୍ମ ଉପରେ ଉପବେଶନ ପୂର୍ବକ ଗୌରବର୍ଣ୍ଣ ଧାରଣ କରିଛନ୍ତି ।

ଶ୍ୟାମାଙ୍ଗୀ ଶଶିଶେଖରଂ ନିଜ କରୌବାନାଂ ଚରକ୍ରୋପ୍ଳଂ
ତ୍ୟଂରତ୍ନା ଚଷକଂପରଂ ଭୟହରଂ ସଂବିଭ୍ରତୀ ଶାଶ୍ୱତୀମ୍
ମୁକ୍ତାହାର ଲସତ ପୟୋଧର ନତଂ ନେତ୍ରୟୋଲ୍ଲାସିନୀଂ
ବନ୍ଦେହ ସ୍ୱରପୂଜିତ ହରବନ୍ଧୁ ରକ୍ତୋରବିନ୍ଦ ସ୍ଥିତାମ୍ ।

ଲିଙ୍ଗ ପୁରାଣ ଅନୁଯାୟୀ ଭାରତବର୍ଷରେ ତିନୋଟି ଅଚଳ (ପର୍ବତ) ହେଉଛି ଦେବଦେବୀଙ୍କ କ୍ରୀଡ଼ାସ୍ଥଳ । ସେଗୁଡ଼ିକ ହେଉଛି ଯଥାକ୍ରମେ- ସ୍ୱର୍ଣ୍ଣାଚଳ (ଭୁବନେଶ୍ୱର), ନୀଳାଚଳ (ପୁରୀ), ଭେଙ୍କଟାଚଳ-ତିରୁପତି । ଏହି ସ୍ଥାନମାନଙ୍କରେ ଦେବୀ ଭୁବନେଶ୍ୱରୀ ଉପାସନା ହେବା ବିଧେୟ । ଏତଦ୍‌ବ୍ୟତୀତ ଗୋଦାବରୀ ନଦୀ ତଟବର୍ତ୍ତୀ ଶାକମ୍ଭରୀ କ୍ଷେତ୍ର, ମଧ୍ୟ ଦେବୀଙ୍କ ପ୍ରସିଦ୍ଧ ଉପାସନା ପୀଠ । ଶାସ୍ତ୍ରୀୟ ମତାନୁସାରେ ଦେବୀ ଭୁବନେଶ୍ୱରୀ ଅବସ୍ଥାନ କରୁଥିବା ଦ୍ୱୀପକୁ 'ମଣିଦ୍ୱୀପ' କୁହାଯାଏ । ଦେବୀ ଭୁବନେଶ୍ୱରୀ ହେଉଛନ୍ତି ସ୍ୱୟଂ ଶାକମ୍ଭରୀ ଅନ୍ନପୂର୍ଣ୍ଣା ଓ ଦୁର୍ଗତ କାମିନୀ ମା' ଦୁର୍ଗା । ତେଣୁ ମା'ଙ୍କୁ ଶାକ୍ତ ପରମ୍ପରାରେ ପୂଜାର୍ଚ୍ଚନା ଓ ଆରାଧନା କରିବା ବିଧେୟ ।

ଗୌରୀନଗର
ପ୍ଲଟ ନଂ-୪୫୮୬
ପୁରୁଣା ଭୁବନେଶ୍ୱର-୭୫୧୦୦୨

---



# ଶାରଦୀୟ ଆବାହନୀ

**ବସନ୍ତ କୁମାର ଦେବ**

ମାଗୋ ଦୁର୍ଗେ ଦୁର୍ଗତି ନାଶିନୀ ଶକ୍ତି ପ୍ରଦାୟିନୀ ଅମ୍ବିକା
ସିଂହବାହିନୀ ମହିଷମର୍ଦ୍ଦିନୀ ମୁଣ୍ଡମାଳିନୀ କାଳୀକା ॥

ପ୍ରକୃତି ରୂପିଣୀ ବିଶ୍ୱପାଳିନୀ ଯୋଗମାୟା ଗୌରୀ ପାର୍ବତୀ
ଭୈରବୀ ବିରଜା ମାହେଶ୍ୱରୀ ଉମା ତାରାତାରିଣୀ ଭଗବତୀ ॥

ମଙ୍ଗଳା ବିମଳା କମଳା ଶାରଳା ରୁଦ୍ରାଣୀ ଭବାନୀ ନାରାୟଣୀ
ଭୂବାସିନୀ ଚଣ୍ଡୀ ଯୋଗିନୀ ଚର୍ଚ୍ଚିକା ସମଲେଶ୍ୱରୀ ବୀଣାପାଣି ॥

ଭୁବନମୋହିନୀ ଭୁବନେଶ୍ୱରୀ କିଚକେଶ୍ୱରୀ କପାଳିନୀ
ଦୈତ୍ୟ ବିନାଶିନୀ ତ୍ରିଶୂଳ ଧାରିଣୀ ମାୟାବତୀ ଦେବୀ କାତ୍ୟାୟନୀ ॥

ଶିବାନୀ ଶଙ୍କରୀ ହିଙ୍ଗୁଳା ଅପର୍ଣ୍ଣା ବେଦମାତା ମାଗେ ଶାକମ୍ଭରୀ
ମାତଙ୍ଗୀ ଷୋଡ଼ଶୀ ଧୂମାବତୀ ଛିନ୍ନମସ୍ତା ମା' ବଗଳା ସ୍ତମ୍ଭେଶ୍ୱରୀ ॥

ସୃଷ୍ଟି ସ୍ଥିତି ମାଗୋ ପ୍ରଳୟକାରିଣୀ ତ୍ରିକାଳଦର୍ଶିନୀ ଶିବପ୍ରିୟା
ଭାରତଭୂମିକୁ ରକ୍ଷାକର ତୁମ୍ଭେ ନପଡୁ କାହାର ପାପ ଛାୟା ।

ମା' ଦଶଭୁଜା ଘେନ ଆମ୍ଭ ପୂଜା ଶାରଦୀୟ ଶୁଭ ଅବସରେ
ସନ୍ତ୍ରାସବାଦୀର କାୟାକୁ ସଂହାର ଖଡ୍ଗ ବର୍ଚ୍ଛା ଧନୁ ଧରି କରେ ॥

ବିଶ୍ୱବାସୀ ମୁଖେ ଫୁଟିଉଠୁ ହାସ୍ୟ ଅନ୍ୟାୟ ଅନୀତି ଦୂର ହେଉ
କୋଟି କଣ୍ଠ ତବ ବନ୍ଦନା ଗାଏ ଯୁଗେ ଯୁଗେ କୀର୍ତ୍ତି ରହିଥାଉ ॥

କ୍ୱାଟର ନଂ- ଇ/୭୫, ଇ-କଲୋନୀ
ୟୁନିଟ୍-୮, ଭୁବନେଶ୍ୱର-୧୨

— — —







ମା ଲଙ୍କେଶ୍ୱରୀ, ଜୁନାଗଡ

# ଜୁନାଗଡ଼ ଅଧିଶ୍ୱରୀ ଲଙ୍କେଶ୍ୱରୀ

ଲାୟନ ମାଣିକ ଚାନ୍ଦ ଅଗ୍ରୱାଲା

**କେ**ଉଁ ଆବାହମାନ କାଳରୁ ପ୍ରକୃତିର ନୈସର୍ଗିକ ସ୍ପର୍ଶରେ ସବୁଜିମା ବଣ ପାହାଡ଼, ନଦନଦୀର ଜୀବନ୍ତ ପରିବେଶରେ ସ୍ଥିତପ୍ରଜ୍ଞ ଭାବେ ଜୁନାଗଡ଼ ସହର ଇତିହାସର ମୂକସାକ୍ଷୀ ରୂପେ ସଂସ୍କୃତି, ଐତିହ୍ୟର କାହାଣୀକୁ ଅନବରତ ଗୋଟିଏ ପିଢ଼ିରୁ ଅନ୍ୟ ପିଢ଼ିକୁ ବଖାଣି ଚାଲିଛି । ନିଜର ପ୍ରଶସ୍ତ ହୃଦୟରେ 'ଛଅ କୋଡ଼ି ବନ୍ଧ, ନଅ କୋଡ଼ି ତୋଟା' ବହନ କରିଛି । କୁଳୁକୁଳୁ ନାଦିନୀ ହାତୀନଦୀ ମନ୍ଦିର ମାଳିନୀ ଜୁନାଗଡ଼ର ପଦଧୌତ କରି ଅତୀତର ଲହୁଲୁହାଣ ଇତିହାସର ଅବ୍ୟକ୍ତ କୋହ ତା'ର ବୁକୁ ତଳେ ଚାପି ରଖିଛି । କଳାହାଣ୍ଡିର ୧୮ଟି ଗଡ଼ ମଧ୍ୟରେ ଶ୍ରେଷ୍ଠତ୍ୱ ହାସଲ କରିଥିବା ଜୁନାଗଡ଼ ସମଗ୍ର ଦକ୍ଷିଣ କୋଶଳରେ ଜେନାବଳିଗଡ଼ ନାମରେ ସୁପରିଚିତ ଥିଲା । ତା'ର ରକ୍ଷାକାରିଣୀ, ଶଙ୍ଖଚକ୍ର ଧାରିଣୀ, ବିଶ୍ୱକଲ୍ୟାଣୀ - ଜଗଜ୍ଜନନୀ ମା' ଲଙ୍କେଶ୍ୱରୀ ସେହି ଅନାଦି କାଳରୁ ଜୁନାଗଡ଼ର ଇଷ୍ଟଦେବୀ ଭାବରେ ପୂଜା ପାଇ ଆସୁଛନ୍ତି । ବିଭିନ୍ନ କିମ୍ବଦନ୍ତୀର ଭିତ୍ତିଭୂମିକୁ ନେଇ ଜଣାପଡ଼େ ଯେ, ରାଜା କୌଣସି ରାଜ୍ୟ ଜୟ କରି ସେହି ପରାଜିତ ରାଜ୍ୟର ଅଧିଷ୍ଠାତ୍ରୀ ଦେବୀଙ୍କୁ ଆଣି ନିଜ ରାଜ୍ୟରେ ପ୍ରତିଷ୍ଠିତ କରାଇ ପୂଜା ଆରାଧନା କରିଥାନ୍ତି । ଦକ୍ଷିଣର ଜନୈକ ରାଜା ଲଙ୍କାଗଡ଼ ବିଜୟ କରି ଲଙ୍କାର ଦେବୀ ଲଙ୍କେଶ୍ୱରୀଙ୍କୁ ଜୁନାଗଡ଼ଠାରେ ସ୍ଥାପିତ କରାଇଥିଲେ । ରାଜାଙ୍କ ସହିତ ଲଙ୍କାର ଅନୁଚରମାନେ ମଧ୍ୟ ଏହି ଜୁନାଗଡ଼ରେ ଅବସ୍ଥାପିତ ହୋଇ ବଙ୍କାନାମରେ ନାମିତ ହେଲେ । ମୁଖ୍ୟତଃ ବଙ୍କାମାନେ ଥିଲେ ଏକ ଦୁର୍ଦ୍ଧର୍ଷ, ପରାକ୍ରମୀ ଯୁଦ୍ଧଖୋର ଜାତି । କଳାହାଣ୍ଡି ବ୍ୟତୀତ ଏହି ଜାତିର ଅଧିବାସୀମାନେ ଅନ୍ୟତ୍ର ଦୃଷ୍ଟିଗୋଚର ହୁଅନ୍ତି ନାହିଁ । ବଙ୍କା ରାଜପୁତମାନେ ସେହି ସମୟରୁ ଜୁନାଗଡ଼ରେ ଲଙ୍କେଶ୍ୱରୀଙ୍କୁ ରାଜଦେବୀ ଭାବରେ ପୂଜା କରି ଆସୁଛନ୍ତି । ବିଜୟର ସ୍ମାରକୀ ସ୍ୱରୂପ ଦେବୀଙ୍କ ଦୁଇପାର୍ଶ୍ୱରେ ଥିବା ଦୁଇଟି ଖଣ୍ଡା ଏହାର ଦ୍ୟୋତକ ଅଟେ । ସେ ହେଉଛନ୍ତି ଶକ୍ତିର ଉତ୍ସ, ପାପର ସଂହାରକାରିଣୀ ଓ ଧର୍ମର ସଂସ୍ଥାପନକାରିଣୀ 'ଜୟ ମା' ଲଙ୍କେଶ୍ୱରୀ' ଉଦଘୋଷରେ ସେ ଥିଲେ ଶକ୍ତିର ଏକ ପ୍ରବାହିତ ତରଙ୍ଗ ଓ ସୈନିକଙ୍କ ପ୍ରାଣର ପ୍ରମୁଖ କେନ୍ଦ୍ରବିନ୍ଦୁ । ଏଣୁ ଦେବୀଙ୍କ ସୁପରିଚିତ ବିଜୟ ପର୍ବର ଉତ୍ସାହ, ଉଦ୍ଦୀପନା ଭରା ଚେତନାର ଉତ୍ସବ ମୁଖର 'ଖଣ୍ଡାବସା' ପର୍ବ ବୋଲି ଅନୁମିତ ହୁଏ ।

ଅତୀତର ପୃଷ୍ଠା ଅବଲୋକନ କଲେ ଅନେକ ଗୂଢ଼ ରହସ୍ୟ ଉଦ୍‌ଘାଟିତ ହୋଇପାରିବ । ଅତୀତରେ ଜୁନାଗଡ଼ ଜେନାବଳିଗଡ଼ ନାମରେ ସମଗ୍ର ମହାକାନ୍ତାରରେ ପଶ୍ଚିମ ଲଙ୍କା ନାମରେ ବିଦିତ ଥିଲା । ଏହାର ଚତୁଃପାର୍ଶ୍ୱରେ ବର୍ତ୍ତମାନ ସୁଦ୍ଧା ଗଡ଼ଖାଇର କେତେକ ଅଂଶ ପରିବେଷ୍ଟନୀ ହୋଇଥିବାର ଦୃଷ୍ଟାନ୍ତ ଦେଖାଯାଏ । ତେଣୁ ଏହା ଜୁନା ବା ପୁରୁଣାଗଡ଼ ଭାବରେ ନାମିତ ହୋଇଥିବାର ଅନୁମେୟ କରାଯାଏ । ମହାକାନ୍ତାରର ଇନ୍ଦ୍ରାବତୀ ଉପତ୍ୟକା ଓ ବସ୍ତର (ମଧ୍ୟପ୍ରଦେଶ) ଅଞ୍ଚଳକୁ ନେଇ ବଜ୍ରକୋଟ ମଣ୍ଡଳ ଭାବେ ବେଶ୍ ଜଣାଶୁଣା ଥିଲା । କାଲାଚୁରୀ, ସୋମବଂଶୀ, ଗଙ୍ଗବଂଶୀ ପରେ ନାଗବଂଶୀମାନେ କ୍ରମଶଃ ବିହାରର ମାଳଭୂମି ଛୋଟନାଗପୁରରୁ ଆସି ଏହି ଗଡ଼ରେ ରାଜୁତି କରିଥିବାର ନଜିର ମିଳେ ।

ଚତୁର୍ଭୁଜା ମା' ଲଙ୍କେଶ୍ୱରୀ ପଦ୍ମାସନା ତିନିହସ୍ତରେ ଆୟୁଧ ଓ ଏକ ହସ୍ତରେ ଅଭୟ ବରଦା । ବଜ୍ରକୋଟ ମଣ୍ଡଳର ଅଧିଶ୍ୱରୀ ରୂପେ ସେ ସମଗ୍ର ଦକ୍ଷିଣ କୋଶଳରେ ସୁପରିଚିତା ଥିଲେ । ଏହି ପ୍ରତ୍ୟକ୍ଷ ଦେବୀ ମାନବୀର ରୂପଧାରଣ କରି କୁଆଁରୀ କନ୍ୟାମାନଙ୍କ ସାଥିରେ ବୋରିଆ ଓ ଲୁକ୍‌ଲୁକାନି (ଲୁଚକାଳି) ଖେଳୁଥିଲେ । ଏଭଳି ଅନେକ ଅଲୌକିକ ଘଟଣାବଳିର ଉନ୍ମୋଚନ କରନ୍ତି ଲଙ୍କେଶ୍ୱରୀଙ୍କ ପୂଝାରୀ ଶ୍ରୀଯୁକ୍ତ ବଦ୍ରିନାରାୟଣ ପଣ୍ଡା । ସେ କହନ୍ତି ଯେ ସ୍ୱର୍ଗତ ରାମଚନ୍ଦ୍ର ପଣ୍ଡା ପୂଝାରୀ ଥିବା ସମୟର ଏକ କିମ୍ବଦନ୍ତୀ ଘଟଣା । ଅପରାହ୍ନ ସମୟ ରାସ୍ତାଘାଟ ଶୂନଶାନ, ଖାଁ ଖାଁ ପରିବେଶ ଆହୁରି ନିଶୂନ କରୁଥିଲା ମୁହୂର୍ତ୍ତଗୁଡ଼ିକ ସମୟର ସାୟରୀ ଭିତରେ । ସେହି ଅବେଳରେ ରାସ୍ତାରେ ଆସୁଥିବା ଏକ ଚୁଡ଼ିହାରୀ ମନ୍ଦିର ସମ୍ମୁଖରେ ଚୁଡ଼ି ବିକ୍ରୟ କରିବା ପାଇଁ ଡାକଦେଲେ । କିଛି ସମୟ ପରେ ଜଣେ ଔଜସ୍ୱୀନି, ସୌନ୍ଦର୍ଯ୍ୟର ପରିପାଟୀ ସମ୍ମୋହନକାରୀ ରମଣୀ ମନ୍ଦିର ଭିତରକୁ ଆସି ଚୁଡ଼ିହାରୀଠାରୁ ଚୁଡ଼ି ପିନ୍ଧି ଥିଲେ ଏବଂ ତାଙ୍କ ବାପା ଆସିଲେ ଟଙ୍କା ପୈଠ କରିବେ ବୋଲି ପ୍ରତିଶ୍ରୁତି ଦେଇ ଚୁଡ଼ିହାରୀକୁ ପ୍ରତୀକ୍ଷା କରିବା





ପାଇଁ ଅନୁରୋଧ କରିଥିଲେ । କିଛି ସମୟ ଅତିବାହିତ ହେଲାପରେ ପୂଝାରୀ ପହଞ୍ଚିବାକ୍ଷଣି ସେହି ଚୁଡ଼ିହାରୀ ଟଙ୍କା ମାଗିବାରୁ ପୂଝାରୀ ଦେବୀଙ୍କ ଅଲୌକିକ କରିସ୍ମା ଭାବିଲା ଏବଂ ମନ୍ଦିରକୁ ଯାଇ ଦେବୀଙ୍କ ପାଖରେ ସାମାନ୍ୟ ବିରକ୍ତି ପ୍ରକାଶ କରିବାରୁ ଦେବୀଙ୍କ ହାତରୁ ଝୁନ୍‌ଝୁନ ହୋଇ ଦର୍ଶନ ମଣ୍ଡପରେ ଚୁଡ଼ି ସବୁ ଖସି ପଡ଼ିଲା ଓ ମା'ଙ୍କ ହାତ ସଂପୂର୍ଣ୍ଣ ଖାଲି ହୋଇଗଲା ।

ସ୍ୱର୍ଗୀୟ ଗଦାଧର ପଣ୍ଡାଙ୍କ ସମୟର ଗୋଟିଏ ରୋମାଞ୍ଚକର ଘଟଣା ମଧ୍ୟ ଶ୍ରୁତିଗୋଚର ହୁଏ । ହାଇସ୍କୁଲ ଖେଳପଡ଼ିଆରେ ଉତ୍ସବ ମୁଖର ଖଣ୍ଡାବସା ପର୍ବଦିନ ଏକ 'ମଲ୍ଲଯୁଦ୍ଧ' ହେବାର ଘଟଣା ସମଗ୍ର ଅଞ୍ଚଳରେ ଚହଳ ପକାଇ ଦେବା ସହ ଉତ୍କଣ୍ଠା ପ୍ରକାଶ ପାଇଥିଲା । ଲଙ୍କେଶ୍ୱରୀ ପୂଝାରୀ ଗଦାଧର ପଣ୍ଡା ଓ କୁମ୍ଭକର୍ଣ୍ଣ ରୂପଧାରୀ ବଳିଷ୍ଠ ବାହୁବଳଧାରୀ ମଲ୍ଲ ମଧ୍ୟରେ ଘମାଘୋଟ ଲଢ଼େଇ ବହୁ ସମୟ ଧରି ଚାଲିଲା ଓ ମଲ୍ଲ ଏପରି ଭାବରେ ପୂଝାରୀକୁ ତଳେ ଚାପି ଧରିଥାଏ ଯେ, ସେ ଉପାୟଶୂନ୍ୟ ହୋଇ ଉଁ କି ଚୁ କରିବାର ମଧ୍ୟ ଚାରା ତାଙ୍କ ପାଖରେ ନଥିଲା । ହଠାତ୍ ପୂଝାରୀଙ୍କ ମୁହଁରୁ ଜୋର୍‌ରେ ଶୁଭିଲା 'ଜୟ ମା' ଲଙ୍କେଶ୍ୱରୀ' ତତ୍‌କ୍ଷଣାତ୍ ମଲ୍ଲକୁ ସେହି ଯୁଦ୍ଧରେ ସେ ପରାସ୍ତ କରିବାକୁ ସକ୍ଷମ ହୋଇଥିଲା ।

ଅନ୍ୟ ଏକ ଅଲୌକିକ ଘଟଣା ପାଇଁ ଅତୀତର ସ୍ମୃତିକୁ ପଖାଳନ୍ତି ଭଇଁରୀଗୁଡ଼ା ପୂର୍ବତନ ସରପଞ୍ଚ ଶ୍ରୀଯୁକ୍ତ ଠଣସୁନ୍ଦର ବାଣୁଆ ଯେ, ଥରେ ଗୋଟିଏ ଗାଁରୁ ଭଇଁରୀଗୁଡ଼ାକୁ ଗୋଟିଏ ଟ୍ରକରେ ବରଯାତ୍ରୀମାନେ ଆସିଥିଲେ । ସେମାନଙ୍କ ଅସଦ ବ୍ୟବହାର ଓ ଦେବୀ ବିରୋଧୀ କାର୍ଯ୍ୟକଳାପ ଯୋଗୁଁ ଫେରିବାବେଳେ ଭଇଁରୀଗୁଡ଼ାଠାରେ ସେହି ଟ୍ରକଟି କୌଣସି ଯାନ୍ତ୍ରିକ ତ୍ରୁଟି ନଥାଇ କିମ୍ବା ରାସ୍ତା ଖରାପ ନଥାଇ ମଧ୍ୟ ସ୍ୱତଃପ୍ରବୃତ୍ତ ଭାବେ ଅଟକି ଯାଇଥିଲା । ବହୁ ଅକ୍ଳାନ୍ତ ଚେଷ୍ଟା କଲାପରେ ମଧ୍ୟ କୌଣସି ସୁଫଳ ମିଳିପାରିଲା ନାହିଁ । ପରେ ଗ୍ରାମବାସୀମାନେ ସେମାନଙ୍କୁ ଅନୁରୋଧ କଲେ ଯେ ଏହା ହେଉଛି ଦେବୀ ମା' ଲଙ୍କେଶ୍ୱରୀଙ୍କ ସ୍ଥାନ । ତେଣୁ ନିଜ ଅପକର୍ମ ପାଇଁ ଅନୁତାପ କରି ଦେବୀଙ୍କୁ ନଡ଼ିଆ ଭୋଗ ଅର୍ପଣ କଲେ ନିଶ୍ଚୟ କୌଣସି ଅସୁବିଧା ହେବ ନାହିଁ । ତା'ପରେ ସେମାନେ ଗ୍ରାମବାସୀମାନଙ୍କ କଥାମାନି ସେଭଳି କରିବା ପରେ ଟ୍ରକଟି ପୁନଃ ଚାଲିବାରେ କୌଣସି ଅସୁବିଧା ହେଲା ନାହିଁ । ତେଣୁ ଏଭଳି ଆଶ୍ଚର୍ଯ୍ୟାନ୍ୱିତ ଅଲୌକିକ ଘଟଣା ଅନ୍ୟମାନଙ୍କୁ ଅନ୍ଧବିଶ୍ୱାସ ହୋଇପାରେ କିନ୍ତୁ ଦେବୀଙ୍କ ଅଲୌକିକ ଘଟଣା ଯିଏ ଜାଣିଛି ସେ ନିଶ୍ଚିତ ଭାବରେ ଗଭୀର ବିଶ୍ୱାସ କରିବ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ପୌରାଣିକ ମତବାଦରୁ ଜଣାପଡ଼େ, ଏହି ଜୁନାଗଡ଼ ଥିଲା ଗୋସିଂହ ଦୈତ୍ୟର ରାଜଧାନୀ ଯାହାର ସ୍ୱଷ୍ଟଚିତ୍ର ପାଇଁ ଅସୁରଗଡ଼ ଏବେ ମଧ୍ୟ ମୂକସାକ୍ଷୀ ହୋଇ ରହିଛି । ଥରେ ଏହି ରାଜ୍ୟରେ ଦୁର୍ଭିକ୍ଷ ପଡ଼ିବାରୁ ଇନ୍ଦ୍ରଙ୍କୁ ଆରାଧନା କରାଗଲା ଓ ଇନ୍ଦ୍ରଖୁଣ୍ଟି ପୋତା ହୋଇଥିଲା । ଏ ପର୍ଯ୍ୟନ୍ତ ଖଣ୍ଡାବସା ପର୍ବର ଶୁଭାରମ୍ଭ ହେଲେ ସେହି ଇନ୍ଦ୍ରଖୁଣ୍ଟି ଭିତରେ ଗୋଟିଏ ଖୁଣ୍ଟ ପୋତନ୍ତି ଓ ତା' ଉପରେ ତିନିଟି ଟୋକେଇ ରଖାଯାଏ । ଜୁନାଗଡ଼ର ସେହିପଡ଼ାକୁ କାଳକ୍ରମେ ଇନଖୁଟିପଡ଼ା ନାମରେ ନାମିତ କରାଯାଇଛି । ଲଙ୍କା ଓ ଲଙ୍କେଶ୍ୱର ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ କହିଲେ ଅତ୍ୟୁକ୍ତି ହେବ ନାହିଁ । ସୋନପୁର, ଦେପୁର ଓ ଜୁନାଗଡ଼ଠାରେ ଲଙ୍କେଶ୍ୱରୀ ସ୍ଥାପିତ ହୋଇଛନ୍ତି । ବସ୍ତର (ମଧ୍ୟପ୍ରଦେଶ)ର ଇଷ୍ଟଦେବୀ ଦନ୍ତେଶ୍ୱରୀଙ୍କୁ ଦନ୍ତାବାଡ଼ରୁ ଜେନାବଳି ପାଟଣାର ରାଜା ଆଣି କଳାହାଣ୍ଡିରେ ଅବସ୍ଥାପିତ କରାଇଛନ୍ତି ଏବଂ ଦଶହରା ସମୟରେ ଲଙ୍କେଶ୍ୱରୀଙ୍କ ଫୁଲମାଳ (ଆଜ୍ଞାମାଳ) ଯାହାକି ଅନୁମତିର ଏକ ସଙ୍କେତ ଅଟେ । ତେଣୁ ଦନ୍ତେଶ୍ୱରୀଙ୍କ ପାଖରେ ଆଜ୍ଞାମାଳ ପହଞ୍ଚିଲେ ହିଁ ପର୍ବର ଶୁଭାରମ୍ଭ ହୁଏ । ମା'ଙ୍କ ପବିତ୍ର ବିଜୟ ଓ ହର୍ଷଉଲ୍ଲାସର ପର୍ବ 'ଖଣ୍ଡାବସା' ହୁଏ । ଆଶ୍ୱିନ ମୂଳାଷ୍ଟମୀ ଦିନ ଜେନାବଳିପାଟଣାର ନାଗବଂଶୀୟ ରାଜାଦେବୀଙ୍କ ଖଣ୍ଡାକୁ ଚାଉଳ ଉପରେ ବସାନ୍ତି । ତେଣୁ ଏହି ପାରମ୍ପରିକ ପର୍ବ ଖଣ୍ଡାବସା ନାମରେ ସମଗ୍ର କଳାହାଣ୍ଡିରେ ସୁପ୍ରସିଦ୍ଧ ଲାଭ କରିଛି ।

ତନ୍ତ୍ର ଆରାଧନାର ଆହୁରି ଏକ ବିଶେଷତ୍ୱ ଏ ମନ୍ଦିରରେ ଅଛି । ପ୍ରତି ସଂକ୍ରାନ୍ତିରେ ଦେବୀଙ୍କ ଚକ୍ରେଶ୍ୱରୀ ପୂଜାରେ ଅନେକ ପ୍ରତିଷ୍ଠିତ ବ୍ରାହ୍ମଣ ନିଶାର୍ଦ୍ଧରେ ଦେବୀଙ୍କ ସମ୍ମୁଖରେ ବସି ଚର୍ବ୍ୟ, ଚୋଷ୍ୟ, ଲେହ୍ୟ ଇତ୍ୟାଦିରେ ପୂଜା କରନ୍ତି । ସେ ସମୟରେ ଶକ୍ତି ଆରାଧନାର ଏକମାତ୍ର ଲକ୍ଷ୍ୟ ଥିଲା ନିଜ ରାଜ୍ୟ ସୀମାକୁ ବୃଦ୍ଧି କରି ଏକ ଶକ୍ତିଶାଳୀ ରାଜ୍ୟରେ ପରିଣତ କରିବା ଓ ନିଜକୁ ବଳଶାଳୀ ରାଜା ରୂପେ ପ୍ରତିପାଦିତ କରିବା । ରାଜଧାନୀ ଜେନାଗଡ଼ ବିଜୟବାର୍ତ୍ତା ବହନକରି ତାଙ୍କର ଜୟଗାନ କରିଚାଲିଛି ଅନବରତ ଇତିହାସର ସ୍ୱର୍ଣ୍ଣିମ ଇସ୍ତାହାରରେ । ପ୍ରଳୟ ଓ ସୃଷ୍ଟିର ଲୁଚକାଳି ଏବେ ବି ଚଳଚଞ୍ଚଳ ହେଉଛି ସମୟର ଉତ୍ଥାନପାଦ ମଧ୍ୟରେ ତାଙ୍କର ଚରଣ ଯୁଗଳ ତଳେ । ଏହି ଗଡ଼ର ଅପୁଲକ ହସରେ ସେ ତଲ୍ଲୀନ ହୋଇ ଫୁଲି ଉଠନ୍ତି ଓ କେବେ ଦୁଃଖର କୋରସ ଭିତରେ କେଇ ଟୋପା ଲୁଣି ଲୁହ ଝରାଉଛନ୍ତି । ଜେନାଗଡ଼ରୁ ଜୁନାଗଡ଼ ପର୍ଯ୍ୟନ୍ତ ଲମ୍ବିଥିବା ଏକ ଦିଗନ୍ତହୀନ ଇତିହାସ ନିଜ ବକ୍ଷରେ ଧାରଣ କରି ସ୍ମୃତିର ଏକ ଚାରି ଚଉତା ଇସ୍ତାହାର ଲିପିବଦ୍ଧ କରି ରଖିଛନ୍ତି । ସେହି ଆଶିଷ ଦାୟିନୀ ମା'ଙ୍କ ଚରଣ କମଳରେ ମଥାନତ ହୋଇ ସମସ୍ତଙ୍କ ସୁଖ ଓ ଶାନ୍ତିର କାମନା କରୁଛି ।

'ସର୍ବେ ଭବନ୍ତୁ ସୁଖିନଃ, ସର୍ବେ ସନ୍ତୁ ନିରାମୟାଃ ।'

ଜୟ ମା' ଲଙ୍କେଶ୍ୱରୀ

ପୂର୍ବତନ ନଗରପାଳ
ଜୁନାଗଡ଼



# ଶକ୍ତି - ସ୍ତୁତି - ପୂଜା

ସନ୍ଧ୍ୟା ମହାନ୍ତି

'ଯା' ଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା
ନମସ୍ତସୈ ନମସ୍ତସୈ ନମସ୍ତସୈ ନମୋନମଃ ... ।'

**ବ**ର୍ତ୍ତମାନ ଯୁଗର ପରିସ୍ଥିତିକୁ ସୁଧାରିବା ନିମନ୍ତେ ଶକ୍ତି ପୂଜାର ଆବଶ୍ୟକତା ରହିଛି । ଅବଶ୍ୟ ରହିଛି । ମହାଶକ୍ତିଙ୍କର ପରିପ୍ରକାଶରେ ଧ୍ୱଂସାଭିମୁଖୀ ପୃଥିବୀର ବିରାଟ ପରିବର୍ତ୍ତନ ମଧ୍ୟ ଅବଶ୍ୟମ୍ଭାବୀ । ଆଜିର ଏ ଘଡ଼ିସନ୍ଧି ମୁହୂର୍ତ୍ତରେ ମହାଭଗବତୀ ଶକ୍ତିଙ୍କର ସାହାଯ୍ୟ ନିତାନ୍ତ ପ୍ରୟୋଜନ ହୋଇପଡୁଛି । ଦିନକୁ ଦିନ ଆସୁରିକ ଶକ୍ତି ତା'ର ବଳିଷ୍ଠ ବାହୁବଳରେ ପ୍ରଭୁତ୍ୱ ବିସ୍ତାର କରିବାରେ ଲାଗି ପଡୁଛି । ତେଣୁ ସେହି ଆଦ୍ୟା ଶକ୍ତି - ସୃଷ୍ଟି, ସ୍ଥିତି, ସଂହାରକାରିଣୀ ଭଗବତୀଙ୍କୁ ଅସୁର ଦଳ ଦଳନ ନିମନ୍ତେ ଆବାହନ କରିବାକୁ ହେବ । ମହାଶକ୍ତିଙ୍କର ପୁନଃ ଆବିର୍ଭାବରେ ହିଁ ଆସୁରିକ ଶକ୍ତିର ବିନାଶ ଘଟିପାରିବ । ଅନ୍ୟଥା ସମ୍ଭବ ନୁହେଁ ।

ମହାଶକ୍ତିଙ୍କର ପୂଜାରେ ସାଧକ ହୃଦୟରେ ଭକ୍ତି ଶ୍ରଦ୍ଧା ଓ ଆନ୍ତରିକତା ସହ ଯେତେବେଳେ ମଦ୍ୟ, ମାଂସାଦି ବିଭିନ୍ନ ସାମଗ୍ରୀ ଭଗବତୀଙ୍କୁ ଅର୍ପଣ କରିଥାଆନ୍ତି, ସେତେବେଳେ ତାଙ୍କର ଆତ୍ମାରେ ସତ୍, ଚିଦ୍, ଆନନ୍ଦର ପରିପ୍ରକାଶ ଘଟିଥାଏ । ଏହି ଯେଉଁ ଅପୂର୍ବ ଅନୁଭବ କେବଳ ପ୍ରକୃତ ଅନୁଭବୀ ସାଧକ ହିଁ ହୃଦୟଙ୍ଗମ କରିପାରିବେ । ମନ, ପ୍ରାଣ, ଶରୀରକୁ ଯେଉଁ ଅଜ୍ଞାନ ଅନ୍ଧକାର ଗ୍ରାସ କରିଥାଏ, ତା'ର ବିନାଶ ହୋଇ ସାଧକ ଦିବ୍ୟ ଆଲୋକର ସଂସ୍ପର୍ଶରେ ଆସିଥାଆନ୍ତି । ଶାସ୍ତ୍ରୋକ୍ତ ମତେ ନିର୍ଦ୍ଧାରିତ ମାର୍ଗରେ ମଦ୍ୟପାନ କରିବା ଦ୍ୱାରା ସାଧକଙ୍କର ବିଭିନ୍ନ ଇନ୍ଦ୍ରିୟ କୌଣସି ପ୍ରକାରେ ବିକାରଗ୍ରସ୍ତ ହୁଅନ୍ତି ନାହିଁ କିମ୍ବା ମଦ୍ୟର ନିଶା ସାଧକଙ୍କୁ ଘାରେ ନାହିଁ ବରଂ ସେ ଚତୁର୍ଦ୍ଦିଗର ବିଭିନ୍ନ ମନ୍ଦ ପ୍ରକ୍ରିୟା ତଥା ଆକ୍ରମଣରୁ ନିଜକୁ ମୁକ୍ତ କରି ଶକ୍ତି ପୂଜା ସମୟରେ ଏକ ପ୍ରଶାନ୍ତ ତଥା ପ୍ରଶସ୍ତ ମାନସିକ ସ୍ତରରେ ପ୍ରବେଶ କରିଥାଆନ୍ତି ।

ତନ୍ତ୍ରଶାସ୍ତ୍ରରେ ମଦ୍ୟକୁ କେବଳ ମଦ୍ୟ ଭାବରେ ଗ୍ରହଣ କରାଯାଏ ନାହିଁ କିମ୍ବା ମାଂସକୁ ମଧ୍ୟ ମାଂସ ଭାବରେ ଗ୍ରହଣ କରାଯିବା ଉଚିତ ନୁହେଁ । ଶାସ୍ତ୍ରୋକ୍ତ ମତେ ମଦ୍ୟ ହେଉଛି ଶକ୍ତି । ଭଗବାନଙ୍କ କ୍ରିୟା ସ୍ୱରୂପ । ମାଂସ ହେଉଛି - ଶିବ ସ୍ୱରୂପ ଏବଂ ଏହି ସବୁ ଦ୍ରବ୍ୟକୁ ଯେ ଭକ୍ଷଣ କରନ୍ତି, ସେ ଭଗବତ୍ ଉପଲବ୍ଧିକାରୀ ସ୍ୱୟଂ ଭୈରବ ।

ମାତ୍ର ସାଧକ ମଦ୍ୟ, ମାଂସ ଗ୍ରହଣ ପୂର୍ବରୁ ତାଙ୍କୁ କେତେକ ସର୍ତ୍ତ ବା ନିୟମ ଶୃଙ୍ଖଳାକୁ ଅନୁସରଣ କରିବାକୁ ହେବ । ଯେଉଁ ବ୍ୟକ୍ତି କୁଳମାର୍ଗରେ ଏସବୁ ଗ୍ରହଣ କରିବେ, ତାଙ୍କର ମନରୁ ସମସ୍ତ ପ୍ରକାର ସନ୍ଦେହ, ଭୟକୁ ତାଙ୍କୁ ଦୂର କରିବାକୁ ହେବ ଏବଂ ତଦ୍ ସଂଗେସଂଗେ ତାଙ୍କର ମନରେ ଦୃଢ଼ ସାହସ ଥିବା ଉଚିତ । ସେହି ବ୍ୟକ୍ତି ମଧ୍ୟ ସମସ୍ତ ବେଦ, ଶାସ୍ତ୍ରରେ ମଧ୍ୟ ଧୁରୀଣ ଥିବେ । ଏହିଭଳି ବ୍ୟକ୍ତି ହିଁ କେବଳ ପଞ୍ଚମକାରକୁ ଗ୍ରହଣ କରିବାରେ ଉପଯୁକ୍ତ ଅଟନ୍ତି ।

ପୁନଶ୍ଚ ମଦ୍ୟକୁ ମନ୍ତ୍ର ମାଧ୍ୟମରେ ଶକ୍ତି-ସଂଜୀବିତ କରିବା ଦ୍ୱାରା ମନ ରଜ୍ଜୁରେ ଭଗବାନଙ୍କ ସତ୍ତାକୁ ବାନ୍ଧି ରଖିବାରେ ସାଧକ ସମର୍ଥ ହୋଇଥାଆନ୍ତି ।

ଏସବୁ ନିୟମ ନମାନି ଯେଉଁ ବ୍ୟକ୍ତି ମଦ୍ୟପାନ କରନ୍ତି, ତାଙ୍କୁ କେବଳ ପାପୀ ଏବଂ ମଦ୍ୟପ ବୋଲି କୁହାଯିବ । ମଦ୍ୟ, ମାଂସାଦି ଗ୍ରହଣ କରିବା ପୂର୍ବରୁ ଶାସ୍ତ୍ରୋକ୍ତ ମତେ ଶକ୍ତିଙ୍କୁ ପୂଜାକରି ଶ୍ରୀଗୁରୁଙ୍କୁ ସ୍ମରଣ କରି ଏବଂ ଉତ୍ସର୍ଗ କରି ଗ୍ରହଣ କରିବାକୁ ପଡ଼ିଥାଏ ।

ଯେତେ ସମୟ ପର୍ଯ୍ୟନ୍ତ ଆରାଧ୍ୟ ଦେବତାଙ୍କ ନିକଟରେ ନିଜର ଲୟ ରହିଥିବ, ସେହି ସମୟ ପର୍ଯ୍ୟନ୍ତ କେବଳ ପୂଜା କରାଯିବା ଉଚିତ । ଯେତେବେଳ ପର୍ଯ୍ୟନ୍ତ ମନରେ ଅସ୍ଥିରତା ଆସି ନାହିଁ ଏବଂ ଦୃଷ୍ଟି ଶକ୍ତି ହ୍ରାସ ହୋଇନାହିଁ, ସେହି ସମୟ ପର୍ଯ୍ୟନ୍ତ କେବଳ ମଦ୍ୟପାନ କରିବାକୁ ଶାସ୍ତ୍ର ସମ୍ମତି ଦେଇଥାଏ । ମାତ୍ର ଅତ୍ୟଧିକ ମଦ୍ୟପାନ କେବଳ ପଶୁର କାର୍ଯ୍ୟ ଯାହା ।

ବେଦରେ ସୋମରସକୁ ଯେପରି ସ୍ଥାନ ଦିଆଯାଇଛି, ଠିକ୍ ସେହିଭଳି ତନ୍ତ୍ରଶାସ୍ତ୍ରରେ ମଦ୍ୟକୁ ଗ୍ରହଣ କରାଯାଇଛି । ମାତ୍ର ଯେଉଁ ବ୍ୟକ୍ତି ଅତ୍ୟଧିକ ମଦ୍ୟ ପାନ କରି ନିଜର ହିତାହିତ ଜ୍ଞାନର ବହିର୍ଭୂତ ହୁଅନ୍ତି, ତାଙ୍କ ପାଇଁ ଧ୍ୟାନ, ଜପ, ତପ, ଧର୍ମ, ଭଲ, ମନ୍ଦ ଗୁରୁ ଇତ୍ୟାଦି କୌଣସି ଉପକାରରେ ଆସନ୍ତି ନାହିଁ । କୁଳ ଧର୍ମ ଅନୁସାରେ ସେଭଳି ବ୍ୟକ୍ତି କୁଳମାର୍ଗ ଅନୁସରଣ କରିବା ନିମନ୍ତେ କଦାପି ଉପଯୁକ୍ତ ନୁହଁନ୍ତି ।

ତାଛଡ଼ା ସେ ନିଜର ପଶୁବୃତ୍ତିକୁ ଚରିତାର୍ଥ କରିବା ନିମିତ୍ତ ମଦ୍ୟ, ମାଂସ ଓ ମୈଥୁନକୁ ଆଶ୍ରୟ କରିଥାନ୍ତି ଏବଂ ଏହିଭଳି ବ୍ୟକ୍ତିଙ୍କୁ ଘୃଣା କରିବା ସଂଗେସଂଗେ ସମାଲୋଚନା କରାଯିବା ଉଚିତ ।

ତନ୍ତ୍ରଶାସ୍ତ୍ରରେ ମୈଥୁନକୁ ମନର ଚରିତାର୍ଥକୁ ସନ୍ତୋଷ କରାଇବା ନିମନ୍ତେ କଦାପି ଗ୍ରହଣ କରାଯାଇନାହିଁ । ନାରୀ ହେଉଛି ଶକ୍ତି ରୂପିଣୀ । ତାହାକୁ ସାଧକ ସାଧନାର ଏକ ଅଂଗ ରୂପେ ଗ୍ରହଣ କରିବାର ଅର୍ଥ ହେଲା - ନିଜର ମନ କେନ୍ଦ୍ରକୁ ସଂଯତ କରିବାରେ ନାରୀକୁ ସାଧନାରେ ବ୍ୟବହାର କରିବା, କେତେକ ସାଧନାରେ ସାଧକ ସ୍ତ୍ରୀକୁ ନିଜର କ୍ରୋଡ଼ରେ ଧାରଣ କରି ସାଧନା କରନ୍ତି । ଯଦ୍ଦ୍ୱାରା ତାଙ୍କର ମନରେ କୌଣସି କାମ ବିକାର ଆଉ ପ୍ରବେଶ କରେ ନାହିଁ । ସେହିଭଳି ସଂଯମୀ ସାଧକ କେବଳ ଏଭଳି କାର୍ଯ୍ୟ କରିପାରନ୍ତି । ତା' ନହେଲେ ସେ ସାଧନା ପଥରେ ତାଙ୍କୁ ବହୁ ବିପଦ ବରଣ କରିବାକୁ ପଡ଼ିଥାଏ .. । ଏଣୁ କୁଳଧର୍ମ କହେ - ମନରୁ ସମସ୍ତ ପ୍ରକାର ବିକାର, ଲୋଭ, ମୋହ, ଆସକ୍ତିକୁ ସଂପୂର୍ଣ୍ଣ ରୂପେ ତ୍ୟାଗ କରି ଭଗବତ ପ୍ରେମ ସହିତ ନିଜକୁ ଭଗବତୀଙ୍କୁ ଅର୍ପଣ କରନ୍ତି । ଦେବୀଙ୍କୁ ପୂଜା ସମୟ ବ୍ୟତୀତ ଅନ୍ୟ ସମୟରେ ଯଦି କେହି ଏହି ପଞ୍ଚ ଦ୍ରବ୍ୟ ବା ପଞ୍ଚମକାରକୁ ଅସତ୍ ମାର୍ଗରେ ବ୍ୟବହାର କରନ୍ତି ତାଙ୍କୁ ଅତି ଘୃଣ୍ୟ ବ୍ୟକ୍ତି ବୋଲି ବିଚାର କରିବାକୁ ହେବ ।

ତେବେ ସାଧାରଣ ସାଧକ ନାରୀକେଳକୁ ମଦ୍ୟ ରୂପେ, ମାଂସ ସ୍ଥଳରେ ଗହମ ତଣ୍ଡୁଳ ଇତ୍ୟାଦି ବିଭିନ୍ନ ପାଣିଫଳକୁ ମତ୍ସ୍ୟ ରୂପେ ଧାନ, ଚାଉଳ ଆଦିକୁ ମୁଦ୍ରା ଏବଂ ବିଭିନ୍ନ ଅଂଗ ମୁଦ୍ରା ପ୍ରଦର୍ଶନ ପୂର୍ବକ ପୁଷ୍ପ ସମର୍ପଣକୁ ମୈଥୁନ ରୂପେ ସାଧକ ଦେବୀଙ୍କ ନିକଟରେ ପୂଜା ସାମଗ୍ରୀ ରୂପେ ଗ୍ରହଣ କରିଥାନ୍ତି ।

'ଯା' ଦେବୀ ସର୍ବଭୂତେଷୁ ମାତୃ ରୂପେଣ ସଂସ୍ଥିତା
ନମସ୍ତସୈ ସମସ୍ତସୈ ନମସ୍ତସୈ ନମୋ ନମଃ ... ।'

ନିଖିଳ ଦେବଗଣଙ୍କ ତେଜ ଓ ଶକ୍ତି ରାଶିର ସମଷ୍ଟି ଭୂତ ମୂର୍ତ୍ତି ଜଗଜ୍ଜନନୀ ଦୁର୍ଗା । ମାଆର ପ୍ରଭାବ ଅତୁଳନୀୟ ।

ହେ ମାତଃ ! ପୁଣ୍ୟାତ୍ମା ଗୃହରେ ତୁମେ ଲକ୍ଷ୍ମୀ ରୂପା, ପାପୀ ଗୃହରେ ଅଲକ୍ଷ୍ମୀ ରୂପା, ନିର୍ମଳମତି ବ୍ୟକ୍ତିଗଣଙ୍କ ଅନ୍ତରରେ ତୁମେ ବୁଦ୍ଧି ରୂପା, ସାଧୁ ଚିତ୍ତରେ ତୁମେ ଶ୍ରଦ୍ଧା ରୂପା ।

ହେ ମାତଃ ! ତୁମର ରୂପ ଅଚିନ୍ତ୍ୟ । ତୁମର ବୀର୍ଯ୍ୟବତା ଅପରିସୀମା । ତୁମେ ତ୍ରିଗୁଣମୟୀ ହୋଇ ମଧ୍ୟ ରଜଃ - ତମାଦି ଦୋଷର ଲିପ୍ତ ନୁହଁ । ତୁମେ ହରିହରଙ୍କର ଅଜ୍ଞେୟ । ତୁମେ ଅବ୍ୟକ୍ତ ଆଦ୍ୟା ପ୍ରକୃତି । ଦେବଗଣଙ୍କ ତୃପ୍ତି ହେତୁ ସ୍ୱାହା ମନ୍ତ୍ର ତୁମେ ପିତୃଗଣଙ୍କ ତୃପ୍ତି ନିମିତ୍ତ ସ୍ୱଧା ମନ୍ତ୍ର ମଧ୍ୟ ତୁମେ । ତୁମେ ହିଁ ଦେବଗଣଙ୍କର ଆବାହନକାରୀ ବଷଟ୍‌କାର । ତୁମେ ମଧ୍ୟ ଋଗ୍ ବେଦର ଛନ୍ଦୋବଦ୍ଧ ମନ୍ତ୍ର । ଯଜୁର୍ବେଦର ଗଦ୍ୟମନ୍ତ୍ର ଓ ସାମ୍‌ବେଦର ଗୀତମୟ ମନ୍ତ୍ର । ତୁମେ ବେଦ-ବିଦ୍ୟା, ବ୍ରହ୍ମ-ବିଦ୍ୟା, ସର୍ବ ଦୁଃଖ ହନ୍ତ୍ରୀ । ତୁମେ ଦୁର୍ଗା - ଦୁର୍ଗମ ଭବସାଗରରେ ନୌକା । ତୁମେ ବିଷ୍ଣୁ - ହୃଦୟ ବାସିନୀ ଲକ୍ଷ୍ମୀ । ଶିବଙ୍କ ଅର୍ଦ୍ଧାଙ୍ଗଭୂତା ଗୌରୀ ।

ତୁମର ବଦନମଣ୍ଡଳ ସୁନ୍ଦର, ଈଷତ୍ ହାସ୍ୟଯୁକ୍ତ, ସୁନିର୍ମଳ, ପୂର୍ଣ୍ଣଚନ୍ଦ୍ର ସଦୃଶ ସୁବର୍ଣ୍ଣବର୍ଣ୍ଣ । ଏହି ମୁଖକୁ ଦେଖି କ୍ରୋଧୀ ମହିଷାସୁର ତୁମକୁ ଯେ ପ୍ରହାର କଲା, ଏହା ଅତି ଆଶ୍ଚର୍ଯ୍ୟ । ତୁମେ ଯେତେବେଳେ କୋପଯୁକ୍ତ ହୋଇଥିଲ, ସେତେବେଳେ ତୁମର ଭ୍ରୁକୁଟି ବଦନ ମଣ୍ଡଳ ଉଦୟକାଳୀନ ଚନ୍ଦ୍ର ଭଳି ରକ୍ତ ବର୍ଣ୍ଣ ଧାରଣ କରିଥିଲା । ସେହି କୋପିତ ମୁଖ ଦେଖି ମହିଷାସୁର ଯେ ସେତେବେଳେ ପ୍ରାଣତ୍ୟାଗ କଲା ନାହିଁ । ଏହା ବି ଅତି ଆଶ୍ଚର୍ଯ୍ୟ । ତୁମେ କ'ଣ କରିପାରିନଥାନ୍ତ ଥରଟିଏ ମାତ୍ର ଦୃଷ୍ଟିପାତ ଦ୍ୱାରା ସମସ୍ତ ଅସୁରଙ୍କୁ ଭସ୍ମୀଭୂତ କରି ? ଅବଶ୍ୟ କରିପାରିଥାନ୍ତ । ମାତ୍ର ସେମାନଙ୍କ ପ୍ରତି ଯେଉଁ ଏତେ ଏତେ ଅସ୍ତ୍ରଶସ୍ତ୍ର ପ୍ରହାର କରିଥିଲ ଅବଶ୍ୟ ସେଥିରେ ନିଗୂଢ଼ ରହସ୍ୟ ଅଛି । ତୁମର ସ୍ନେହ ତଥା କରୁଣା ଶତ୍ରୁମାନଙ୍କ ପ୍ରତି ମଧ୍ୟ ଅପରିସୀମ । ଶତ୍ରୁ ହେଲେ ମଧ୍ୟ ଅସୁରଗଣ ତୁମର ସନ୍ତାନ । ତୁମର ଅସ୍ତ୍ର ସଂସ୍ପର୍ଶରେ ଆସି ସେମାନେ ପବିତ୍ର ହୋଇ ଉତ୍କୃଷ୍ଟ ଲୋକକୁ ଗମନ କରନ୍ତି । ଏହିଭଳି ସେମାନଙ୍କ ପାଇଁ ତୁମ ଅନ୍ତରରେ ଶୁଭକାମନା ସତତ ବିରାଜମାନ । ତୁମ ଅସ୍ତ୍ରଶସ୍ତ୍ରର ଉଜ୍ଜ୍ୱଳତା ଦେଖି ଅସୁରମାନଙ୍କର ଦୃଷ୍ଟି ଶକ୍ତି ଯେ ନଷ୍ଟ ହୋଇ ନାହିଁ ତାହାର କାରଣ ସେତେବେଳେ ସେମାନେ ତୁମର ସେହି କାରୁଣ୍ୟପୂର୍ଣ୍ଣ ତଥା କୃପାପୂର୍ଣ୍ଣ ବଦନ ମଣ୍ଡଳକୁ ଦର୍ଶନ କରୁଥିଲେ । ଯୁଦ୍ଧ କ୍ଷେତ୍ରରେ ତୁମର ନିଷ୍ଠୁରତା ଭୀଷଣ କିନ୍ତୁ ଏହି ସମୟରେ ତୁମ ଚିତ୍ତରେ କୃପା - ପ୍ରବାହ ମଧ୍ୟ ଅଗାଧ । ଏହିଭଳି ବିରୁଦ୍ଧ ଭାବର ସମନ୍ୱୟ କେବଳ ତୁମଠାରେ ହିଁ ବିଶ୍ୱଦୃଷ୍ଟ ହୁଏ । ଏକ ସମୟରେ ଏକାଧାରରେ ସମର-ନିଷ୍ଠୁରତା ଓ ସ୍ନେହ, କୃପା, କରୁଣା ପରାୟଣତା ଏକମାତ୍ର ତୁମ ଦ୍ୱାରା ସମ୍ଭବ ।

ତୁମେ ଅସୁର ନାଶ କରି ଆମ୍ଭମାନଙ୍କ ଭୟ ବିଦୂରିତ କରିଛ । ପୁନର୍ବାର ଯେଉଁମାନଙ୍କୁ ନାଶ କରିଛୁ, ସେମାନଙ୍କୁ ସ୍ୱର୍ଗେ ପଠାଇଛ । ଅଦ୍‌ଭୁତ ତୁମର କର୍ମ । ତୁମଙ୍କୁ ନମସ୍କାର । ଖଡ୍‌ଗ, ଶୂଳ, ଗଦା ଏହିସବୁ ଅସ୍ତ୍ର ତୁମ କରପଲ୍ଲବରେ ବିରାଜମାନ । ଏହିସବୁ ଅସ୍ତ୍ର ଦ୍ୱାରା ଆମ୍ଭମାନଙ୍କୁ ରକ୍ଷା କର । ଶୀଘ୍ର ଶୀଘ୍ର ତ୍ରିଶୂଳ ଘୂରାଇ ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣ ସବୁଦିଗର ଅମଙ୍ଗଳ ନାଶ କର । ତୁମର ଯେତେ ସୌମ୍ୟରୂପ ଓ ଯେତେ ଭୟଙ୍କର ଉଗ୍ରମୂର୍ତ୍ତି ପ୍ରତ୍ୟେକ ଦ୍ୱାରା ଆମ୍ଭମାନଙ୍କର ଓ ପୃଥିବୀବାସୀ ସମସ୍ତଙ୍କର କଲ୍ୟାଣ ବିଧାନ କର ।

ଦେବୀଙ୍କୁ ପ୍ରଣାମ । ମହାଦେବୀଙ୍କୁ ପ୍ରଣାମ । ଶିବ-ଶକ୍ତିଙ୍କୁ ପ୍ରଣାମ । ମହା ପ୍ରକୃତି, ମହା କଲ୍ୟାଣକାରୀଙ୍କୁ ପ୍ରଣାମ । ଜ୍ୟୋସ୍ନା ରୂପିଣୀ ସୁଖକାରିଣୀଙ୍କୁ ପ୍ରଣାମ । ଯେ କଲ୍ୟାଣୀ, ଯେ ବୁଦ୍ଧି ଓ ସିଦ୍ଧି

ଯେ ରାକ୍ଷସମାନଙ୍କ ଶକ୍ତି, ରାଜାମାନଙ୍କର ଲକ୍ଷ୍ମୀ, ଯେ ଶର୍ବାଣୀ ତାହାଙ୍କୁ ନମସ୍କାର, ଯେ ଦୁର୍ଗା ଦୁର୍ଗମରୁ ପାରି କରିଥାଆନ୍ତି ଯେ ସମସ୍ତର ସାର ଏବଂ ସମସ୍ତ କରିପାରନ୍ତି । ଯେ ଜ୍ଞାନ ରୂପା, କୃଷ୍ଣ ବର୍ଣ୍ଣା ଓ ଧୂମବର୍ଣ୍ଣା ତାହାଙ୍କୁ ନମସ୍କାର । ଯେ ଅତି ସ୍ନେହମୟୀ, କରୁଣାମୟୀ, କୃପାମୟୀ ଓ ଅତି ଭୟଙ୍କରୀ ତାହାଙ୍କୁ ପ୍ରଣାମ । ଯେ ଜଗତର ସ୍ଥିତି କାରିଣୀ, କ୍ରିୟାରୂପା - ମସ୍ତକ ଅବନତ କରି ତାହାଙ୍କୁ ପ୍ରଣାମ କରୁଛୁ ... ।

ଯେ ସମସ୍ତ ପଦାର୍ଥରେ ବିଷ୍ଣୁ ମାୟା ବୋଲି କଥିତା । ଯେ ସର୍ବ ଭୂତେ ବୁଦ୍ଧି ରୂପେ ଅବସ୍ଥିତା ତାହାଙ୍କୁ ପ୍ରଣାମ କରୁଛୁ । ଦେହ ଦ୍ୱାରା, ବାକ୍ୟ ଦ୍ୱାରା, ମନ ଦ୍ୱରା ତାହାଙ୍କୁ (ତିନିଥର) ପ୍ରଣାମ କରୁଛୁ । ଯେ ସର୍ବଭୂତରେ ନିଦ୍ରା ରୂପେ, ଛାୟା ରୂପେ, ଶକ୍ତି ରୂପେ, ତୃଷ୍ଣା ରୂପେ, କ୍ଷାନ୍ତି ରୂପେ, ଜାତି ରୂପେ, ଲଜ୍ଜା ରୂପେ, ଶାନ୍ତି ରୂପେ, ଶ୍ରଦ୍ଧା ରୂପେ, କାନ୍ତି ରୂପେ, ଲକ୍ଷ୍ମୀ ରୂପେ, ବୃତ୍ତି ରୂପେ, ସ୍ମୃତି ରୂପେ, ଦୟା ରୂପେ, ତୁଷ୍ଟି ରୂପେ, ମାତୃ ରୂପେ ଓ ଭ୍ରାନ୍ତି ରୂପେ ବିରାଜମାନ, ତାଙ୍କୁ ଆମ୍ଭେମାନେ କିନ୍ତୁ ମନୋବାକ୍ୟରେ (ତିନିଥର) ପ୍ରଣାମ କରୁଛୁ ।

ନମସ୍ତସୈ, ନମସ୍ତସୈ, ନମସ୍ତସୈ ନମୋନମଃ ..., ଯେ ସମସ୍ତ ପ୍ରାଣ ଓ ଇନ୍ଦ୍ରିୟବର୍ଗର ଅଧିଷ୍ଠାତ୍ରୀ, ଯେ ସର୍ବଭୂତରେ ସତତ ଦୀପ୍ତି ଶାଳିନୀ, ଯେ ଜୀବାତ୍ମା ରୂପେ ସମସ୍ତ ଜଗତ୍ ପରିବ୍ୟାପ୍ତ । ସେହି ଜଗତ ଜନନୀଙ୍କୁ ପୁନଃ ପୁନଃ ନମସ୍କାର .. ।

ପୁନଶ୍ଚ ତୁମେ ଜଗତ ସୃଷ୍ଟିକର । ତୁମେ ପାଳନ କର । ଅନ୍ତେ ତୁମରି ମଧ୍ୟରେ ବିଲୟ ହୁଏ ।

ପରମ ବିଦ୍ୟା ରୂପ ତତ୍ତ୍ୱମସୀ ବାକ୍ୟର ତୁମେ ମୂର୍ତ୍ତି । ସେଥି ନିମିତ୍ତ ତୁମେ ମହାବିଦ୍ୟା । ସର୍ବଜନ ମୋହିନୀ ବୋଲି ତୁମେ ମହାମାୟା । ବିଶ୍ୱର ପ୍ରତ୍ୟେକ ଅର୍ଥର ତୁମେ ଅସାଧାରଣ କର୍ତ୍ତା - ତୁମେ ହିଁ ମହାମେଧା । ବେଦ ବିଦ୍ୟା ରୂପିଣୀ । ମହାସ୍ମୃତି ତୁମେ ଜୀବର ଭୋଗ ଇଚ୍ଛା ରୂପ ମହାମୋହ ତୁମରିଠାରୁ ନିର୍ଗତ । ହେ ବିଶ୍ୱେଶ୍ୱରୀ ଜଗଧାତ୍ରୀ । ମହାଦେବ ଶକ୍ତି (ମହାଦେବୀ) ତୁମେ । ମହାଅସୁର ଶକ୍ତି ମଧ୍ୟ ତୁମେ (ମହାସୁରୀ)

ସତ୍ତ୍ୱ-ରଜଃ-ତମଃ ରୂପିଣୀ ତୁମେ ଆଦି ପ୍ରକୃତି । ଯେତେବେଳେ ତମୋଗୁଣର ବିଲୟ ହୁଏ ସେହି ମହାରାତ୍ରୀ ମଧ୍ୟ ତୁମେ । ସର୍ବ ସଂପଦ, ସର୍ବେଶ୍ୱରୀ, ବୁଦ୍ଧି, ଲଜ୍ଜା, ପୁଷ୍ଟି, ତୁଷ୍ଟି, କ୍ଷାନ୍ତି, କ୍ଷମା ରୂପରେ ତୁମେ ହିଁ ବିରାଜମାନା, ଖଡ଼୍‌ଗଧାରିଣୀ, ଶୂଳ ଧାରିଣୀ । ନରମୁଣ୍ଡଧାରିଣୀ, ଗଦାଧାରିଣୀ, ଚକ୍ରଧାରିଣୀ, ଲୌହ କଣ୍ଟକାକୀର୍ଣ୍ଣ ଭୂଷଣ୍ଡୀଧାରିଣୀ, ଶଙ୍ଖଧାରିଣୀ, ଧନୁର୍ବାଣଧାରିଣୀ ଏହି ବିଭିନ୍ନ ମୂର୍ତ୍ତି ତୁମରି ହିଁ ବିଭିନ୍ନ ପ୍ରକାଶ । ଐହିକ ସୁଖ ଦାତ୍ରୀ ରୂପେ ତୁମେ ସୌମ୍ୟା, ସ୍ୱର୍ଗ ସୁଖ ଦାତ୍ରୀ ରୂପେ ତୁମେ ସୌମ୍ୟତାରା, ମୋକ୍ଷଦାତ୍ରୀ ରୂପେ ତୁମେ ଅଶେଷ ସୌମ୍ୟ ତାରା ପରମା ସୁନ୍ଦରୀ । ହେ ସର୍ବମୟୀ, ଯେ କୌଣସି ସ୍ଥାନରେ ଯାହା ଉତ୍ତମ ଓ ମଧ୍ୟମ ବସ୍ତୁ ଅଛି, ସେହି ସମସ୍ତର ତୁମେ ହିଁ ଶକ୍ତି । ସୁତରାଂ ତୁମକୁ କି ସ୍ତବ କରାଯିବ ?

ଜଗତର ସୃଷ୍ଟି-ସ୍ଥିତି-ପାଳନକର୍ତ୍ତା, ଯେଉଁ ବିଷ୍ଣୁ ତାହାଙ୍କୁ ମଧ୍ୟ ତୁମେ ନିଦ୍ରାରେ ବଶୀଭୂତ କରିଛ, ତେବେ ତୁମକୁ ଜଗତରେ କିଏ ବା କିପ୍ରକାର ସ୍ତୁତି କରିପାରିବ ?

ପ୍ରତ୍ୟେକଙ୍କ ହୃଦୟରେ ପରମପୁରୁଷ ନିଦ୍ରିତ ଅବସ୍ଥାରେ ଅଛନ୍ତି, ମହାମାୟାଙ୍କ କୃପାରେ ସେ ଜାଗ୍ରତ ହେଲେ ଏବଂ ରଜଃ, ତମଃ ଗୁଣରୂପୀ ଅସୁର ଦ୍ୱୟ ବିନଷ୍ଟ ହେଲେ ଯାଇ ପରମ କଲ୍ୟାଣର ପଥ ଖୋଲି ଯାଇପାରିବ ।

ପୁଣି ହେ ନାରାୟଣି ! ହେ ଶରଣାଗତ-ଦୁଃଖହାରିଣୀ ଦେବୀ, ପ୍ରସନ୍ନା ହୁଅ । ନିଖିଳ ଜଗତରେ ତୁମେ ଏକମାତ୍ର ଆଧାର ରୂପା । ତୁମେ ରସ ରୂପେ ସମସ୍ତ ବିଶ୍ୱକୁ ଆପ୍ୟାୟିତ କରିଛ । ତୁମେ ଅନନ୍ତବୀର୍ଯ୍ୟ ଶାଳିନୀ ବୈଷ୍ଣବୀ ଶକ୍ତି । ତୁମେ କାମ ରୂପା ମହାମାୟା । ସମସ୍ତ ଜଗତକୁ ତୁମେ ମୁଗ୍ଧ କରି ରଖିଛ । ତୁମେ ପ୍ରସନ୍ନ ହେଲେ ଜୀବ ମୁକ୍ତି ଲାଭ କରେ । ସମସ୍ତ ବିଦ୍ୟାର ତୁମେ ମୂର୍ତ୍ତିମନ୍ତ ପ୍ରତୀକ । ପ୍ରତ୍ୟେକ ନାରୀଙ୍କଠାରେ ତୁମରି କଳା ରୂପରେ ପ୍ରକାଶ ରୂପା ଓ ମୋକ୍ଷଦା । ତୁମେ ସ୍ତବର ବହିର୍ଗତ । ତୁମେ ଏତେ ଏତେ ଉତ୍କୃଷ୍ଟ ଯେ କାହାରି ଭାଷା ନାହିଁ ତାହା ପ୍ରକାଶ କରିବାକୁ ।

ତୁମେ ବୁଦ୍ଧି ରୂପରେ ପ୍ରତ୍ୟେକଙ୍କ ହୃଦୟରେ ଅବସ୍ଥାନ କର । କଳାକାଷ୍ଠାଦି ରୂପ ଧାରଣ କରି କାଳ ସ୍ୱରୂପରେ ତୁମେ ପ୍ରତି ମୁହୂର୍ତ୍ତରେ ପ୍ରତ୍ୟେକ ପଦାର୍ଥର ପରିଣାମ ଘଟାଅ । ଅବଶେଷରେ ମୃତ୍ୟୁ ଆନୟନ କର । ହେ ନାରାୟଣି ! ତୁମକୁ ନମସ୍କାର । ତୁମେ ସକଳ ମଂଗଳର ମଂଗଳ । ସର୍ବ ଶୁଭ ଫଳପ୍ରଦା, ସର୍ବ କାର୍ଯ୍ୟାର୍ଥ ସାଧିନୀ । ତୁମେ ତ୍ର୍ୟମ୍ବକ, ଜନନୀ, ଦୁହିତା ଓ ଜାୟା । ଏହି ତିନି ପ୍ରକାରର ଅମ୍ବା । ତୁମେ ଗୌରୀ, ତୁମକୁ ନମସ୍କାର । ତୁମେ ସୃଷ୍ଟି, ସ୍ଥିତି, ବିନାଶର ସନାତନୀ ଶକ୍ତି ରୂପା । ତୁମେ ଶରଣାଗତ ଦୀନ କାତରଗଣଙ୍କ ପରିତ୍ରାଣକାରିଣୀ ସର୍ବଜନର ସର୍ବବ୍ୟାଧି ନାଶକାରିଣୀ ।

ଆହୁରି ମଧ୍ୟ ତୁମେ ହଂସଯୁକ୍ତ ବିମାନରେ ବାହ୍ମଣୀ ରୂପ ଧାରଣ କରି ଅବସ୍ଥାନ କର ଓ କୁଶାଗ୍ର ଦ୍ୱାରା କମଣ୍ଡଳୁର ଜଳ ଛିଟାରେ ଶାନ୍ତିବାରି ବର୍ଷଣ କର । ତୁମେ ମାହେଶ୍ୱରୀ, ମହାଶକ୍ତି ଧାରଣ କରି ବୃଷଭ ଉପରେ ଅବସ୍ଥାନ କର । ପୁନର୍ବାର ତୁମେ କୌମାରୀ ରୂପ ଧାରଣ କରି ମୟୂର କୁକ୍କୁଟ ଉପରେ ଆରୋହଣ କର । ତୁମେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରିଣୀ ବୈଷ୍ଣବୀ ଶକ୍ତି । ତୁମେ ବରାହ ଶକ୍ତି, ଭୟଙ୍କର ରୂପଧାରଣ କରି ମହାପ୍ରଳୟରେ ଜଳମଗ୍ନା ପୃଥିବୀକୁ ଦନ୍ତଦ୍ୱାରା ଉଦ୍ଧାର କର । ତୁମେ ନାରସିଂହ ଶକ୍ତି, ନର-ସିଂହ ରୂପ ଧାରଣ କରି ହିରଣ୍ୟକଶିପୁକୁ ବଧ କରି ତ୍ରିଲୋକକୁ ରକ୍ଷା କର । ତୁମେ କିରୀଟ ଓ ମହାବଜ୍ର ଧାରିଣୀ, ଐନ୍ଦ୍ରୀ ଶକ୍ତି ରୂପେ ସହସ୍ରଲୋଚନା ଓ ବୃତ୍ରାସୁରକୁ ବଧ କର ।





ତୁମେ ଶିବହତି । ଦୈତ୍ୟଙ୍କର ମହାସୈନ୍ୟ ତୁମେ ବିନାଶ କରିଛ । ତୁମ ରୂପ ଭୟଙ୍କର ଶବ୍ଦ ଭୀଷଣ । ତୁମେ ଚାମୁଣ୍ଡା, ବିକଟ ଦନ୍ତ ହେତୁ ତୁମର ମୁଖ ଭୟଙ୍କର । ତୁମେ ମୁଣ୍ଡମାଳାରେ ଶୋଭିତ । ଚଣ୍ଡମୁଣ୍ଡ ମହାଦୈତ୍ୟଙ୍କୁ ତୁମେ ବିନାଶ କରିଛ । ତୁମେ ଲକ୍ଷ୍ମୀ, ଲଜ୍ଜା, ମହାବିଦ୍ୟା-ଶ୍ରଦ୍ଧା, ପୁଷ୍ଟି ଓ ସ୍ୱଧା ସ୍ୱରୂପିଣୀ । ତୁମେ ମହାରାତ୍ରି, ମହାମାୟା, ମେଧା, ସରସ୍ୱତୀ, ମହାଶକ୍ତି, ସତ୍ୟରୂପା, ସର୍ବେଶ୍ୱରୀ ଓ ସର୍ବସମଷ୍ଟି ।

ହେ ନାରାୟଣି ! ତୁମକୁ ପ୍ରଣାମ । ତୁମେ ପ୍ରସନ୍ନା ହୁଅ । ତୁମ ତ୍ରିନୟନଯୁକ୍ତ ବଦନ ଆମ୍ଭମାନଙ୍କୁ ରକ୍ଷା କରୁ । ତୁମ ତ୍ରିଶୂଳ ଆମ୍ଭମାନଙ୍କର କଲ୍ୟାଣ କରୁ । ତୁମର ଯେଉଁ ଘଣ୍ଟା ଶବ୍ଦ ଦ୍ୱାରା ଜଗତ୍ ପରିପୂର୍ଣ୍ଣ କରି ଅସୁରମାନଙ୍କ ତେଜ ନଷ୍ଟ କରିଥାଅ, ସେହି ଶବ୍ଦ ଦ୍ୱାରା ମାତା ଯେଭଳି ପୁତ୍ରକୁ ରକ୍ଷା କରେ ସେହିଭଳି ଆମ୍ଭମାନଙ୍କୁ ପାପରୁ ରକ୍ଷା କର । ଅସୁରଙ୍କ ରକ୍ତ ଲିପ୍ତ ତୁମର ସେହି ଖଡ୍‌ଗ ଆମ୍ଭମାନଙ୍କର କଲ୍ୟାଣ ବିଧାୟକ ହେଉ ।

ତୁମେ ତୁଷ୍ଟା ହେଲେ ସବୁ ଦୁଃଖ ଉପଶମ ହୁଏ । ତୁମେ ରୁଷ୍ଟା ହେଲେ ସବୁ ଅଭୀଷ୍ଟ ଅନିଷ୍ଟ ହୁଏ । ତୁମକୁ ଯେଉଁମାନେ ଆଶ୍ରୟ କରନ୍ତି ସେମାନଙ୍କର ସମସ୍ତଙ୍କର ଆଶ୍ରୟସ୍ଥଳ ତୁମେ ହୁଅ । ବହୁ ମୂର୍ତ୍ତି ଧାରଣ କରି ତୁମେ ଧର୍ମ ବିଦ୍ୱେଷୀ ଅସୁରମାନଙ୍କୁ ଯେଉଁଭଳି ବଧ କଲ ତାହା ତୁମ ଛଡ଼ା ଆଉ କିଏ ବା ସମର୍ଥ ହୋଇଥାଆନ୍ତା ? ଗୋଟିଏ ଦିଗରେ ତୁମେ ଉଜ୍ଜ୍ୱଳ ଆଲୋକବତୀ ସମବିବେକ-ଦୀପ । ଅନ୍ୟ ଦିଗରେ ତୁମେ ମହାଅନ୍ଧକାର ମମତା ଗର୍ଭ । ଏହି ଦିଗରେ ତୁମେ ହିଁ ଜୀବଙ୍କୁ ଚଳାଅ । ତୁମେ ବିଶ୍ୱେଶ୍ୱରୀ । ବିଶ୍ୱକୁ ରକ୍ଷା କରିଛ । ତୁମେ ବିଶ୍ୱରୂପା ହେତୁ ବିଶ୍ୱକୁ ଧାରଣ କରିଛ । ତୁମେ ବିଶ୍ୱର ପରମ ଆରାଧ୍ୟା ବନ୍ଦନୀୟା ମାତା .. ! ଯେଉଁମାନେ ତୁମ ପାଦ ପଦ୍ମରେ ଭକ୍ତି ପ୍ରଣତ, ସେମାନେ ବିଶ୍ୱର ଆଶ୍ରୟ ସ୍ୱରୂପ ।

ହେ ବିଶ୍ୱର କ୍ଳେଶ ହାରିଣୀ ଦେବି ! ପ୍ରଣତ ଜନଙ୍କ ପ୍ରତି ପ୍ରସନ୍ନ ହୁଅ, ତ୍ରିଭୁବନବାସୀଙ୍କ ପ୍ରତି ବରଦାତ୍ରୀ ହୁଅ .. ।

ସତେ ବା ଏତେ ପରେ ଜଗଜ୍ଜନନୀଙ୍କ ସମ୍ମୁଖରେ ଏହି ସ୍ତବପାଠ ପରେ ପ୍ରସନ୍ନା ତଥା ଆବିର୍ଭୂତା ହୋଇ ମାତା କହୁଛନ୍ତି - ମୁଁ ବରଦାତ୍ରୀ, ଜଗତର ହିତରେ ଯେଉଁ ବର ତୁମେ ପ୍ରାର୍ଥନା କରିବ, ତହିଁରେ ମୁଁ ତଥାସ୍ତୁ କରିବି .. ।

ସତେ ସତେ ଏଥିରେ ଜଗତର ସମସ୍ତ ଜନଗଣ ଆଜି ଆନନ୍ଦ ଚିତ୍ତରେ ପ୍ରାର୍ଥନା କରି ଏହି ବର ଭିକ୍ଷା କରୁଛନ୍ତି କି - ଆମ୍ଭମାନଙ୍କର ସମସ୍ତ ଶତ୍ରୁ ବିନାଶ କର । ଯାହାଦ୍ୱାରାକି ଜଗତର କଲ୍ୟାଣ ପଥରେ ସବୁବାଧା ଦୂରୀଭୂତ ହୋଇଯିବ ଆପେ ଆପେ । ଏଭଳି ଜନକଲ୍ୟାଣରେ ଯେଉଁମାନେ ବାଧା ଦିଅନ୍ତି, ବିଘ୍ନ ସୃଷ୍ଟି କରନ୍ତି, କୃପା କରି ସେମାନଙ୍କର ସମସ୍ତ ପ୍ରକାର ଦୁଷ୍ଟ ବୁଦ୍ଧିକୁ ଶୀଘ୍ର ଦୂର କର ଆହେ କୃପାମୟୀ ଜଗଜ୍ଜନନୀ .. !

ସଂପାଦିକା, ନବରବି
କ୍ୱା.ନଂ: ବି-୫ (ଇସ୍କନ ମନ୍ଦିର ପାଖ)
ଆଇ.ଆର୍.ସି. ଭିଲେଜ, ନୟାପଲ୍ଲୀ, ଭୁବନେଶ୍ୱର-୧୫

# ମା'

ଓମ୍ ପ୍ରକାଶ ମହାପାତ୍ର

ଜଗତ ଜନନୀ ମା' ଦୁର୍ଗତୀ ନାଶିନୀ
ରକ୍ଷା ମା'ର ଧ୍ୱଂସ ହେଉ ପଛେ ଆଉ କାହାର
ଦୁର୍ଗା କରାଳ ଭୈରବୀ ଭୟଙ୍କରୀ ରୂପ
ତାରିବ ସଂସାରୁ ଘୋର ମହୀଷାସୁର ପାପ
ଅବଳା ଅସ୍ତ୍ରଶସ୍ତ୍ର ସଜିତେ ଯୋଦ୍ଧା କରାଳ
ଦାନେ ଶକ୍ତିମୟୀ ବଳବାନ ହୋଇ
ଶିବ ଶକ୍ତିର ମିଳନେ ଜୀବନ୍ତ ହୁଅଇ
ଶକ୍ତି ବିହୁନେ ଶିବ ଶବ ପାଲଟଇ
ବିଶ୍ୱ ବ୍ରହ୍ମାଣ୍ଡ ନାରୀ ଶକ୍ତିର ପ୍ରକାଣ୍ଡ
ବିବଶନା ନାରୀ ଜଗତ ଉଦ୍ଧାରକାରୀ
ଯୁଦ୍ଧେ ପରାକାଷ୍ଠା ପ୍ରଚଣ୍ଡ ।

ମା' ଶବ୍ଦ ଉଚ୍ଚାରଣେ ମିଳିଥାଏ ସୁରକ୍ଷା ପ୍ରହରୀ
ବୁଲିବାକୁ ଶତ୍ରୁ ଦାଣ୍ଡେ ବାହୁ ପ୍ରସାରୀ
ରାବଣ ପୋଡ଼ି ରାମ ରାଜ୍ୟ ହାଣ୍ଡି ସଜାଡ଼ି
ପାରିବ କି ଦୁଷ୍ଟ ଶକ୍ତି ଫୋପାଡ଼ି କଚାଡ଼ି ?
ଦଶହରା ନୁହେଁ ମଉଜ ମଜଲିସ୍ ଅସରା
ଧୋଇବାକୁ ମନୁ ଦୁଷ୍ଟ ଚିନ୍ତା ବର୍ଷା, ଖରା ।
ଆଶ୍ୱିନ ମାସ ଆସି ଭୋଦେଇବାସୀ କାଶି କାଶି
ହିନ୍ଦୁ ଧର୍ମେ ଜଗାଇ ନାରୀ ଶକ୍ତିରେ ପରାକ୍ରମ ରାଶି ।

ଉପଶାସନ ସଚିବ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର





# ବଲାଙ୍ଗୀର ଜିଲ୍ଲାର ଶାକ୍ତ ଉପାସନା ଓ ପ୍ରାଚୀନ ଶାକ୍ତ ପୀଠ

ଅଧ୍ୟାପକ ପବିତ୍ର ମୋହନ ବାରିକ

**ବ**ଲାଙ୍ଗୀର-ପାଟଣା ପୂର୍ବତନ ଦେଶୀୟ ରାଜ୍ୟର ଐତିହାସିକ ଗୁରୁତ୍ୱ, ସାଂସ୍କୃତିକ ବିଭବ, ପ୍ରାଚୀନ ପୁଣ୍ୟ କୀର୍ତ୍ତି, ସମୁଜ୍ଜ୍ୱଳ ସାହିତ୍ୟିକ ଭାବଧାରା, ଧାର୍ମିକ ପରମ୍ପରା, ସାମାଜିକ ସୌହାର୍ଦ୍ଦ୍ୟ ଓ ରାଜନୈତିକ ଉତ୍କର୍ଷତା ପାଇଁ ଇତିହାସରେ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛି । କୋଶଳ ରାଜ୍ୟର ମଧ୍ୟଭାଗରେ ପାଟଣା ନାମକ ଏକ ନୂତନ ରାଜ୍ୟ ଚୌହାନ ବଂଶର ପ୍ରତିଷ୍ଠାତା ରମାଇ ଦେବ ଗଠନ କରିଥିଲେ । ନୂତନ ପାଟଣା ରାଜ୍ୟର ରାଜଧାନୀ ଥିଲା ପାଟଣାଗଡ଼ । ପୂର୍ବତନ ପାଟଣା ଗଡ଼ଜାତ ରାଜ୍ୟ ତଥା ଆଧୁନିକ ବଲାଙ୍ଗୀର ଜିଲ୍ଲା ମାତୃଶକ୍ତି ଉପାସନାର ଏକ ମହନୀୟ ପରମ୍ପରା ପ୍ରାଚୀନ ସମୟରୁ ଆରମ୍ଭ କରି ଆସିଛି । ଶାକ୍ତ ଉପାସନା ଓ ତନ୍ତ୍ର ବିଦ୍ୟା ପାଇଁ ପାଟଣା ଗଡ଼ଜାତ ରାଜ୍ୟ ତତ୍କାଳୀନ ସମୟରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା । ତନ୍ତ୍ର ଶାସ୍ତ୍ରରେ ଉଲ୍ଲେଖନୀୟ ସଫଳତା ଅର୍ଜନ କରିପାରିଥିବାରୁ ପାଟଣା ରାଜ୍ୟ 'କାଉଁରୀ ପାଟଣା' ନାମରେ ପ୍ରଖ୍ୟାତ ଥିଲା । ପଶ୍ଚିମ ଓଡ଼ିଶାର ବିଖ୍ୟାତ ଭକ୍ତକବି ଚୈତନ୍ୟ ଦାସ ନିଜ ଜନ୍ମ ବୃତ୍ତାନ୍ତ 'ନିର୍ଗୁଣ ମାହାତ୍ମ୍ୟ'ରେ ବର୍ଣ୍ଣନା କରିବାକୁ ଯାଇ 'କାଉଁରୀ ପାଟଣା'ର ନାମ ଉଲ୍ଲେଖ କରିଛନ୍ତି -

'କହିବି ରାଜ୍ୟର ଭାବନା
ନାମ ତା କାଉଁରୀ ପାଟଣା ।
ପ୍ରତାପ ରୁଦ୍ର ରାଜା ଦେଶ
ନଗ୍ର ଖଡ଼ିଆଳ ବିଶେଷ ।।'

ବୌଦ୍ଧ ସହଜ ଜାନର ପ୍ରବର୍ତ୍ତିକା ଲକ୍ଷ୍ମୀଙ୍କରାଙ୍କ ପଦାଙ୍କ ଅନୁସରଣ କରି ପାଟଣା ରାଜ୍ୟର ସପ୍ତକୁମାରୀ ତନ୍ତ୍ର ବିଦ୍ୟାରେ ସିଦ୍ଧିଲାଭ କରିଥିଲେ । କାଉଁରୀ ବିଦ୍ୟାରେ ଦକ୍ଷତା ଲାଭ କରିଥିବା ସପ୍ତ ସାଧିକାମାନଙ୍କ ପାଇଁ ପାଟଣା ରାଜ୍ୟ କାଉଁରୀ ପାଟଣା ନାମରେ ସୁପରିଚିତ ଥିଲା, ଯାହାକି ଜନଶ୍ରୁତିରେ ଶୁଣାଯାଏ । ଜ୍ଞାନ ଦେଇ ମାଲୁଣୀ, ନିତାଇ ଧୋବଣୀ, ଲୁହାକୁଟୀ ଲହୁରୁଣୀ, ଶୁକୁଟି ଚମାରୁଣୀ, ପତ୍ର ପିନ୍ଧି ସଉରୁଣୀ, ଗାଙ୍ଗୀ ଗଉଡୁଣୀ ଓ ଶୁଆ ତେଲୁଣୀ ପାଟଣା ରାଜ୍ୟରେ ନାରୀ ଶକ୍ତିର ପ୍ରାଧାନ୍ୟ ବୃଦ୍ଧି କରିପାରିଥିଲେ । ଗଜପତି କପିଳେନ୍ଦ୍ର ଦେବ ସପ୍ତ କୁମାରୀମାନଙ୍କ ମଧ୍ୟରୁ ଜଣକୁ ନିଜର ଗୁରୁ ରୂପେ ଗ୍ରହଣ କରିଥିଲେ । ରାଣୀପୁର-ଝରିଆଲ ଏକ ପ୍ରଖ୍ୟାତ ଶାକ୍ତ ଓ ତନ୍ତ୍ରପୀଠ ରୂପେ ଜାତୀୟ ତଥା ଆନ୍ତର୍ଜାତୀୟ ସ୍ତରରେ ସୁଖ୍ୟାତି ଅର୍ଜନ କରିଛି । ବଲାଙ୍ଗୀର ଜିଲ୍ଲା ଶାକ୍ତ ପରମ୍ପରାର ଗୌରବ ଗାରିମାମୟ ସ୍ୱର୍ଣ୍ଣାଭ ଅଧ୍ୟାୟ ରାଣୀପୁର-ଝରିଆଲରୁ ଆରମ୍ଭ । ରାଣୀପୁର-ଝରିଆଲର ଚଉଷଠୀ ଯୋଗିନୀ ମନ୍ଦିର ବଲାଙ୍ଗୀର ଜିଲ୍ଲା ତଥା ସମଗ୍ର ଓଡ଼ିଆ ଜାତି ପାଇଁ ଗର୍ବ ଓ ଗୌରବ । ବଲାଙ୍ଗୀର ଜିଲ୍ଲାର ଟିଟିଲାଗଡ଼ ସବ୍‌ଡିଭିଜନ୍ ଅନ୍ତର୍ଗତ ବଙ୍ଗମୁଣ୍ଡା ବ୍ଲକ୍‌ରେ ରାଣୀପୁର-ଝରିଆଲ ଅବସ୍ଥିତ । ୧୮୭୪-୭୫ ଖ୍ରୀଷ୍ଟାବ୍ଦରେ ବିଶିଷ୍ଟ ଇଂରେଜ ପ୍ରତ୍ନତତ୍ତ୍ୱବିତ୍ ଶ୍ରୀ ଜେ.ଡି. ବେଗଲାର ଏ ଅଞ୍ଚଳ ପରିଦର୍ଶନରେ ଆସି ବିମୋହିତ ହୋଇପଡ଼ିଥିଲେ । ତନ୍ତ୍ର ଓ ଯୋଗମାର୍ଗକୁ ଅବଲମ୍ବନ କରି ଓଡ଼ିଶାର ଶାକ୍ତ ଉପାସନାରେ ଚଉଷଠୀ ଯୋଗିନୀ ଉପାସନା ଅଷ୍ଟମ-ନବମ ଶତାବ୍ଦୀରେ ଆରମ୍ଭ ହୋଇଥିବାର ବିଶ୍ୱାସ କରାଯାଏ । ବଲାଙ୍ଗୀରସ୍ଥ ରାଣୀପୁର-ଝରିଆଲର ଚଉଷଠୀ ଯୋଗିନୀ ଉପାସନା ଅଷ୍ଟମ-ନବମ ଶତାବ୍ଦୀରେ ଆରମ୍ଭ ହୋଇଥିବାର ବିଶ୍ୱାସ କରାଯାଏ । ବଲାଙ୍ଗୀରସ୍ଥ ରାଣୀପୁର-ଝରିଆଲର ଚଉଷଠୀ ଯୋଗିନୀ ମନ୍ଦିର ସେଠାକାର ସମାଜରେ ଶାକ୍ତର ପ୍ରଭାବ କେତେ ଗୁରୁତ୍ୱ ଥିଲା, ଏହା ତାହାର ନିର୍ଭରଯୋଗ୍ୟ ପ୍ରମାଣ ।

ଯୋଗସ୍ଥା ନାରୀ ଯୋଗିନୀ ରୂପେ ପରିଚିତା । ବଲାଙ୍ଗୀର ଜିଲ୍ଲାର ଅଧିବାସୀମାନଙ୍କର ମାତୃଶକ୍ତି ପ୍ରତି ଦୃଢ଼ ବିଶ୍ୱାସ, ଅସୀମ ଶ୍ରଦ୍ଧା, ଗଭୀର ଭକ୍ତି ଥିବାର ବିଭିନ୍ନ ସାମାଜିକ ପର୍ବପର୍ବାଣି, ଓଷା, ବ୍ରତ ଓ ଉପାସନାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ । ରାଣୀପୁର-ଝରିଆଲର ଚଉଷଠୀ ଯୋଗିନୀ ମନ୍ଦିର ଭାରତର ଅନ୍ୟ ତିନୋଟି ଯୋଗିନୀ ମନ୍ଦିର ପରି ଛାତ ବିହୀନ ଓ ବୃତ୍ତାକାର । ମଧ୍ୟପ୍ରଦେଶର ଭେରାଘାଟ, ଖଜୁରାହୋ ଏବଂ ଭୁବନେଶ୍ୱର ନିକଟସ୍ଥ ହୀରାପୁରଠାରେ ଯୋଗିନୀ ମନ୍ଦିର ଅବସ୍ଥିତ ।

ବଲାଙ୍ଗୀର ଜିଲ୍ଲାର ଅନ୍ୟ ଏକ ପ୍ରାଚୀନ ଶାକ୍ତ ପୀଠ ରୂପେ ଧାର୍ମିକ ଇତିହାସରେ ପାଟଣାଗଡ଼ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି ।





ଏହି ପବିତ୍ର ପୀଠରେ ଦେବୀ ପାଟଣେଶ୍ୱରୀ ସତୃଷ୍ଣା ନୟନରେ ବିରାଜିତା । ବଲାଙ୍ଗୀର ପାଟଣା ଚୌହାନ ରାଜବଂଶର ଇଷ୍ଟଦେବୀ ପାଟଣେଶ୍ୱରୀ । ପାଟଣାଗଡ଼ ୧୮୭୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ପାଟଣା ଚୌହାନ ରାଜବଂଶର ମୁଖ୍ୟ ରାଜନୈତିକ କେନ୍ଦ୍ର ରୂପେ ଖ୍ୟାତି ଅର୍ଜନ କରିଥିଲା । ସ୍ୱର୍ଣ୍ଣରେଖା ଓ ଏହାର ଉପନଦୀ ମାୟା ଦ୍ୱାରା ପାଟଣାଗଡ଼ ପରିବେଷ୍ଟିତ । ପାଟଣାଗଡ଼ ସହର ତତ୍କାଳୀନ ସମୟରେ ରାଜନୈତିକ ଦୃଷ୍ଟିକୋଣରୁ ତାତ୍ପର୍ଯ୍ୟପୂର୍ଣ୍ଣ ଥିଲା । ପାଟଣା ରାଜ୍ୟରେ ଚୌହାନ ରାଜବଂଶର ପ୍ରତିଷ୍ଠାତା ରମାଇ ଦେବ ଦେବୀ ପାଟଣେଶ୍ୱରୀଙ୍କ ନିମନ୍ତେ ପାଟଣାଗଡ଼ରେ ସ୍ୱତନ୍ତ୍ର ମନ୍ଦିର ନିର୍ମାଣ କରିଥିଲେ । ପ୍ରତିବର୍ଷ ଆଶ୍ୱିନ ମାସରେ ଦେବୀଙ୍କର ମୁଖ୍ୟ ପୂଜା ଅନୁଷ୍ଠିତ ହୁଏ । କୃଷ୍ଣପକ୍ଷ ଅଷ୍ଟମୀଠାରୁ ଶୁକ୍ଳପକ୍ଷ ଅଷ୍ଟମୀ ପର୍ଯ୍ୟନ୍ତ ଷୋହଳ ପୂଜା ଦେବୀ ପାଟେଣେଶ୍ୱରଙ୍କ ପୀଠରେ ମହାଆଡ଼ମ୍ବର ସହକାରେ ପାଳିତ ହୁଏ । ଏହି ଷୋହଳ ପୂଜାରେ ପାଟଣାଗଡ଼ର ପ୍ରଥମ ଚୌହାନ ବଂଶୀୟ ରାଜା ରମାଇ ଦେବଙ୍କ ଖଣ୍ଡା ପୂଜା କରାଯାଏ । ଶାରଦୀୟ ପୂଜା ସମୟରେ ଦୂର-ଦୂରାନ୍ତରୁ ଏପରିକି ସୁଦୂର ଛତିଶଗଡ଼ରୁ ଭକ୍ତମାନେ ଦେବୀଙ୍କ ଦର୍ଶନ ଓ ଆଶୀର୍ବାଦ ନେବାକୁ ଏଠାରେ ଏକତ୍ରିତ ହୁଅନ୍ତି । ଏକ ପ୍ରଚଳିତ କିମ୍ବଦନ୍ତୀ ଅନୁଯାୟୀ ଆଶ୍ୱିନ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ ରାଜା ମାଧବ ଚନ୍ଦ୍ର ଦେବ ଗଣ୍ଡା ଶିକାର ଉଦ୍ଦେଶ୍ୟରେ 'ବୁଠିକୁ ଡେଇଁ' ଅରଣ୍ୟ ମଧ୍ୟରେ ପ୍ରବେଶ କରିଥିଲେ । କିନ୍ତୁ କୌଣସି ଶିକାର ନପାଇ ଏକ ଆମ୍ର ବୃକ୍ଷମୂଳରେ ରାଜା ବିଶ୍ରାମ ନେଉଥିବା ସମୟରେ ଦେବୀ ବନଦୁର୍ଗା ତାଙ୍କୁ ଶୂନ୍ୟବାଣୀ କରିଥିଲେ । ଦେବୀ ବନଦୁର୍ଗା ରାଜଧାନୀ ପଉନଗଡ଼ରେ ଇଷ୍ଟଦେବୀ ରୂପେ ପୂଜା ପାଇବା ପାଇଁ ରାଜାଙ୍କୁ ଆଦେଶ ଦେଲେ । ରାଜା ମାଧବ ଚନ୍ଦ୍ର ଦେବୀଙ୍କୁ ପଉନଗଡ଼ରେ ସ୍ଥାପନ କଲେ । କାଳକ୍ରମେ ପଉନଗଡ଼ ପାଟଣାଗଡ଼ ନାମରେ ଓ ଦେବୀ ବନଦୁର୍ଗା ପାଟଣେଶ୍ୱରୀ ନାମରେ ଖ୍ୟାତ ହେଲେ । ଆଶ୍ୱିନ ଶୁକ୍ଳପକ୍ଷ ନବମୀ ଦିନ ଦେବୀ ବରୁଆ ଶରୀରରେ ପ୍ରବେଶ କରି ନଗରୀ ପରିକ୍ରମା କରିଥାନ୍ତି । ପାଟଣେଶ୍ୱରୀ ମନ୍ଦିରର ପରିଚାଳନା ନିମନ୍ତେ ରାଜୁଡ଼ା ସମୟରେ ଛଅଗୋଟି ଗ୍ରାମ ଦାନ କରାଯାଇଥିଲା । ସ୍ୱାଧୀନତା ପରେ ସରକାର ଛଅଗୋଟି ଗ୍ରାମକୁ ପ୍ରତ୍ୟାହାର କରିନେଲେ । ୧୯୭୬ ମସିହାରୁ ମନ୍ଦିର ପରିଚାଳନା ଟ୍ରଷ୍ଟ ବୋର୍ଡ଼ ହସ୍ତରେ ନ୍ୟସ୍ତ । ପାଟଣେଶ୍ୱରୀ ଦେବୀଙ୍କର ମହିମା ସମଗ୍ର ବଲାଙ୍ଗୀର ଜିଲ୍ଲାରେ ବହୁଳ ଭାବରେ ପ୍ରଚାର ଓ ପ୍ରସାର ଲାଭ କରିଛି ।

ବଲାଙ୍ଗୀର ଜିଲ୍ଲାର ସିନ୍ଧେକେଲାରେ ଦେବୀ ଦ୍ୱାରସେନୀଙ୍କ ପୀଠ ଅବସ୍ଥିତ । ବଲାଙ୍ଗୀର ଜିଲ୍ଲା ଶାକ୍ତ ପରମ୍ପରାର ଅନ୍ୟ ଏକ ମହନୀୟ ନିଦର୍ଶନ । ତାନ୍ତ୍ରିକ ପରମ୍ପରା ଓ ପ୍ରାଚୀନ ପୂଜା ବିଧି ଦୃଷ୍ଟିରୁ ଏ ପୀଠ ଏକ ଗୌରବମୟ ଅଧ୍ୟାୟ ସୃଷ୍ଟି କରିପାରିଛି । ଏଠାରେ ଦ୍ୱାରସେନୀ ଦେବୀଙ୍କୁ ମହାଦୁର୍ଗା, ତାଙ୍କ ସ୍ୱାମୀ ବୁଢ଼ା ରାଜାଙ୍କୁ ଭୈରବ ଏବଂ ଛତର ବାଇତିଙ୍କୁ ମହାକାଳୀ ରୂପେ ଆରାଧନା କରାଯାଏ । ଦ୍ୱାରସେନୀ ଦେବୀଙ୍କ ଆବିର୍ଭାବ ସଂପର୍କରେ ଏକ ଲୋକପ୍ରିୟ କିମ୍ବଦନ୍ତୀ ଅଛି । ତ୍ରେତୟା ଯୁଗରେ ଲଙ୍କା ଦେବୀ ହନୁମାନ ଦ୍ୱାରା ଅପମାନିତ ହୋଇ ସିନ୍ଧେକେଲା ରାଜ୍ୟରେ ଆସି ଅବସ୍ଥାନ କଲେ । ସିନ୍ଧେକେଲା ରାଜ୍ୟର ଜଣେ ଶବର ଶିକାର ଖୋଜୁଥିବା ସମୟରେ ଜଣେ ବୃଦ୍ଧାଙ୍କ ସହିତ ସାକ୍ଷାତ ହେଲା । ସେହି ବୃଦ୍ଧା ଥିଲେ ଦ୍ୱାରସେନୀ ଦେବୀ । ବୃଦ୍ଧାଙ୍କ ଅନୁରୋଧରେ ଶବର ସେଠାରେ ଦେବୀଙ୍କ ପାଇଁ ଗୋଟିଏ କୁଟୀର ନିର୍ମାଣ କଲେ । ସିନ୍ଧେକେଲାର ଧର୍ମପରାୟଣ, ନୀତିନିଷ୍ଠ, ତଥା ପ୍ରଜାନୁରଞ୍ଜନ ରାଜା ବେଣୁଙ୍କୁ ଦେବୀ ଦ୍ୱାରସେନୀ ସ୍ୱପ୍ନରେ ଦୃଶ୍ୟ ହେଲେ । ରାଜା ବେଣୁ ତା'ପରଦିନ ଦେବୀଙ୍କର ଦର୍ଶନ ଲାଭ କଲେ । ଦେବୀ ଲଙ୍କାର ଦକ୍ଷିଣ ଦ୍ୱାରରେ ଅବସ୍ଥାନ କରୁଥିବାରୁ ରାଜା ବେଣୁ ତାଙ୍କୁ ଦ୍ୱାରସେନୀ ନାମରେ ଅଭିହିତ କଲେ । ଦେବୀ କନ୍ଧ ରାଜାଙ୍କ ପୂଜା ଆରାଧନାରେ ସନ୍ତୁଷ୍ଟ ନହେବାରୁ ସ୍ୱପ୍ନାଦେଶ ଅନୁଯାୟୀ ପାଟଣାର ଚୌହାନ ଗଡ଼ତିୟା ବିଶ୍ୱନାଥ ସିଂହ ଦେଓ ଦେବୀଙ୍କର ସେବା କାର୍ଯ୍ୟରେ ନିଯୁକ୍ତି ପାଇଲେ । ଦେବୀଙ୍କୁ ଉଭୟ ସାତ୍ତ୍ୱିକ ଓ ତାନ୍ତ୍ରିକ ରୀତିରେ ପୂଜା କରାଯାଏ । ଦ୍ୱାରସେନୀ ଦେବୀଙ୍କର ମୁଖ୍ୟ ପର୍ବ ଦଶହରାରେ ପାଳନ କରାଯାଏ । ଦ୍ୱାରସେନୀ ଦେବୀଙ୍କର ମୁଖ୍ୟ ଯାତ୍ରା ଦ୍ୱାରସେନୀ ଓ ବୁଢ଼ା ରାଜାଙ୍କ ମଧ୍ୟରେ ବିବାହ ପର୍ବ । ସିନ୍ଧେକେଲା ଓ ଟିଟିଲାଗଡ଼ ମଝିରେ ଥିବା 'ଇ ଚଗାଁ'ର ଝିଅ ଦ୍ୱାରସେନୀ ଓ ବୁଢ଼ା ରାଜା ସିନ୍ଧେକେଲାର ପୁଅ । ସିନ୍ଧେକେଲାର ବରୁଆ ସଶରୀରରେ ବୁଢ଼ା ରାଜା ଆବିର୍ଭାବ ହୋଇ ବହୁ ଲୋକଙ୍କ ସମାଗମରେ ବରସାଜି 'ଇ ଜଗାଁ'କୁ ଯାଇଥାନ୍ତି । ସେଠାରେ ଦ୍ୱାରସେନୀ ଦେବୀଙ୍କୁ ବିବାହ ପରେ ସେହି ବରୁଆ ଶରୀରରେ ଦ୍ୱାରସେନୀ ଆବିର୍ଭାବ ହୋଇ ବୋହୂ ଭାବରେ ସିନ୍ଧେକେଲା ଆସନ୍ତି । ଦ୍ୱାରସେନୀ ଦେବୀଙ୍କର ପ୍ରତୀକ ଭାବରେ ଯୋନି ବା ବଦନର ପୂଜା ଏ ପୀଠର ଅନ୍ୟ ଏକ ଉଲ୍ଲେଖନୀୟ ଘଟଣା । ଦଶହରା ଶୁକ୍ଳପକ୍ଷ ଏକାଦଶୀଠାରୁ ପୂର୍ଣ୍ଣମୀ ପର୍ଯ୍ୟନ୍ତ ଏଠାରେ କୌଣସି ବଳି ଦିଆଯାଏ ନାହିଁ ।

ବଲାଙ୍ଗୀର ଜିଲ୍ଲାରେ ହିନ୍ଦୁ ଧର୍ମର ବିଭିନ୍ନ ଜାତି ଓ ସଂପ୍ରଦାୟର ଲୋକମାନେ ବସତି ସ୍ଥାପନ କରନ୍ତି । ସେମାନଙ୍କର ଇଷ୍ଟ ଦେବୀ ମଧ୍ୟ ଭିନ୍ନ ଭିନ୍ନ ହୋଇଥାନ୍ତି । ବଲାଙ୍ଗୀର ଜିଲ୍ଲାରେ ମାହେଶ୍ୱରୀ ଦେବୀଙ୍କୁ ମୁଖ୍ୟତଃ ଖଡୁରାମାନେ ବିଭିନ୍ନ ରୀତି ନୀତିରେ ପୂଜା କରନ୍ତି । ଆଶ୍ୱିନ ମାସରେ ଦଶହରା ସମୟରେ ଖଡୁରା ସଂପ୍ରଦାୟର ବ୍ୟକ୍ତିମାନେ ମାହେଶ୍ୱରୀ ଦେବୀଙ୍କୁ ନିଷ୍ଠା ଓ ଆଗ୍ରହର ସହିତ ପୂଜା କରିଥାନ୍ତି । ତନ୍ତ୍ର କୁମାରୀମାନଙ୍କ ମଧ୍ୟରେ ଅନ୍ୟତମ ତନ୍ତ୍ର ସାଧିକା ନିତାଇ ଧୋବଣୀ ଧୋବା ବା ରଜକ ସଂପ୍ରଦାୟର କୁଳ ଦେବୀ ରୂପେ ପ୍ରତିଷ୍ଠିତା । ବଲାଙ୍ଗୀର ଜିଲ୍ଲାର ରଜକ ସଂପ୍ରଦାୟ ବିଶ୍ୱାସ କରନ୍ତି, ନିତାଇ ଧୋବଣୀ ପୋଖରୀ କିମ୍ବା ନଦୀ କୂଳ ପଥର ଯେଉଁଥିରେ ସେମାନେ ଲୁଗା ସଫା କରନ୍ତି, ସେଥିରେ ବିଦ୍ୟମାନ ହୋଇଥାନ୍ତି । ନବାନ୍ନ ସମୟରେ ଏହି ଜାତିର ବ୍ୟକ୍ତିମାନେ ନୂତନ ପ୍ରସାଦ ନିତାଇ ଧୋବଣୀଙ୍କ





ଉଦ୍ଦେଶ୍ୟରେ ଅର୍ପଣ କରିଥାନ୍ତି । ଦେବୀ ରୂପେ ପାଟକନା, କାନ ଭାଓରା, ମହାଲକ୍ଷ୍ମୀ, କାଳୀ ସୁନ୍ଦରୀ, ମିରଚୁଙ୍କୁ ଆରାଧନା କରାଯାଏ । ଜିଲ୍ଲାର କେତେକ ଗ୍ରାମରେ ମଧ୍ୟ କାଲିକା, ଗଙ୍ଗାଡ଼ି, ଠାକୁରାଣୀ, ଡୋଙ୍ଗେର, ମଉଳି ଏବଂ ଭୀମାଦେବୀଙ୍କୁ ପୂଜା କରାଯାଏ । ଏହି ଜିଲ୍ଲାର ସୁଣ୍ଡି ସଂପ୍ରଦାୟର ମୁଖ୍ୟ ଦେବୀ ଦ୍ୱାରସେନୀ, ପାଟ ମାହେଶ୍ୱରୀ, ସମଲାଇ ଓ ରକ୍ତ ମଉଳି । ବିଭିନ୍ନ ପ୍ରାକୃତିକ ବିପର୍ଯ୍ୟୟ ସମୟରେ ବିପଦରୁ ରକ୍ଷା ପାଇବା ନିମନ୍ତେ ଏହି ଦେବୀମାନଙ୍କ ନିକଟରେ ବିଭିନ୍ନ ମାନସିକ କରାଯାଇଥାଏ । ଏହି ସୁଣ୍ଡି ସଂପ୍ରଦାୟର ଦେହୁରୀମାନେ ସେମାନଙ୍କର ଗ୍ରାମ ଦେବତୀଙ୍କୁ ପୂଜା କରନ୍ତି, ଯାହାକୁ ବୁଗୁଲେନ ଏବଂ ଗଙ୍ଗା ଦେଇ ବୋଲି କୁହାଯାଏ । ବଲାଙ୍ଗୀର ଜିଲ୍ଲାର ବାରିକ (ଭଣ୍ଡାରୀ) ଜାତିର ବ୍ୟକ୍ତିବିଶେଷ ବନଜାରୀ ଦେବୀଙ୍କୁ ପୂଜା କରନ୍ତି, ଯେ କି ଚଣ୍ଡି ଏବଂ ଘଣ୍ଟସେନୀ ନାମରେ ପରିଚିତା । ସେମାନଙ୍କର ଗ୍ରାମ ଦେବୀଙ୍କୁ ବସ୍ତରନି ଏବଂ ଥୁଣ୍ଟି ମୋନଲି ବୋଲି କୁହାଯାଏ । ଅନ୍ୟ ଉଚ୍ଚଜାତିର ଲୋକମାନଙ୍କ ପରି ମାର୍ଗଶିର ମାସର ପ୍ରତ୍ୟେକ ଗୁରୁବାରରେ ଏମାନେ ଲକ୍ଷ୍ମୀପୂଜା କରନ୍ତି ଏବଂ ଚୈତ୍ର ମାସର ପ୍ରତି ମଙ୍ଗଳବାରରେ ମା' ମଙ୍ଗଳାଙ୍କୁ ଆରାଧନା କରିଥାନ୍ତି । ଗଣ୍ଡ ବଲାଙ୍ଗୀର ଜିଲ୍ଲାର ଏକ ପ୍ରମୁଖ ଜନଜାତି ମା'ମଙ୍ଗଳା ସେମାନଙ୍କର ଆରାଧ୍ୟା ଦେବୀ । ସେମାନଙ୍କ ବିଶ୍ୱାସରେ ମା' ମଙ୍ଗଳାଙ୍କର ସାତ ଭଉଣୀ ଅଛନ୍ତି । ଗଣ୍ଡ ମାଡ଼େ ପର୍ବତର ଦେବୀଙ୍କୁ ବୁଧ ପ୍ରହାର, ଡୋଙ୍ଗର ଦେବତା ଏବଂ ଗ୍ରାମବଟୀ ବୋଲି ନାମିତ କରିଥାନ୍ତି । ଏହି ଜାତିର ବ୍ୟକ୍ତିମାନେ ରିଷ୍ଟ ଖଣ୍ଡନ ଓ ଶୁଭ ମନାସୀ ମା' ମଙ୍ଗଳାଙ୍କୁ କୁକୁଡ଼ା ଓ ଛେଳି ବଳି ରୂପେ ପ୍ରଦାନ କରିଥାନ୍ତି । ସେମାନଙ୍କର ଗ୍ରାମଦେବତୀ ଥାନପତି ନାମରେ ପରିଚିତା । ଉଦୟ ପରମେଶ୍ୱରୀ ବଲାଙ୍ଗୀର ଜିଲ୍ଲାର କୋଷ୍ଟା ବୁଣାକାର ସଂପ୍ରଦାୟର ଇଷ୍ଟ ଦେବୀ । ସମଲେଶ୍ୱରୀ ଏବଂ ବୁଧେଇ ସେମାନଙ୍କର ଗ୍ରାମଦେବତୀ । ବଲାଙ୍ଗୀରର କେଉଟ ସଂପ୍ରଦାୟ ଚଉରାଶି ସମଲାଇ ଠାକୁରାଣୀ ଏବଂ ଗଙ୍ଗାମାତାଙ୍କୁ ଜଳ ଦେବୀ ରୂପେ ପୂଜା କରନ୍ତି । ବଲାଙ୍ଗୀର ଜିଲ୍ଲାର ବୁଣାକାର ଜାତି ଭୁଲିଆମାନଙ୍କର ମୁଖ୍ୟ ଦେବୀ ସମଲେଶ୍ୱରୀ । ଭୁଲିଆଜାତି ଅନ୍ୟ ଦେବୀ ଯଥା- ଧନମାଇ, ହାଡ଼ମାଇ, ଦଶମତି, ସାତ ବହେନ ଇତ୍ୟାଦିଙ୍କୁ ଭକ୍ତି ଆଗ୍ରହ ଓ ନିଷ୍ଠାର ସହିତ ପୂଜା କରିଥାନ୍ତି ।

ବଲାଙ୍ଗୀର ଜିଲ୍ଲାର ଅନେକ ସ୍ଥାନରେ ବହୁ ସଂଖ୍ୟକ ଦେବୀ ମନ୍ଦିର ଏବଂ ଉପାସନା ପୀଠ ମଧ୍ୟ ଦେଖିବା ମିଳେ । ଏହା ସେଠାକାର ଶାକ୍ତ ପରମ୍ପରା ଓ ଐତିହ୍ୟର ସ୍ମୃତି ବହନ କରେ । ବଲାଙ୍ଗୀର ଉପଖଣ୍ଡରେ ଅବସ୍ଥିତ ଖୁଡ୍ର ପାଲିର ବ୍ରାହ୍ମଣୀ ଦେବୀ ମନ୍ଦିର, ଜାରା ସିଂହାର ବୁଢ଼ିଆଇ ଠାକୁରାଣୀ ମନ୍ଦିର, ସାଲେଭଟାର ଦ୍ୱାରସେନୀ ମନ୍ଦିର, ବାଗ ବାହଲର ଗଙ୍ଗା ଦେବୀ ମନ୍ଦିର, ଅଗଲପୁରର ଜିରୋଟ ମାଲ୍ୟାଣୀ ଠାକୁରାଣୀ ମନ୍ଦିର, କୁସଙ୍ଗର କୁସଙ୍ଗଇ ଦେବୀ ମନ୍ଦିର, ଦାସପୁରର ମାହେଶ୍ୱରୀ ଦେବୀଙ୍କ ମନ୍ଦିର, ଲୁଇ ସିଂହାର ପାଟଣେଶ୍ୱରୀ, ବିଲେଇ ସୋରଡ଼ାର ସମଲେଶ୍ୱରୀ ମନ୍ଦିର ସେଠାକାର ଶାକ୍ତ ପରମ୍ପରାର ପ୍ରାଚୀନତାର ପ୍ରମାଣ ଦିଏ ।

ଏହି ମନ୍ଦିରଗୁଡ଼ିକ ମାତୃଶକ୍ତି ପ୍ରତି ଶ୍ରଦ୍ଧା, ସମ୍ମାନ ଓ ଭକ୍ତି ଭାବନାର ପରିଚୟ ଦିଏ । ଅନୁରୂପ ଭାବରେ ବଲାଙ୍ଗୀର ଜିଲ୍ଲାର ପାଟଣାଗଡ଼ ଉପଖଣ୍ଡ ଅନ୍ତର୍ଗତ ଅନେକ ଅଞ୍ଚଳରେ ବହୁ ସଂଖ୍ୟକ ମନ୍ଦିର ମଧ୍ୟ ଦେଖାଯାଏ । ସେମାନଙ୍କ ମଧ୍ୟରେ ଦଶମତି ଦେବୀ ଏବଂ ଅସମତି ଦେବୀଙ୍କ ମନ୍ଦିର ଭରତ ବାହଲରେ ଅବସ୍ଥିତ । ବାଙ୍କି ବାହଲରେ ଗ୍ରାମ ଦେବୀ ଠାକୁରାଣୀଙ୍କ ମନ୍ଦିର । ରଗୁଡ଼ି ମୁଣ୍ଡାର ଗ୍ରାମପତି ଠାକୁରାଣୀଙ୍କ ମନ୍ଦିର, ବଗଝରଣାରେ ମଧ୍ୟ ଅନ୍ୟ ଏକ ଗ୍ରାମପତି ଠାକୁରାଣୀଙ୍କ ମନ୍ଦିର ଅବସ୍ଥିତ । ଚେଚର ବେଙ୍ଗଗୁଡ଼ା ଏବଂ ଦେସିଲଠାରେ କାଳିକା ଦେବୀଙ୍କ ମନ୍ଦିର ବିଦ୍ୟମାନ । ପାଟଣାଗଡ଼, ବରପିଟାରେ ଦେବୀ ପାଟଣେଶ୍ୱରୀଙ୍କ ମନ୍ଦିର । ଭସାଁରେ ଦେବୀ ଶଙ୍ଖସାଇଙ୍କ ମନ୍ଦିର, ବେଲପଡ଼ା ଓ ପାତ୍ରପାଲିରେ ସମଲାଇ ଦେବୀଙ୍କ ମନ୍ଦିର, ତୁର୍ଲାରେ ତୁତ୍ୟନି ଦେବୀଙ୍କ ମନ୍ଦିର ବଲାଙ୍ଗୀର ଜିଲ୍ଲାର ଶାକ୍ତ ଉପାସନାର ମହିମା, ମହତ୍ୱ ପ୍ରସାର ଓ ପ୍ରଚାର କରିବା ଦିଗରେ ସମର୍ଥ । ଟିଟିଲା ଗଡ଼ ଉପଖଣ୍ଡରେ ମଧ୍ୟ ଅନେକ ଦେବୀ ମନ୍ଦିର ଦେଖିବାକୁ ମିଳେ । ଟିଟିଲାଗଡ଼ ସହରରେ ବାହୁଟି ଗଙ୍ଗା ଦେବୀ ମନ୍ଦିର ଅନ୍ୟତମ । ଖଗାଁରେ ବସ୍ତନ ଦେବୀଙ୍କ ମନ୍ଦିର । ସିନ୍ଧେକେଲାରେ ଦ୍ୱାରସେନୀ ଦେବୀଙ୍କ ମନ୍ଦିର ପ୍ରମୁଖ ମନ୍ଦିରମାନଙ୍କ ମଧ୍ୟରେ ଅନ୍ୟତମ । ପୁଟୁଲି, ସିହନୀ, ଖଇରା, ଟିଟିସିଲା, ଗୋଇମୁଣ୍ଡାରେ ଦ୍ୱାରସେନୀ ଦେବୀଙ୍କ ମନ୍ଦିର ଅଛି । ଟିଟିଲାଗଡ଼ ଉପଖଣ୍ଡରେ ଅନେକ ଦ୍ୱାରସେନୀ ଦେବୀଙ୍କ ମନ୍ଦିର ଥିବାରୁ ଦେବୀଙ୍କ ମହିମା ଜନମାନସରେ ବ୍ୟାପକ ରୂପେ ଆଦୃତ ଏଥିରେ କୌଣସି ସନ୍ଦେହ ନାହିଁ । ଶାକ୍ତ ପରମ୍ପରାକୁ ଭିତ୍ତିକରି ବଲାଙ୍ଗୀର ଜିଲ୍ଲାରେ ଅନେକ ଓଷା, ବ୍ରତ, ଉପାସନା ଆଦି ଅନୁଷ୍ଠିତ ହୁଏ । ସାର୍ବଜନୀନ ଦୁର୍ଗାପୂଜା ଉତ୍ସାହ ଓ ଉଦ୍ଦୀପନାର ସହିତ ସମଗ୍ର ବଲାଙ୍ଗୀର ଜିଲ୍ଲାରେ ପାଳିତ ହୁଏ । ପୁଅ ଜିଉନ୍ତିଆ ଓ ଭାଇ ଜିଉନ୍ତିଆ ଓଷାରେ ବଲାଙ୍ଗୀରର ମା' ଓ ଭଉଣୀମାନେ ଯଥାକ୍ରମେ ପୁଅ ଓ ଭାଇମାନଙ୍କର ଶୁଭ କାମନାକରି ମା' ଦୁର୍ଗାଙ୍କୁ ଭକ୍ତି ନୈବେଦ୍ୟ ଜ୍ଞାପନ କରନ୍ତି । ପ୍ରାଚୀନ ସମୟରୁ ବଲାଙ୍ଗୀର ଜିଲ୍ଲାରେ ଶାକ୍ତ ଆରାଧନା ପ୍ରଚଳିତ ହୋଇ ଆସୁଅଛି, ଯାହାକି ସାମାଜିକ, ଧାର୍ମିକ ଓ ସାଂସ୍କୃତିକ କ୍ଷେତ୍ରରେ ତାହାର ମହିମାମଣ୍ଡିତ ପ୍ରଭାବ ପରିଲକ୍ଷିତ ହୁଏ । ବଲାଙ୍ଗୀର ଜିଲ୍ଲାର ଶାକ୍ତ ପରମ୍ପରା ଓ ପ୍ରାଚୀନ ଶକ୍ତିପୀଠ ଓଡ଼ିଶାର ସାଂସ୍କୃତିକ ଇତିହାସକୁ ଗୌରବାନ୍ୱିତ କରିବାରେ ଯଥେଷ୍ଟ ଉପାଦାନ ଯୋଗାଇ ଆସିଅଛି ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା- ୭୫୨୦୫୪

# ଶକ୍ତିମୟୀ - ମା' ଦୁର୍ଗତୀ ନାଶିନୀ ଦୁର୍ଗେ

ଅଧ୍ୟାପିକା ନମିତା ଶତପଥି

ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡର ନିୟନ୍ତା ହେଲେ ମହାଶକ୍ତି । ସେ ହିଁ ଅଦ୍ୟାଶକ୍ତି ଓ ମହାଶକ୍ତିମୟୀ । ସେ ହେଉଛନ୍ତି ସର୍ବଂଦ୍ରଷ୍ଟା । ସର୍ବତ୍ର ବିଦ୍ୟମାନ ଓ ସର୍ବଶକ୍ତିମାନ । ଶକ୍ତି, ମହାଶକ୍ତି ହିଁ ସୃଷ୍ଟି କରନ୍ତି ଏବଂ ସଂହାର ମଧ କରନ୍ତି । ଦେବୀ ଭାଗବତରେ ବର୍ଣ୍ଣିତ ରହିଛି - 'ଶବବତ୍ ଶକ୍ତିହୀନା ପ୍ରାଣୀ ଭବନ୍ତି ସର୍ବଧା' - ଶକ୍ତିବିନା ପ୍ରାଣୀ ଶବ ମାତ୍ର । ସମଗ୍ର ବ୍ରହ୍ମାଣ୍ଡରେ ଶକ୍ତି ଉଭା ବା ବିଦ୍ୟମାନ । ଶକ୍ତି ଚିତ୍ତ ରୂପିଣୀ, ବ୍ରହ୍ମା, ବିଷ୍ଣୁ, ଶିବ କାଳର କରାଳରେ ନିଶେଷ ହୋଇଥାନ୍ତି ମାତ୍ର ଶକ୍ତି ସ୍ୱୟଂ କାଳର କାଳ । ଶକ୍ତିଙ୍କର ଆଦି ନାହିଁ କି ଅନ୍ତ ନାହିଁ । ଶକ୍ତି ହିଁ ହେଉଛନ୍ତି ବ୍ରହ୍ମ, ବ୍ରହ୍ମ ହିଁ ଶକ୍ତି । ବ୍ରହ୍ମରୁ ସୃଷ୍ଟି ବ୍ରହ୍ମାଣ୍ଡ ଏବଂ ଶକ୍ତିରୁ ସୃଷ୍ଟି ବ୍ରହ୍ମାଣ୍ଡ । ଶକ୍ତି ହେଉଛନ୍ତି ଜନ୍ମ, ପ୍ରାଚୁର୍ଯ୍ୟ ଓ ମୃତ୍ୟୁର ପ୍ରତୀକ ତେଣୁ ସମଗ୍ର ବ୍ରହ୍ମାଣ୍ଡରେ ମାତୃ ବା ଶକ୍ତି ଆରାଧନା ଏକ ମୁଖ୍ୟ ଆରାଧନା । ଏକ ମହତ୍ତର ଅପରୂପା ଶକ୍ତି - ମହାମାୟୀ ମା' ଦୁର୍ଗତୀ ନାଶିନୀ ଦୁର୍ଗାଙ୍କ ଆରାଧନାର ଧାରା ଭାରତରେ ସମ୍ଭବତଃ ପ୍ରାକ୍ ଦ୍ରାବିଡ଼ - ପ୍ରାକ୍ ଆର୍ଯ୍ୟ ଯୁଗରୁ ଆରମ୍ଭ ହୋଇଛି । ପରବର୍ତ୍ତୀ ଶତକରେ ତାହା ସନାତନ ହିନ୍ଦୁ ପରଂପରାର ଅଂଶ ଭାବରେ ସ୍ୱୀକୃତ ।

ଭାରତୀୟ ସାଂସ୍କୃତିକ ଚେତନାର ପୃଷ୍ଠଭୂମିରେ ବାରମାସରେ ତେର ପର୍ବ ପାଳନ କରିବା ମଧରେ ୩୩ କୋଟି ଦେବ-ଦେବୀଙ୍କର ପରିକଳ୍ପନା କରାଯାଇଛି । ପୂର୍ବାଚାର୍ଯ୍ୟ ଗଣ ଉକ୍ତ ପରିକଳ୍ପନା ଦ୍ୱାରା ହିଁ ସମଗ୍ର ମାନବ ଜାତିକୁ ଶୃଙ୍ଖଳିତ ମାର୍ଗରେ ପରିଚାଳିତ କରିବାର ପ୍ରୟାସ କରି ବିଭିନ୍ନ ସମୟରେ ବିଭିନ୍ନ ଦେବତାଙ୍କ ପରିକଳ୍ପନା ସହିତ ଶକ୍ତିଙ୍କ ନାମ ଓ ମୂର୍ତ୍ତିର ପରିକଳ୍ପନା କରିଛନ୍ତି ବା ଦେବତାଙ୍କ ସହିତ ଯୋଡ଼ି ଦେଇଛନ୍ତି । ଯେମିତି, ବିଷ୍ଣୁ ଶକ୍ତି ବୈଷ୍ଣବୀ, ରୁଦ୍ରଙ୍କ ଶକ୍ତି ରୌଦ୍ରାଣୀ, ଇନ୍ଦ୍ରଙ୍କ ଶକ୍ତି ଇନ୍ଦ୍ରାଣୀ, ନରସିଂହଙ୍କ ଶକ୍ତି ନାରସିଂହ, କାର୍ତ୍ତିକେୟଙ୍କ ଶକ୍ତି କାର୍ତ୍ତିକେୟୀ ଏବଂ ସୀତା-ରାମ, ରାଧାକୃଷ୍ଣ, ପ୍ରଜ୍ଞା-ପାରମିତା, ପୁରୁଷ-ପ୍ରକୃତି ଏହିସବୁ ପ୍ରତୀକ ଭିତରେ ଶକ୍ତିର ମହନୀୟତା ଯୁଗେ ଯୁଗେ ଉଦ୍‌ଘୋଷିତ ହୋଇଛି ।

ସମ୍ଭବତଃ ଖ୍ରୀ:ପୂ: ୪୦୦୦ରୁ ୨୫୦୦ ବର୍ଷ ଭିତରେ ସିନ୍ଧୁ ପ୍ରଦେଶରେ ମହେଞ୍ଜୋଦାରୋ ଓ ହରପ୍ପା ଅଞ୍ଚଳରେ ଦ୍ରାବିଡ଼ ଗୋଷ୍ଠୀର ଲୋକମାନଙ୍କ ସଭ୍ୟତା ଗଢ଼ି ଉଠିଥିଲା । ସେହି ଅଞ୍ଚଳର ଖନନ ଫଳରେ ପ୍ରାକ୍-ଆର୍ଯ୍ୟ ସଭ୍ୟତାର ନିଦର୍ଶନ ସ୍ୱରୂପ ମହେଞ୍ଜୋଦାରେ । ହରପ୍ପାରୁ ପ୍ରାପ୍ତ ବହୁ ପ୍ରସ୍ତର ନିର୍ମିତ ସ୍ତ୍ରୀ ମୂର୍ତ୍ତିମାନଙ୍କରୁ ଏହାର ପ୍ରମାଣ ଯଥେଷ୍ଟ ପରିମାଣରେ ମିଳିଥାଏ । ତେଣୁ ବହୁ ଶାସ୍ତ୍ରଜ୍ଞ ମଣ୍ଡଳୀ ତଥା ବହୁ ସମାଲୋଚକମାନେ ଏଗୁଡ଼ିକୁ 'ମାତୃଦେବୀ'ର ପୂର୍ବରୂପ ମଧରେ ପ୍ରାଣଶକ୍ତି ଓ ପ୍ରଜନନ ଶକ୍ତିର ପ୍ରତୀକ ରୂପେ ଗ୍ରହଣ କରି ନେଇଛନ୍ତି । ପ୍ରକୃତରେ ଭାରତୀୟ ପରମ୍ପରାରେ ଶକ୍ତି ଶବ୍ଦ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।



ପ୍ରତ୍ୟେକ ମଣିଷ ଚାହେଁ ଦୈନ୍ୟ, ବୁଭୁକ୍ଷାରୁ ମୁକ୍ତି ପାଇବା ପାଇଁ । ବିପାକ-ବିପର୍ଯ୍ୟୟର ସମ୍ମୁଖୀନ ହୋଇ ତଥାପି ବଞ୍ଚି ରହିବା ପାଇଁ ଏବଂ ସର୍ବୋପରି ଏକ ମାନବୋତ୍ତର-ଜୀବନର ସଂଧାନୀ ହୋଇ ଚିରନ୍ତନ ସୁଖ-ଶାନ୍ତି ଲାଭ କରିବା ପାଇଁ । ଏଥିପାଇଁ ତାକୁ ଦରକାର ହୋଇଥାଏ ଉଦ୍ଦାମ-ଶକ୍ତି, ସାହସ ସଂକଳ୍ପ ଓ ବୋଧନ ଜାଗୃତି । ଅତିମାନବୀୟ-ଜୀବନଯାପନ କରିବା ମଣିଷ ପାଇଁ ଯେତିକି ବଡ଼ କଥା ନୁହେଁ ତା'ଠାରୁ ଅଧିକ ବଡ଼କଥା ହେଲା ତା' ପକ୍ଷରେ ସମୃଦ୍ଧି ଓ ସ୍ୱଚ୍ଛନ୍ଦ ଜୀବନ ଲାଗି ପନ୍ଥା ନିର୍ଦ୍ଧାରଣ କରିବା, ସେଥିପାଇଁ ସୁପ୍ତ-ଶକ୍ତି ଅଦୃଶ୍ୟ ବୋଧନ ପ୍ରକ୍ରିୟାର ଜାଗରଣ ଆବଶ୍ୟକ ହୋଇଥାଏ ଏବଂ ମଣିଷ କେଉଁ ଆଦିମ ଯୁଗରୁ ଏହି ଶକ୍ତିର ଉତ୍ସ ଖୋଜି ପାଇଛି । ଯାହାକି ଦେବୀ ଦୁର୍ଗା କିମ୍ବା ଶକ୍ତି ଆରାଧନା ସେହି ଆଦିମ ମାନବର ସ୍ୱର ଭିତରୁ ଜନ୍ମ ନେଇଛି କହିବା ଭୁଲ ହେବ ନାହିଁ ।

ଐତିହାସିକ ଦୃଷ୍ଟିକୋଣରୁ ବିଚାର କଲେ ଦେବୀଙ୍କ ପ୍ରାଚୀନତା ସମ୍ବନ୍ଧରେ ବହୁ ଆଭାସ ମିଳେ । ଡ. ଜନ୍ ମିଉସାଲୀ ତାଙ୍କର 'ଇଣ୍ଡିସ୍





ଭେଲି ସିଭିଲାଇଜେସନ' ଗ୍ରନ୍ଥରେ ମହେଞ୍ଜୋଦାରୋ ହରପ୍ପାରୁ ମିଳିଥିବା ଶିବ-ଶକ୍ତି ନଗ୍ନ ମୂର୍ତ୍ତି ଭାରତୀୟ ଶକ୍ତି ପୂଜାର ସର୍ବପ୍ରଥମ ପ୍ରତୀକ ବୋଲି ଆଲୋକପାତ କରିଛନ୍ତି । ଭାରତୀୟ ବହୁ ପୁରାଣରେ 'ପୃଥିବୀ ଦେବୀ' ପୌରାଣିକ ମହାଶକ୍ତି ବା ମହାଦେବୀ ଦୁର୍ଗା ରୂପରେ ଦେଖା ଦେଇଛନ୍ତି । କିନ୍ତୁ ମାର୍କଣ୍ଡେୟ ପୁରାଣକୁ ଅବଲମ୍ବନ କରି ଚଣ୍ଡୀଦେବୀ ପ୍ରତିଷ୍ଠା ଲାଭ କରିଛନ୍ତି । ମାର୍କଣ୍ଡେୟ ପୁରାଣର ତ୍ରୟୋଦଶ ଅଧ୍ୟାୟରେ ବର୍ଣ୍ଣିତ 'ଦେବୀ ମହାତ୍ମ୍ୟ'ରେ ଦେବୀ ଚଣ୍ଡୀଙ୍କର ବହୁବିଧ ଶକ୍ତିର ସ୍ୱରୂପ ଉଦ୍‌ଘାଟିତ ହୋଇଛି । ତେଣୁ ପ୍ରତୀତ ହୁଏ ଯେ ମାର୍କଣ୍ଡେୟ ପୁରାଣ ସ୍ଥିତ 'ଚଣ୍ଡୀ'ଙ୍କର ବହୁ ଉପାଖ୍ୟାନ ପୂଜାପଦ୍ଧତି ମଧ୍ୟରେ ଚଣ୍ଡୀଙ୍କର 'ପୃଥିବୀ' ରୂପର ପରିଚୟ ମିଳେ । ଏଥିରେ ସ୍ପଷ୍ଟ ଉଲ୍ଲେଖ ହୋଇଛି ଯେ, ଆଧାର ଭୂତା ଜଗତ ତ୍ୱମେକା ମହୀ ସ୍ୱରୂପେଣ ଜଗତ୍ ସ୍ଥିତାସି । କେତେକ ସ୍ଥାନରେ ଉକ୍ତ ଚଣ୍ଡୀ ଦେବୀ ଭଗବତୀ-ପରମେଶ୍ୱରୀ ରୂପରେ ତ ଆଉ କେତେକ ସ୍ଥାନରେ ଦେବୀ-ଗୌରୀ, କାତ୍ୟାୟନୀ, ଶାକମ୍ଭରୀ, ପାର୍ବତୀ, ଉମା ଆଦି ରୂପରେ ବର୍ଣ୍ଣିତା, ସର୍ବୋପରି 'ଦୁର୍ଗତି ନାଶିନୀ ଦୁର୍ଗା' ନାମରେ ସମଗ୍ର ଭାରତୀୟ ଧର୍ମଶାସ୍ତ୍ରରେ ମଧ୍ୟ ପୂଜିତ ।

ଦୁର୍ଗା ଶବ୍ଦର ଉତ୍ପତ୍ତି ବୈଦିକ ଯୁଗରେ ହୋଇଥିବାର ପ୍ରମାଣ ମିଳେ । ବିଶ୍ୱାସର ତନ୍ତ୍ରରେ ଦୁର୍ଗା ଦେବୀଙ୍କର ବର୍ଣ୍ଣନା ଛଳରେ କୁହାଯାଇଛି - 'ଅରଣ୍ୟେ ରଣେ ଦାରୁଣେ ଶତ୍ରୁ ମଧ୍ୟେ, ଅନଳେ ସାଗରେ ପ୍ରାନ୍ତରେ ରାଜଗୃହେ ତ୍ୱମେକା ଗତିର୍ଦ୍ଦେବି ନିସ୍ତାର ହେତୁ, ନମସ୍ତେ ଜଗତାରିଣୀ ତ୍ରାହି ଦୁର୍ଗେ ।' ଅର୍ଥାତ୍, ଅରଣ୍ୟରେ, ଦାରୁଣ ଶତ୍ରୁ ମଧ୍ୟରେ, ଅଗ୍ନିର ସାଗର ପ୍ରାନ୍ତରରେ ନିସ୍ତାର ହେତୁ ତୁମେ ହିଁ ଏକମାତ୍ର ଗତି । ହେ ଜଗତାରିଣୀ ଦୁର୍ଗେ ତୁମକୁ ପ୍ରଣାମ ।

ତୈତ୍ତିରୀୟ ଆରଣ୍ୟକରେ ମଧ୍ୟ ଦୁର୍ଗା ଶବ୍ଦ ସ୍ପଷ୍ଟ ଭାବରେ ଦେଖିବାକୁ ମିଳେ । ଦେବୀଙ୍କର ଏକ ଗାୟତ୍ରୀ ମନ୍ତ୍ରରେ ମଧ୍ୟ 'ତନ୍ନୋ ଦୁର୍ଗେ ପ୍ରଚୋଦୟାତ୍' ରହିଛି । ଏ ସଂପର୍କରେ କହାଯାଇପାରେ ଯେ ଯଜୁର୍ବେଦୀୟ ଯୁଗରେ ଅନାର୍ଯ୍ୟ ଦ୍ରାବିଡ଼ମାନଙ୍କ ସହିତ ଆର୍ଯ୍ୟମାନଙ୍କର ଘନ ଘନ ଯୁଦ୍ଧ ହେଉଥିଲା । ଏହି ବେଦର ଅନ୍ତର୍ଗତ ଆରଣ୍ୟକରୁ ଦୁର୍ଗାଙ୍କ ନାମ ମିଳୁଥିବାରୁ ଦୁର୍ଗାଙ୍କୁ ଅଧିଷ୍ଠାତ୍ରୀ ଦେବୀ ରୂପେ ମଧ୍ୟ ପରିକଳ୍ପନା କରାଯାଇପାରେ । ଶ୍ରୀ ସପ୍ତଶତୀ ଚଣ୍ଡିରୁ ଜଣାଯାଏ ଯେ ଦୁର୍ଗା ବା ଶକ୍ତି ପ୍ରକୃତରେ ଯୁଦ୍ଧର ଦେବୀ । ଯେତେବେଳେ ଗୋଟିଏ ଦେଶ ବା ଜାତି ଦସ୍ୟୁ, ଦାନବ ବା ରାକ୍ଷସ ଦ୍ୱାରା ପ୍ରପୀଡ଼ିତ, ସେତେବେଳେ ଦେବୀ ରଣଚଣ୍ଡି ରୂପେ ଆବିର୍ଭୂତା । ଏହି ସତ୍ୟତା ଦେବୀ-ବାକ୍ୟରେ ପ୍ରକଟିତ -

'ଇତ୍ଥଂ ଯଦା ଯଦା ବାଧା ଦାନବୋ ତଥା ଭବିଷ୍ୟତି,
ତଦାତିଦା ବତୀ ମଥାହଂ କରିଷ୍ୟାମ୍ୟରି ସଂକ୍ଷୟମ୍ ।'

ଦୁର୍ଗାଦେବୀ ସର୍ବଶକ୍ତି ସ୍ୱରୂପିଣୀ ପରମା ଆଦିଶକ୍ତିଙ୍କର ଏକ ସ୍ଥୂଳ ରୂପ । ଦେବୀ ବିଭିନ୍ନ ଯୁଗରେ ବିଭିନ୍ନ ସ୍ଥାନରେ ମାନବର ଦୁର୍ଗତୀ ତାରଣ ନିମିତ୍ତ ଲୀଳାମୟୀ ରୂପେ ଆବିର୍ଭୂତା, ତାଙ୍କର ସ୍ୱେଚ୍ଛା ଗୃହୀତବ ପୁଷୀ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ମଧ୍ୟ କଳ୍ପନା କରିପାରି ନାହାନ୍ତି । ସମସ୍ତ ସୃଷ୍ଟି ଯେତେବେଳେ ଦାନବମାନଙ୍କର ଦୌରାତ୍ମ୍ୟରେ ଭୀତତ୍ରସ୍ତ, ସେତେବେଳେ ସଂହାର ରୂପିଣୀ ଦେବୀଙ୍କର ଆବିର୍ଭାବ । ତାଙ୍କୁ ଜଗତର ତାରଣ ନିମିତ୍ତ ସ୍ତୁତି କରି ଦେବ ଦେବ ମହାଦେବ ଗାଇ ଉଠିଥିଲେ - 'ଶୃଣୁ ଦେବୀ, ମହାଭାଗେ ତ ଆରାଧନା କାରଣଂ, ତବ ସାଧନତୋ ଯେନ ବ୍ରହ୍ମସା ଯୁଜ୍ୟ ଯୁଶ୍ଚପେ, ତ୍ୱପରା ପ୍ରକୃତି ସାକ୍ଷାଦ୍ ବ୍ରାହ୍ମଣଃର ରମାତ୍ମନଃ ତତ୍ତ୍ୱୋଜାତଂ ଜଗତ୍ ସର୍ବତ୍ୱଂ ଜଗଜ୍ଜନନୀ ଶିବେ ।' ଅର୍ଥାତ୍, ଦେବୀ ମହାଭାଗେ ! ତୁମକୁ ଆରାଧନା କରିବାର କାରଣ ହେଉଛି ତୁମର ସାଧନାରେ ରତ ରହି ଜୀବବ୍ରହ୍ମ ସାଯୁଜ୍ୟ (କୈବଲ୍ୟ) ଲାଭ କରିପାରେ । ତୁମେ ପରମାତ୍ମା ସ୍ୱରୂପ ବ୍ରହ୍ମର ପରମା ପ୍ରକୃତିହେ ଶିବେ, ତୁମଠାରୁ ସମସ୍ତ ଜଗତ୍ ଉତ୍ପନ୍ନ, ତେଣୁ ତୁମେ ଜଗଜ୍ଜନନୀ ।

କବି ସାରଳା ଦାସ ଦେବୀଙ୍କୁ ଦୁର୍ଗା ବୋଲି କହିଛନ୍ତି । ସେ ଦୁର୍ଗତୀ ନାଶିନୀ ବୋଲି ହିଁ ଦୁର୍ଗା । ଅର୍ଥାତ୍, ଦେବତାମାନଙ୍କ ଦୁଃଖ ଦୁର୍ଦ୍ଦଶା ଦୂର କରିବାକୁ କେବଳ ନୁହେଁ, ସାଧାରଣ ଲୋକମାନଙ୍କର ମଧ୍ୟ ପାପ ତାପ ନାଶ କରନ୍ତି । ଦୁର୍ଗାଙ୍କ ନାମ ସ୍ମରଣ କଲେ ଦୁର୍ଗତି ବିପଦ ଓ ବିଘ୍ନ ଦୂର ହୋଇଥାଏ । ଯମଦଣ୍ଡ ଭୟ ରହେ ନାହିଁ ଏବଂ ଦୁରାରୋଗ୍ୟ ବ୍ୟାଧିରୁ ମୁକ୍ତି ମିଳେ । କବି ସାରଳା ଦାସଙ୍କ ଭାଷାରେ -

'ଶ୍ରୀଦୁର୍ଗା ସୁମରେ ଜନେ ଦୁର୍ଗତୀ ହେଉ ନାଶ,
ଶ୍ରୀଦୁର୍ଗା ସୁମରେ ଜନେ ଫିଟୁ କାଳ ଫାଶ ।
ଶ୍ରୀଦୁର୍ଗା ସ୍ମରଣରେ ଜ୍ୱର ରୋଗ ଖଣ୍ଡ,
ଶ୍ରୀଦୁର୍ଗା ସୁମରଣେ ନ ଲାଗିବ ଯମଦଣ୍ଡ ।'

ଦୁର୍ଗା ନାମରେ ଏହି ବ୍ୟାଖ୍ୟା ପାରମ୍ପରିକ ଶାସ୍ତ୍ରରୁ ଗୃହୀତ । ଶାସ୍ତ୍ରୀୟ ମତରେ ଦୁର୍ଗା ସୁରକୁ ବଧ କରିଥିବାରୁ ମଧ୍ୟ ସେ ଦୁର୍ଗା ନାମ ଧାରଣ କରିଛନ୍ତି । ଦୁର୍ଗା ଦୁର୍ଗତୀ ନାଶିନୀ, କାଳୀ କରାଳରୂପ, ଗୌରୀ ହିମାଚଳ କନ୍ୟା କିମ୍ବା ମହାମାୟା ସାମଗ୍ରିକ ଭାବେ ବିଶ୍ୱ ମାୟାବାଦର କାୟାକଳ୍ପ ଭାବରେ ପରିଚିତା ଏବଂ ପୂଜିତା । ମାତ୍ର ଆଦ୍ୟାଶକ୍ତିଙ୍କୁ ଏହିସବୁ ମହାଶକ୍ତିର ସମ୍ମିଳିତ ବିକାଶର ସ୍ରୋତ ବୋଲି କୁହାଯାଇଥାଏ । ଅବଶ୍ୟ ସପ୍ତଶତୀ ଚଣ୍ଡିରେ ଦେବୀ ନିଜ ମୁଖରେ ବିଶ୍ୱ ପ୍ରକ୍ରିୟା ଓ ଆତ୍ମଶକ୍ତିର ଉଲ୍ଲେଖ କରି କହିଛନ୍ତି ଯେ - 'ଏକୈବାହଂ ଜଗତ୍ୟତ୍ର ଦ୍ୱିତୀୟା କାସମାପରା ।' ଦୁଃଖ, ଦୈନ୍ୟ, ଦୁର୍ବିପାକ, ଦୁର୍ନୀତି, ଦୁଷ୍ପ୍ରବୃତ୍ତିର ଦମନ ଏବଂ ବିଶ୍ୱରେ ସାମ୍ୟ, ଶକ୍ତି, ସୌଖ୍ୟ, ସମୃଦ୍ଧି ଆଣିବା ଲାଗି ଦେବୀ ମହାଶକ୍ତି ଯୁଗ ଯୁଗ ଧରି ଆବିର୍ଭୂତା ହୋଇଥାନ୍ତି ।

ଆଚାର୍ଯ୍ୟ ଶଙ୍କର ଶକ୍ତିଙ୍କ ଅସ୍ତିତ୍ୱ ବିଷୟରେ ବଖାଣିବାକୁ ଯାଇ ଉଚ୍ଚ କଣ୍ଠରେ ଗାଇ ଉଠିଥିଲେ -

'ଶିବଃ ଶକ୍ତ୍ୟା ଯୁକ୍ତୋ ଯଦି ଭବତି ଶକ୍ତିଃ ପ୍ରଭବତୁଂ,
ନଚେ ଦେବଂ ଦେବୋନଖଲୁ କୁଶଳଃ ସ୍ପନ୍ଦିତୁମପି ।'





ଅର୍ଥାତ୍, ଶିବ ଶକ୍ତି ଯୁକ୍ତ ହେଲେ ସେ ଈଶ୍ୱରଙ୍କ କାର୍ଯ୍ୟ କରିବାକୁ ସମର୍ଥ ହୋଇଥାନ୍ତି । ତା' ନହେଲେ ତାଙ୍କର ସ୍ପନ୍ଦିତ ହେବାକୁ ସାଧ ରହେ ନାହିଁ ।

ଦେବୀ ଭାଗବତରେ ମଧ୍ୟ ଶକ୍ତିଙ୍କ ବିଷୟରେ ଠିକ୍ ସେହି କଥା ଉଲ୍ଲେଖ ରହିଛି - 'ଶିବୋଽପି ଶବତାଂ ଯାତି ତୟା ଶକ୍ତ୍ୟା ବିବର୍ଜିତଃ ।' ଅର୍ଥାତ୍, ଶକ୍ତିଦ୍ୱାରା ବର୍ଜିତ ହେଲେ ଶିବ ମଧ୍ୟ ଶବ ହୋଇଥାନ୍ତି । ସମଗ୍ର ସୃଷ୍ଟିରେ ଜଡ଼ଠାରୁ ଚେତନ ପର୍ଯ୍ୟନ୍ତ ସମସ୍ତେ ଶକ୍ତି କବଳିତ । ଶକ୍ତିର ଅଭାବରେ ଯେ ସୃଷ୍ଟି କଳ୍ପନା ଅସମ୍ଭବ ସେଥିପାଇଁ ଦେବଲୋକଠାରୁ ମୃତ୍ୟୁ ଲୋକ ପର୍ଯ୍ୟନ୍ତ ସର୍ବତ୍ର ଶକ୍ତିର ଅଖଣ୍ଡଲୀଳା ମୂର୍ତ୍ତି ପରିଦୃଷ୍ଟ ହୁଏ । ପୁଞ୍ଜିଭୂତ ସମସ୍ତ ଶକ୍ତିର ମୂର୍ତ୍ତିମାନ ଦେବୀ ରୂପେ ସେ ଆବିର୍ଭୂତା - ପୂଜିତା - ଯା'ଦେବୀ ସର୍ବ ଭୂତେଷୁ ଶକ୍ତି ରୂପେଣ ସଂସ୍ତିତା ଭିତରେ ସର୍ବୋପରି ପୃଥିବୀ ମଧ୍ୟରେ ରହିଥିବା ଅନନ୍ତ ପ୍ରାଣଶକ୍ତି ତଥା ଅସଂଖ୍ୟ ରୂପ ମଧ୍ୟରେ ତା'ର ପରିପ୍ରକାଶ, ଯାହା ବେଦଜ୍ଞ ପୁରୁଷମାନଙ୍କ ଚିତ୍ତାକାଶରେ ଏକ ବିସ୍ମୟାଭିଭୂତ ଭାବ ପ୍ରକଟ କରିଛି । ଏହି ଶ୍ରଦ୍ଧାର ପ୍ରଗାଢ଼ତା ମଣିଷର ଧର୍ମବୋଧର ଏକମାତ୍ର ପରିଚୟ ଏବଂ ସେହି ଧର୍ମବୋଧକୁ ଅବଲମ୍ବନ କରି ପୃଥିବୀ ମାତାଙ୍କର ଦେବୀ ଦୁର୍ଗାଙ୍କ ସ୍ୱରୂପ । ସେଥିପାଇଁ ବେଦଜ୍ଞମାନେ କହିଛନ୍ତି -

'ଜଳେ ଶୀତଳତ୍ୱଂ ଶୁଚୈଦାହକତ୍ୱଂ ବିଧେ
ନିର୍ମଳତ୍ୱଂ ରବୌ ତାପକତ୍ୱଂ, ତ୍ୱମେକାମ୍ବିକେ ଯସ୍ୟ
କସ୍ୟାପି ଶକ୍ତିଃ ତ୍ୱମେକା ପରଂବ୍ରହ୍ମ ରୂପେଣ ସିଦ୍ଧଃ ।'

ଅର୍ଥାତ୍, ଜଳର ଶୀତଳତା, ଅଗ୍ନିର ଦାହକତା, ଚନ୍ଦ୍ରର ନିର୍ମଳତା, ସୂର୍ଯ୍ୟଙ୍କର ପ୍ରଖରତା, ରୂପକ ଶକ୍ତି ହିଁ ତୁମେ, ପୁଣି ମଧ୍ୟ ତୁମେ ପରଂବ୍ରହ୍ମ ସ୍ୱରୂପିଣୀ ଅମ୍ବିକା ।

ଚଣ୍ଡି ପୁରାଣରେ ଦେବୀ ଦୁର୍ଗାଙ୍କର ତିନୋଟି ବିଶିଷ୍ଟ ଘଟଣାର ବର୍ଣ୍ଣନା ରହିଛି, ଯଥା- ଦେବୀଙ୍କ ସହାୟତାରେ ମଧୁ-କୈଟଭ ଅସୁର ନିଧନ, ମହିଷାସୁର ନିଧନ, ଏବଂ ଶମ୍ଭୁ-ନିଶୁମ୍ଭ ଅସୁର ବଧ ପ୍ରଭୃତିକୁ ନେଇ ଦେବୀଙ୍କର ମହିମା ପ୍ରଚାର କରାଯାଇଛି । ତା' ସହିତ ଚଣ୍ଡ-ମୁଣ୍ଡ ଓ ରକ୍ତବୀର୍ଯ୍ୟ ଭଳି ଆଉ କେତେକ ପ୍ରତାପୀ ଅସୁର ମଧ୍ୟ ଦେବୀଙ୍କ ଦ୍ୱାରା ବଧ ହୋଇଥିବା ବର୍ଣ୍ଣନା ରହିଛି । ଏଥିରେ ଦେବୀ ଦେବଗଣଙ୍କ ସମସ୍ତ ତେଜର ଘନୀଭୂତ ରୂପ ଏବଂ ସମସ୍ତ ଶକ୍ତିର ଅଧିକାରିଣୀ ଭାବେ ଚିତ୍ରିତ । ଦେବୀଙ୍କ ଉକ୍ତ ଅସୁର ବିନାଶିନୀ ରୂପ ମଧ୍ୟରେ ମହିଷାସୁର ମର୍ଦ୍ଦିନୀ ରୂପ ହିଁ ଅତି ପ୍ରାଚୀନ ଏବଂ ପ୍ରଧାନ । ପରବର୍ତ୍ତୀ କାଳରେ ସାର୍ବଜନୀନ ଶାରଦୀୟ ମହୋତ୍ସବ ପାଳନ ଭିତରେ ହିଁ ଦେବୀଙ୍କର ଅଷ୍ଟଭୁଜା - ମୃଣ୍ମୟୀ ମୂର୍ତ୍ତି ମହିଷାମର୍ଦ୍ଦିନୀ ରୂପ ହିଁ ଗୃହୀତ ଏବଂ ପୂଜିତ ହୋଇ ଆସୁଛନ୍ତି ।

ଚଣ୍ଡି ପୁରାଣରେ ଉଲ୍ଲେଖ ରହିଛି ଯେ ଅସୁରମାନଙ୍କ ପ୍ରାଦୁର୍ଭାବରୁ ରକ୍ଷା ନିମିତ୍ତ ସମସ୍ତ ଦେବଗଣଙ୍କ ସହିତ ସ୍ୱୟଂ ଶିବ ମଧ୍ୟ ଯୋଗ ଦେଇ ଯୋଡ଼ହସ୍ତରେ କାକୁସ୍ଥ ଭାବରେ ଦେବୀଙ୍କ ଆଶ୍ରୟ ଭିକ୍ଷା କରିଛନ୍ତି । ତେଣୁ ମଧୁ-କୈଟଭ ବଧରେ ଦେବୀ ହୋଇଛନ୍ତି ଜଗତ୍‌ପତିଙ୍କର ଯୋଗନିଦ୍ରା - ମହାମାୟା ସମଦାୟିନୀ ଶକ୍ତି । ପ୍ରଥମେ ଆଦି ଦେବ ବ୍ରହ୍ମାଙ୍କ ସ୍ତବ ଦ୍ୱାରା ନିତ୍ୟରଂଗା ଦେବୀଙ୍କୁ ଜାଗ୍ରତ କରିଛନ୍ତି । ସମଦାୟିନୀ ଶକ୍ତିର ଜାଗରଣ ଦ୍ୱାରା ବିଷ୍ଣୁଙ୍କର ଅସୁର ମାରଣ କାର୍ଯ୍ୟ ସମ୍ଭବ ହୋଇପାରିଛି । ସେଥିପାଇଁ ଦେବୀଙ୍କୁ ବିଶ୍ୱେଶ୍ୱରୀ-ଭଗବତୀ ନାମରେ ଉପାସନା କରାଯାଉଛି । ପୁନଶ୍ଚ ସେହି ଜଗତଧାତ୍ରୀ, ସୃଷ୍ଟି ସ୍ଥିତି ପ୍ରଳୟକାରିଣୀ ଦେବୀଙ୍କୁ ବିଷ୍ଣୁଙ୍କର ନିଦ୍ରା ଶକ୍ତି ରୂପେ ମଧ୍ୟ ଚିତ୍ରଣ କରାଯାଇଛି, ଯଥା- 'ଯା' ଦେବୀ ସର୍ବ ଭୂତେଷୁ ନିଦ୍ରା ରୂପେଣ ସଂସ୍ଥିତା, ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ।'

ବାସ୍ତବିକ ଏସବୁ ଦୃଷ୍ଟିକୋଣରୁ ଦେଖିବାକୁ ଗଲେ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଶକ୍ତି ହିଁ ଶକ୍ତିମାନ ଅପେକ୍ଷା ପ୍ରଧାନ, କାରଣ ଶକ୍ତି ବ୍ୟତୀତ ଶକ୍ତିମାନର ଶକ୍ତି ସତ୍ତା ଫଳବତୀ ହୋଇପାରେ ନାହିଁ । ସେଥିପାଇଁ କବି ଗୋପବନ୍ଧୁ ଦାସ ମୁକ୍ତ କଣ୍ଠରେ କହି ଉଠିଥିଲେ - 'ଶକ୍ତି ବିନା ସତ୍ତା କେବେ ନୁହଇ ସମ୍ଭବ ।' ସାରା ବିଶ୍ୱରେ ପୁରି ରହିଛି ଏହି ଶକ୍ତିମୟୀଙ୍କ ସତ୍ତା । ଶକ୍ତିମୟୀଙ୍କର ଏହି ମହିଷାସୁର ମର୍ଦ୍ଦିନୀ ରୂପ ହିଁ ସମଗ୍ର ଭାରତୀୟ ଚିତ୍ରକଳା ଓ ଭାସ୍କର୍ଯ୍ୟ ମଧ୍ୟରେ ଅତ୍ୟନ୍ତ ଜୀବନ୍ତ ହୋଇ ଉଠିଛି । ତେଣୁ ଏ ଶକ୍ତିମୟୀ ଦେବୀ ଦୁର୍ଗାଙ୍କୁ ଭାରତୀୟ ଭାଷା ସାହିତ୍ୟରେ ବହୁ ବିଜ୍ଞମଣ୍ଡଳୀ ବହୁଭାବରେ ସ୍ତୁତି କରି ଆପଦ-ବିପଦରେ ରକ୍ଷା କରିବା ନିମନ୍ତେ ଆବାହନ କରିଥାନ୍ତି ।

ପରମେଶ୍ୱରଙ୍କ ବୈଚିତ୍ର୍ୟ ପୂର୍ଣ୍ଣ ସୃଷ୍ଟିର ସୀମାହୀନ ପୃଥିବୀର ବିସ୍ତାର ରୂପ ବୈଚିତ୍ର୍ୟ ଓ ପ୍ରକୃତି ବୈଚିତ୍ର୍ୟ ମଧ୍ୟରେ ବାରମାସରେ ଷଡ଼ଋତୁର ବର୍ଣ୍ଣନା ମୂଳରେ କେତେକ ଧର୍ମୀୟ ତତ୍ତ୍ୱ ନିହିତ ରହିଛି । ତେଣୁ ବିଧିବିଧାନ ମଧ୍ୟରେ ଶରତ ଋତୁର ଶାରଦୀୟ ବର୍ଣ୍ଣୋତ୍ସବ ମଧ୍ୟରେ ପୃଥିବୀ ମାତା ବା ଶକ୍ତି ପୂଜାର ବିଧି ରହିଥିବାର ଦେଖାଯାଏ । ଭାରତୀୟ ଧର୍ମ ବିଶ୍ୱାସରେ ଦୃଢ଼ ମୂଳ ରୂପ ଧାରଣ କରି ଶକ୍ତିମୟୀ ଦେବୀ ଦୁର୍ଗା ହିଁ ସମଗ୍ର ଜନସାଧାରଣଙ୍କର ଦୁଃଖ-ସୁଖ, ଆପଦ-ବିପଦ, ରୋଗ-ଶୋକ ଇତ୍ୟାଦି ଦୁର୍ଗତିକୁ ବିନାଶ କରି ଦୁର୍ଗତି ନାଶିନୀ ଦୁର୍ଗା ନାମକୁ ଧାରଣ କରି ସମଗ୍ର ପୃଥିବୀ ପୃଷ୍ଠରେ ସର୍ବତ୍ର ବିରାଜିତା ହୋଇ ପୂଜା ପାଉଛନ୍ତି ଏବଂ 'ଯା' ଦେବୀ ସର୍ବ ଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା' - ଭାବଧାରାରେ ଜଗଦ୍‌ଧାତ୍ରୀ ଜନନୀ ରୂପକୁ ଜୀବନ୍ତ କରିଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଓଡ଼ିଆ ବିଭାଗ
ବିଜୁ ପଟ୍ଟନାୟକ ବିଜ୍ଞାନ ଓ ଶିକ୍ଷା ମହାବିଦ୍ୟାଳୟ
ଭୁବନେଶ୍ୱର







# ଶାରଦୀୟ ପର୍ବ : ଦଶହରା

ଶ୍ରୀନିବାସ ଆଚାର୍ଯ୍ୟ

ଏହି ଭୌତିକ ସଚରାଚର ବ୍ରହ୍ମାଣ୍ଡରେ ଯୁଗ ଯୁଗ ଧରି ଯେତେବେଳେ ଧର୍ମର ଗ୍ଲାନି ଓ ଅଧର୍ମର ଅଭ୍ୟୁତ୍ଥାନ ଅର୍ଥାତ୍ ସତ୍ୟ, ନ୍ୟାୟ, ସାଧୁ-ସନ୍ଥମାନଙ୍କର ପତନ ଓ ଅନ୍ୟାୟ, ଅସତ୍ୟ ପାପଭାରା ଘୋଟି ଯାଇଥାଏ, ସେତେବେଳେ ସ୍ୱୟଂ ଭଗବାନ ଧରାପୃଷ୍ଠରେ ବିଭିନ୍ନ ରୂପରେ ଅବତରଣ କରି ଦୁଷ୍ଟମାନଙ୍କୁ ଦଳନ କରି ସନ୍ଥମାନଙ୍କୁ ରକ୍ଷା କରିଥାନ୍ତି । ତେଣୁ ଧରାପୃଷ୍ଠକୁ ପାପଭାରାରୁ ମୁକ୍ତି କରିବା ପାଇଁ ବିଭିନ୍ନ ଯୁଗ ତଥା ସତ୍ୟ, ତ୍ରେତା, ଦ୍ୱାପର ଓ କଳିଯୁଗରେ ସ୍ୱୟଂ ସାକ୍ଷାତ ପରଂବ୍ରହ୍ମ ଭଗବାନ ଭିନ୍ନ ଭିନ୍ନ ରୂପରେ ଆବିର୍ଭାବ ହୋଇଥାଆନ୍ତି । ତେଣୁ ଗୀତାରେ ଅଛି -

‘ଯଦା ଯଦା ହିଁ ଧର୍ମସ୍ୟ, ଗ୍ଲାନିର୍ଭବତି ଭାରତ ।<br>
ଅଭ୍ୟୁତ୍ଥାନମ୍ ଅଧର୍ମସ୍ୟ, ତଦାତ୍ମାନଂ ସୃଜାମ୍ୟହମ୍ ॥<br>
ପରିତ୍ରାଣାୟ ସାଧୁନାଂ, ବିନାଶାୟଚ ଦୁଷ୍କୃତମ୍ ।<br>
ଧର୍ମସଂସ୍ଥା ପନାର୍ଥାୟ, ସମ୍ଭବାମି ଯୁଗେ ଯୁଗେ ॥’

ଏହି କିମ୍ବଦନ୍ତୀମାନ ମହାଭାରତ, ରାମାୟଣ, ଭାଗବତ, ଗୀତା, ବାଇବେଲ ଓ କୋରାନ ଇତ୍ୟାଦି ଦ୍ୱାରା ଉଦ୍ଧୃତ ଓ କବି, ଲେଖକ, ମୁନିରଷି, ମହାପୁରୁଷଙ୍କ ଦ୍ୱାରା ଗୃହୀତ ହୋଇ ଜନମାନସ ପଟ୍ଟରେ ନ୍ୟାୟ, ସତ୍ୟ ଓ ଧର୍ମର ଭାବଧାରା ସୃଷ୍ଟି କରିପାରିଛି । ଏହି ଯୁଗୋପଯୋଗୀ ଆଧାତ୍ମିକ ଘଟଣାଗୁଡ଼ିକ ଚିରଦିନ ମାନବ ସମାଜର ସ୍ମରଣାର୍ଥେ ଓ ଐଶ୍ୱରିକ ଶକ୍ତିର ବିକାଶ ପାଇଁ ବିଭିନ୍ନ ପ୍ରକାର ପର୍ବପର୍ବାଣି ମାଧ୍ୟମରେ ପାଳିତ ହେଉଅଛି । ଫଳରେ ଜାତି, ଧର୍ମ, ସାନ, ବଡ଼, ଧନୀ ଓ ଦରିଦ୍ର ନିର୍ବିଶେଷରେ ଏହି ପବିତ୍ର ପର୍ବଗୁଡ଼ିକ ବିଶ୍ୱାସଭାଜନ ହୋଇପାରିବା ସଂଗେସଂଗେ ସୃଷ୍ଟି କରିପାରିଛି ପୌରାଣିକ ତଥା ଆଧାତ୍ମିକ ଭାବଧାରା । ହିନ୍ଦୁଧର୍ମରେ ପାଳିତ ହେଉଥିବା ପର୍ବପର୍ବାଣି ମଧ୍ୟରେ ଶୀର୍ଷସ୍ଥାନ ମଣ୍ଡନ କରିପାରିଛି ଏହି ଶାରଦୀୟ ପର୍ବ-ଦଶହରା । ସର୍ବୋପରି ଏହି ପର୍ବର ମହତ୍ତ୍ୱ ଓ ଗୁରୁତ୍ୱ କେବଳ ଭାରତ କାହିଁକି ସମଗ୍ର ବିଶ୍ୱଦରବାରରେ ହୋଇପାରିଛି ସମ୍ମାନନୀୟ, ଆଦରଣୀୟ ଓ ସର୍ବଜନାନୁମୋଦିତ । ଆଉ ମଧ୍ୟ ଶରତ ଋତୁର ଶୀତଳ ଜୋସ୍ନା ରଶ୍ମି, କୋମଳ ହୀମକଣା, ସୁଲୁସୁଲିଆ ମଧୁର ସମୀର, ନିର୍ମଳ ଓ ନୀଳ ଆକାଶର ପରିବେଶ ମଧ୍ୟରେ ଏହି ପର୍ବ ପାଳନ ହେଉଥିବାରୁ ଏହାକୁ ମଧ୍ୟ ଶାରଦୀୟ ପର୍ବ କୁହାଯାଇଥାଏ । ବାସ୍ତବିକ ଶରତ କାଳର ପରିବେଶ ସୃଷ୍ଟି କରିପାରିଛି ଅଗଣିତ ଭକ୍ତମାନଙ୍କ ହୃଦୟରେ ସର୍ବୋ ଅଧିଷ୍ଠାତ୍ରୀ ଦେବୀ ମା’ ଦୁର୍ଗାଙ୍କ ପ୍ରେମରସ ବାଣୀ । ତେଣୁ ଏହି ଶାରଦୀୟ ପର୍ବ- ଦଶହରା ଏକ ମହାନ, ପବିତ୍ର ଓ ଧାର୍ମିକ ପର୍ବ ଭାବରେ ସୁବିଦିତ ଅଟେ ।

ଆର୍ଯ୍ୟଭୂମି ତଥା ପବିତ୍ର ଭାରତବର୍ଷର ସୃଷ୍ଟି ସମୟରୁ ପ୍ରତ୍ୟେକ ଗ୍ରାମ ଓ ପୁରପଲ୍ଲୀରେ ଶକ୍ତିପୀଠଗୁଡ଼ିକ ପ୍ରତିଷ୍ଠିତ ହୋଇ ବୈଦିକ ନୀତିରେ ପୂଜାର୍ଚ୍ଚନାର ବିଧିବିଧାନ ଖଞ୍ଜା ହୋଇଅଛି । ହିନ୍ଦୁ ଧର୍ମାନୁମୋଦିତ ଋକ୍ ବେଦରେ ତେତିଶି କୋଟି ଦେବାଦେବୀଙ୍କର ଆରାଧନା ସମ୍ପର୍କରେ ଉଲ୍ଲେଖ ଅଛି । ଯେପରି ଗୋଟିଏ ପୁଷ୍ପରୁ ଅସଂଖ୍ୟ ପାଖୁଡ଼ା ସୃଷ୍ଟି ହୋଇ ଶୋଭାବର୍ଦ୍ଧନ କରିବା ସଂଗେସଂଗେ ଦେବାଦେବୀଙ୍କ ମସ୍ତକ ମଣ୍ଡନ କରିଥାଏ, ଠିକ୍ ସେହିପରି ଗୋଟିଏ ଶକ୍ତି ରୂପିଣୀ ମା’ (ଦେବୀ) ଅସଂଖ୍ୟ ନାମରେ ନାମିତ ହୋଇ ଧରାପୃଷ୍ଠରେ ଥିବା ସମସ୍ତ କଷ୍ଟ ଦୂର କରିବାକୁ ଉଦ୍ୟମ କରିଥାନ୍ତି । ମା’ ତା’ର ଔରସରୁ ଜାତ ସନ୍ତାନସନ୍ତିତିଙ୍କର ଶୁଭ କାମନା କରିଥାଏ ଓ ଦୁଃଖ, ବିଷାଦ, ରୋଗ ଓ ବ୍ୟାଧିବେଳେ ନିର୍ବିଘ୍ନରେ ସମସ୍ତ କଷ୍ଟ ଦୂର କରିବାକୁ ଉଦ୍ୟମ କରିଥାଏ । ସେହିପରି ବିଭିନ୍ନ ସମୟରେ ସର୍ବଶକ୍ତି ଦାୟିନୀ ତଥା ଦୁର୍ଗତିନାଶିନୀ ମା’ ଧରାପୃଷ୍ଠରେ ଅବତରଣ କରି ସମଗ୍ର ମାନବ ସମାଜର ମଙ୍ଗଳ କରିବା ସହ ନିଷ୍ଠୁର, ନିର୍ମମ, ଅତ୍ୟାଚାରୀ ଓ ଦୁଷ୍ଟମାନଙ୍କର ଗର୍ବ ଓ ଅହଂକାରକୁ ସଂହାର କରିଥାନ୍ତି । ଦୁର୍ଗତିନାଶିନୀ ମା’ ଦେବୀ ଦୁର୍ଗା, ଧନ ଓ ଅନ୍ନ ଦାୟିନୀ ମା’ ଲକ୍ଷ୍ମୀ, ବିଦ୍ୟାଦାୟିନୀ ମା’ ସରସ୍ୱତୀ, ନୃମୁଣ୍ଡ ମାଳିନୀ କାଳୀ, ଚଣ୍ଡୀ, ମଙ୍ଗଳା, ତାରିଣୀ, ବିରଜା, ସମଲେଇ, ଉତ୍ତରାୟଣୀ, ନାରାୟଣୀ, ସାରଳା,

ଭଗବତୀ, ଚର୍ଚ୍ଚିକା, ଯାଗୁଳେଇ, ଗୌରୀ, ଉଗ୍ରତାରା, ତାରାତାରିଣୀ, କାତ୍ୟାୟନୀ, ଶାକ୍ତମ୍ଭରୀ, ପାବର୍ତୀ, ଉମା ଓ ଚଉଷଠି ଯୋଗିନୀ ଇତ୍ୟାଦି ଅନ୍ୟତମ । ଏହିସବୁ ପ୍ରତୀକ ମଧ୍ୟରେ 'ଶକ୍ତି'ର ମହନୀୟତା ଅନ୍ତର୍ନିହିତ ହୋଇଅଛି । ସର୍ବୋପରି ଦୁର୍ଗତିନାଶିନୀ ମା' ତଥା ମହିଷାମର୍ଦ୍ଦିନୀ, ରକ୍ତବର୍ଣ୍ଣା, ଜ୍ୟୋତିର୍ମୟୀ, ତ୍ରିନୟନା, ଆଦିଶକ୍ତି, ଆଦିମାତା ଓ ସଂଭୂତା ଦେବୀ ଦୁର୍ଗା ସମଗ୍ର ବ୍ରହ୍ମାଣ୍ଡରେ ଦୁଷ୍ଟ ଦଳନ କରି ସନ୍ଥ ପାଳନ କରିଥିବାରୁ ଜନମାନସ ପଟ୍ଟରେ ବିଶ୍ୱାସଭାଜନ ହୋଇ ଭକ୍ତିପୂତ ଭାବରେ ପୂଜା ପାଉଛନ୍ତି । ଏହି ଦେବୀ ସର୍ବଭୂତରେ ବିଷ୍ଣୁ ମାୟା ରୂପେ ବିରାଜିତା । ତେଣୁ କୁହାଯାଇଅଛି -

'ଯା' ଦେବୀ ସର୍ବ ଭୂତେଷୁ,
ବିଷ୍ଣୁ ଯାୟାତି ସଂସ୍ଥିତାଂ ।'

ମାର୍କଣ୍ଡେୟ ପୁରାଣରେ ବର୍ଣ୍ଣିତ ଖ୍ରୀଷ୍ଟପୂର୍ବ ତୃତୀୟ ଶତକରେ ଚେଦିବଂଶର ରାଜା ସୁରଥ ଉତ୍କଳରେ ଦୁର୍ଗାପୂଜାର ବିଧିବିଧାନ ଆରମ୍ଭ କରିଥିଲେ । ବିଭିନ୍ନ ପୁରାଣ ଓ ଶାସ୍ତ୍ରରେ ଏହି ପର୍ବର ନାମ ବିଭିନ୍ନ ନାମରେ ନାମିତ ହୋଇଅଛି । ଦେବୀ ପୁରାଣ ଓ କାଳିକା ପୁରାଣରେ ଏହାର ନାମ ବିଜୟାଦଶମୀ, ଦେବୀ ମହାତ୍ମ୍ୟରେ ମହାପାର୍ବଣ, ମାର୍କଣ୍ଡେୟ ପୁରାଣରେ ଦୁର୍ଗାପୂଜା ବ୍ୟତୀତ ଶାରଦୀୟ ଦୁର୍ଗାପୂଜା ବା ଦଶହରା, ମହାଦଶମୀ, ନବରାତ୍ର, ନବଦିନ ପୂଜା ଇତ୍ୟାଦି ବିଭିନ୍ନ ପ୍ରକାର ସାମାଜିକ, ଧାର୍ମିକ ଓ ସାଂସ୍କୃତିକ ପରମ୍ପରା ଦ୍ୱାରା ଲୋକାନୁମୋଦିତ ଓ ସର୍ବଜନବିଦିତ ।

ସମସ୍ତ ଦେବଙ୍କର ତେଜରେ ତେଜୀୟାନ ହୋଇ ଆବିର୍ଭାବ ହୋଇଥିଲେ ମା' ଦୁର୍ଗା । ସେ ସମସ୍ତଙ୍କର କାର୍ଯ୍ୟ ସିଦ୍ଧି ପାଇଁ ଧରାପୃଷ୍ଠରେ ଆବିର୍ଭାବ ହୋଇଥିଲେ । ମହାଶକ୍ତିର ପ୍ରତୀକ ମା' ଦୁର୍ଗା ହେଉଛନ୍ତି ସୃଷ୍ଟି, ସ୍ଥିତି ଓ ପ୍ରଳୟର ଅଧିଷ୍ଠାତ୍ରୀ ଦେବୀ । ତାଙ୍କରି ଆବିର୍ଭାବ ଓ ପୂଜା ସମ୍ପର୍କରେ କେତେଗୁଡ଼ିଏ ପୌରାଣିକ କିମ୍ବଦନ୍ତୀ ରହିଅଛି । ତ୍ରେତୟା ଯୁଗରେ ମହାପ୍ରତାପୀ ଓ ଅତ୍ୟାଚାରୀ ମହିଷାସୁର ନାମକ ଏକ ଅସୁର ଥିଲା । ମାନବମାନଙ୍କ ନିର୍ଯ୍ୟାତନା ତ ଦୂରର କଥା କିନ୍ତୁ ତେତ୍ରିଶ କୋଟି ଦେବତାମାନେ ମହିଷାସୁର ଦୌରାତ୍ମ୍ୟରେ ଭୟଭୀତ ହୋଇ ଲୁକ୍କାୟିତ ଅବସ୍ଥାରେ କାଳାତିପାତ କରୁଥିଲେ । ଏପରିକି ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତ୍ରିଭୁବନ ତା'ର ଅତ୍ୟାଚାର ଦ୍ୱାରା ପ୍ରକମ୍ପିତ ହେଉଥିଲା । ଫଳରେ ସ୍ୱର୍ଗରେ ସମସ୍ତ ଦେବତାମାନଙ୍କର ଆସନ ଟଳମଳ ହୋଇଥିଲା । ସେ ଥିଲା ପ୍ରବଳ ପ୍ରତାପୀ ଦାନବ ଓ କୁଶଳି ମାୟାବୀ । ମାୟାବଳରେ ସେ ତ୍ରିଭୁବନକୁ ଏକ ସମୟରେ ପକାଉଠା କରୁଥିଲା । ମାୟା ବଳରେ ହିଁ ସେ ଥିଲା ଦେବତାମାନଙ୍କଠାରୁ ମହାଶକ୍ତିଶାଳୀ । ତାରି ଅତ୍ୟାଚାରରେ ଅତିଷ୍ଠ ହୋଇ ଓ ଦୁର୍ଗତିରୁ ରକ୍ଷା ପାଇବା ପାଇଁ ସମସ୍ତ ଦେବତା ଦୁର୍ଗତିନାଶିନୀ ମା' ଦେବୀ ଦୁର୍ଗାଙ୍କୁ ଆରାଧନା କରିଥିଲେ । ତେଣୁ ସର୍ବଶକ୍ତି, ତେଜ, ଅସ୍ତ୍ର ଓ ଦଶଭୁଜା ଧାରଣ କରି ଧରାପୃଷ୍ଠରେ ଅବତରଣ କରିଥିଲେ ମହିଷାମର୍ଦ୍ଦିନୀ ମା' ଦୁର୍ଗା । ଏହି ମାୟାବୀ ଅସୁର ତା'ର ସହଚର ଚଣ୍ଡ, ମୁଣ୍ଡ, ଶୁମ୍ଭ, ନିଶୁମ୍ଭ, ଧୂମ୍ରଲୋଚନ ଓ ଅଗଣିତ ସୈନ୍ୟଗଣଙ୍କୁ ନିହତ କରିବା ପାଇଁ ଦେବୀଙ୍କର ଅସ୍ତ୍ରଶସ୍ତ୍ର ଆବଶ୍ୟକ ହେଲା । ତେଣୁ ଶିବଙ୍କ ତ୍ରିଶୂଳ, ବିଷ୍ଣୁଙ୍କ ଚକ୍ର, ଅଗ୍ନିଙ୍କ ଆଲୋକ ଶକ୍ତି, ପବନଙ୍କ ଧନୁ, ସୂର୍ଯ୍ୟଙ୍କ ତେଜ, ଇନ୍ଦ୍ରଙ୍କ ବଜ୍ର, ଯମଙ୍କ ଦଶାସ୍ତ୍ର, କାଳଦେବତାଙ୍କ ଖଡ୍‌ଗ, ବିଶ୍ୱକର୍ମାଙ୍କ ପରଶୁ ଅସ୍ତ୍ର ଇତ୍ୟାଦି ଧାରଣ କରିଥିଲେ । ସର୍ବଦେବତାମାନଙ୍କ ଅସ୍ତ୍ର ଧାରଣ କରି ମଧ୍ୟ ମହିଷାସୁରକୁ ନିହତ କରିବାରେ ପ୍ରଥମେ ସମର୍ଥ ହୋଇ ନଥିଲେ ମା' ଦେବୀ ଦୁର୍ଗା । କାରଣ ଦୁର୍ଗା ଦେବୀ ଯେତେ ଅସୁରଙ୍କୁ ମାରିଲେ ମଧ୍ୟ ମହିଷାସୁରର ମାୟା ବଳରେ ପ୍ରତ୍ୟେକ ମୃତ ଅସୁରର ରକ୍ତରୁ ଶତ ଶତ ଅସୁର ଜନ୍ମ ହୋଇ ସଂଗ୍ରାମ ଭୂମିରେ ଉଭା ହେଉଥିଲେ ।

ମା' ଦୁର୍ଗା କେତେ ଯେ ଅସୁର ସୈନ୍ୟଙ୍କୁ ମାରିବେ ! ଗର୍ବ ଓ ଅହଂକାରରେ ମତ୍ତ ଅସୁର ମହିଷାସୁର ଅଟ୍ଟହାସ୍ୟ ପୂର୍ବକ ସିଂହ ଗର୍ଜନ ପରି ବିକଟାଳ ହସ ହସି ପ୍ରକମ୍ପିତ କରି ଦେଉଥିଲା ଯୁଦ୍ଧ ଭୂମିକୁ । ଫଳରେ ମା' ଦେବୀ କ୍ରୋଧାନ୍ୱିତ ପୂର୍ବକ ମଦ୍ୟପାନ କରି ଉନ୍ମତା ରୂପ ଧାରଣ କଲେ । ଦେବୀଙ୍କର ଉନ୍ମତା ରୂପ ଫଳରେ ସୃଷ୍ଟି ହୋଇଥିଲା ଅମାପ ଶକ୍ତି । ସେହି ଶକ୍ତି ବଳରେ ସେ ଅସୁରର ସମସ୍ତ ମାୟାକୁ ଖଣ୍ଡନ କରିବାରେ ସମର୍ଥ ହୋଇଥିଲେ । ସର୍ବଶେଷରେ ସେ ଦେବୀଙ୍କ ହସ୍ତରେ ନିହତ ହୋଇଥିଲା । ସେହିଦିନ ଥିଲା ଶରତ ଋତୁର ଆଶ୍ୱିନମାସ ଶୁକ୍ଳପକ୍ଷ ଦଶମୀ ତିଥି । ତେଣୁ ଜଗତବାସୀ ସେହି ମହାନ ଓ ପବିତ୍ର ଦିବସଟିରେ ମା' ଦେବୀଙ୍କର ଶୁଭାଗମନର ମହାପୂଜା ଆୟୋଜନ କରିଥାନ୍ତି । ତାହା ହିଁ ଦୁର୍ଗାପୂଜା ବା ଦଶହରା ପର୍ବ ନାମରେ ନାମିତ ।

ଏକତା ହିଁ ବଳ ଯଥାର୍ଥତା ପ୍ରତିପାଦନ ହୋଇଅଛି ଏହି ପୌରାଣିକ ଘଟଣାରେ । କାରଣ ସମସ୍ତ ଦେବତାମାନଙ୍କର ଶକ୍ତି ଓ ଅସ୍ତ୍ରମାନ ସଂଘଠିତ ହୋଇଥିଲା ମା' ଦୁର୍ଗାଙ୍କ ପାଖରେ । ଦୁର୍ଗା ହେଉଛନ୍ତି ମହାଶକ୍ତିର ପ୍ରତୀକ । ସେ ହେଉଛନ୍ତି ଶାନ୍ତି, ଶ୍ରଦ୍ଧା, ଲଜ୍ଜା, ବୁଦ୍ଧି, ନିଦ୍ରା, ବିଦ୍ୟା, ଲକ୍ଷ୍ମୀ, ମାତୃ, ସୁଧା, ତୃଷ୍ଣା ଓ ଛାୟାର ଦେବୀ । ତେଣୁ ସେ ବିଭିନ୍ନ ସ୍ଥାନରେ ବିଭିନ୍ନ ନାମରେ ଶକ୍ତିଦାୟିନୀ ମା' ରୂପେ ପୂଜା ପାଉଛନ୍ତି । ସମଗ୍ର ଭାରତରେ ଥିବା ବିଭିନ୍ନ ନାମରେ ନାମିତ ଦେବୀପୀଠକୁ ଶକ୍ତିପୀଠ ବୋଲି କୁହାଯାଇଥାଏ ।

ରାମାୟଣରେ ବର୍ଣ୍ଣିତ ତ୍ରେତାଯୁଗରେ ଲଙ୍କାର ପ୍ରତାପୀ ରାଜା ରାବଣ ରଘୁକୁଳ ତିଳକ ଶ୍ରୀରାମଚନ୍ଦ୍ରଙ୍କର ଜାୟା ସତୀ ସୀତାଙ୍କୁ ପଞ୍ଚବଟୀ ବନାଶ୍ରମରୁ ଅପହରଣ କରି ନେଇଥିଲେ । ସ୍ୱୟଂ ପରଂବ୍ରହ୍ମ ବିଷ୍ଣୁ ମାନବ ରୂପରେ ରାମଚନ୍ଦ୍ର ଅବତାର ହୋଇଥିଲେ । ସୀତାଙ୍କୁ ଉଦ୍ଧାର କରିବା ଓ ରାବଣକୁ ନିହତ କରିବା ପାଇଁ ଭଗବାନ ରାମଚନ୍ଦ୍ର ଲଙ୍କାକୁ ବିଜୟ ଯାତ୍ରା କରିଥିଲେ । ସୀତା ଉଦ୍ଧାର ରାବଣ ବଧ ପାଇଁ





ରାମଚନ୍ଦ୍ର ସର୍ବଶକ୍ତି ଦାୟିନୀ ମା' ଦୁର୍ଗାଙ୍କ ଆଶୀର୍ବାଦ ଭିକ୍ଷା କରିଥିଲେ । କାରଣ ଦୁର୍ଗାଙ୍କ ଆଶୀର୍ବାଦ ବ୍ୟତୀତ ମାନବ ରୂପରେ ଅବତାର ଗ୍ରହଣ କରିଥିବା ସ୍ୱୟଂ ଭଗବାନ ରାମଚନ୍ଦ୍ର ରାବଣକୁ ନିହତ କରିବା ଅସମ୍ଭବ ବୋଲି ଜାଣିଥିଲେ । ରାମଙ୍କର ଲଙ୍କାକୁ ବିଜୟଯାତ୍ରା ଓ ଦୁର୍ଗାଙ୍କୁ ଆରାଧନା କରିବା ଥିଲା ଆଶ୍ୱିନ ମାସ ଶୁକ୍ଳପକ୍ଷ ଦଶମୀ ତିଥି । ତେଣୁ ସେହିଦିନକୁ ବିଜୟାଦଶମୀ ରୂପେ ଅବହିତ କରାଯାଇଅଛି ।

ମହାଭାରତରେ ଉଦ୍ଧୃତ ବିରାଟ ରାଜାଙ୍କର ଗୋବତ୍ସା ହରଣକୁ ବୀର ଅର୍ଜୁନ ସ୍ୱକୀୟ ବୀରତ୍ୱରେ ଏହି ଦିନ ପ୍ରତିହତ କରିଥିଲେ । ଆଉମଧ୍ୟ ମହାଭାରତ ଯୁଦ୍ଧର ପ୍ରାକ୍‌କାଳରେ ଭଗବାନ ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ଇନ୍ଦ୍ରର ନନ୍ଦନ ଧନୁର୍ଦ୍ଧାରୀ ଅର୍ଜୁନ ବିଜୟ ନିମିତ୍ତ ଏହି ଦିନ ମା' ଦୁର୍ଗାଙ୍କୁ ଆରାଧନା କରିଥିଲେ । ବର୍ତ୍ତମାନ ସମାଜରେ ଏହି ଦିନ ସମସ୍ତ ଶୁଭକାର୍ଯ୍ୟର ଶୁଭାନୁକୂଳ ହେଉଅଛି । ଗ୍ରାମଠାରୁ ସହର ପର୍ଯ୍ୟନ୍ତ ଭାରତବର୍ଷର କୋଣ ଅନୁକୋଣରେ ଗ୍ରାମଦେବୀଙ୍କ ପାଖରେ ଏହି ଦିନ ଚଣ୍ଡିପାଠ, ହୋମ ଯଜ୍ଞ, ଗୀତା ଓ ଭାଗବତ ବାଣୀ ଗାନ କରାଯାଇଥାଏ । ଏହି ଦିବସରେ ଗ୍ରାମଦେବୀଙ୍କ ପାଖରେ ଖଣ୍ଡା, ତରୁଆରଠାରୁ ଆରମ୍ଭ କରି ଛୁରୀ ଓ କଟୁରୀ ଇତ୍ୟାଦି ପୂଜା ହୋଇଥାଏ । ବୀର, ଯୋଦ୍ଧା, ସୈନିକ, ବଣିକ, ବ୍ୟବସାୟୀ ଓ ବିଦ୍ୟାର୍ଥୀମାନେ ସେମାନଙ୍କର ଶୁଭ କାର୍ଯ୍ୟର ଏହି ଦିନ ଶୁଭାନୁକୂଳ କରିଥାଆନ୍ତି । ଆଉମଧ୍ୟ ରାଜା ମହାରାଜାମାନେ ଅନ୍ୟ ରାଜାମାନଙ୍କ ସହିତ ଯୁଦ୍ଧର ଶୁଭ ଅନୁକୂଳ ଏହି ଦିନ କରୁଥିଲେ ।

ଏହି ଦଶହରା ପର୍ବକୁ ୧୬ ଦିନ ବା ୧୬ ପୂଜା ଭାବରେ ପାଳନ କରାଯାଏ । କେହି କେହି ଏହି ପର୍ବକୁ ୧୦ ଦିନ, ୯ ଦିନ ଓ ୮ ଦିନ ପାଳନ କରିଥାନ୍ତି । କିନ୍ତୁ ସାଧାରଣତଃ ସପ୍ତମୀ ତିଥିରୁ ଦଶମୀ ତିଥି ୪ ଦିନ ମହାଆଡ଼ମ୍ବର ଓ ସମାରୋହରେ ନିର୍ମଳ ଓ ନିଷ୍ପାପର ସହ ପବିତ୍ର ପରିବେଶ ଭିତରେ ଶୁଦ୍ଧପୂତ ଓ ଭକ୍ତିପୂର୍ଣ୍ଣ ଭାବରେ ବୈଦିକ ପୂଜା ପଦ୍ଧତିରେ ପାଳନ କରାଯାଇଥାଏ । ମା' ଦେବୀ ତାଙ୍କ ଶକ୍ତି ମଣ୍ଡପ ଉପରେ ମୁକ୍ତ ଆକାଶ ତଳେ ଅଗଣିତ ଭକ୍ତଙ୍କୁ ଦର୍ଶନ ଦେଇଥାଆନ୍ତି । ତାଙ୍କରି ମାହାତ୍ମ୍ୟ ବଳରେ ଅଗଣିତ ଭକ୍ତ ତାଙ୍କୁ ଶୁଦ୍ଧପୂତ ଓ ଭକ୍ତିପୂର୍ଣ୍ଣ ଚିତ୍ତରେ ଦର୍ଶନ କରି ପାପରୁ ମୁକ୍ତି ପାଇଥାନ୍ତି ଓ ଧର୍ମ ଅର୍ଜନ କରିଥାନ୍ତି । ତାଙ୍କର ଅପରୂପା ଗଠନ ଶୈଳୀ ଓ ସର୍ବ ଦେବଙ୍କ କଳା, ଅସ୍ତ୍ରରେ ଭୂଷିତ ହୋଇ ନୂତନ ସ୍ୱର୍ଣ୍ଣ ଅଳଙ୍କାର ଓ ବସ୍ତ୍ର ପରିଧାନ ପୂର୍ବକ ଏକ ସୁସଜ୍ଜିତ ମେଢ଼ ମଣ୍ଡନ କରିବାର ଦୃଶ୍ୟ ଅତ୍ୟନ୍ତ ମନୋହର ଓ ଚିତ୍ତାକର୍ଷକ ଅଟେ ।

ଆଧ୍ୟାତ୍ମିକ ଯୁଗରେ ସର୍ବ ଦେବାଦେବୀଙ୍କର ସଂଗଠିତ ଶକ୍ତି, ରୂପ ଓ କଳାଶୈଳୀର ପ୍ରତୀକ ଦୁର୍ଗତିନାଶିନୀ ମା' ଦେବୀ ଦୁର୍ଗାଙ୍କର ଭକ୍ତି ଭାବର ପ୍ରସାର ଯାହାଥିଲେ ମଧ୍ୟ ବର୍ତ୍ତମାନ ଏହାର ଗୁରୁତ୍ୱ ସମଗ୍ର ପୃଥିବୀ ଦରବାରରେ ସୁପ୍ରତିଷ୍ଠିତ ହୋଇପାରିଛି । ତେଣୁ ଏହି ପର୍ବର ମହତ୍ତ୍ୱ ବିଶ୍ୱ ବନ୍ଦନୀୟ ଅଟେ । ଏହାର ମହତ୍ତ୍ୱ ସମସ୍ତ ମାନବ ସମାଜରେ ଐଶ୍ୱରିକ ପ୍ରେମରସ ବାଣୀ ବିଚ୍ଛୁରିତ ହେବା ସଂଗେସଂଗେ, ଆଣି ଦେଇଛି ଶାନ୍ତି, ସଦ୍‌ବୁଦ୍ଧି, ସଦ୍‌ଚିନ୍ତା, ସାଧୁତା ଓ ପବିତ୍ରତାର ଭାବଧାରା । ସମସ୍ତ ମାନବଜାତି ତାଙ୍କର କର୍ମମୟ ଜୀବନରେ ଥିବା ସମସ୍ତ ଦୁର୍ଗତି ତଥା କଷ୍ଟ, ପାପ ଓ ଅକର୍ମରୁ ମୁକ୍ତି କାମନା କରିବା ପାଇଁ ଜଗତର ସର୍ବଶକ୍ତି ଦାୟିନୀ, ଜ୍ୟୋତିର୍ମୟୀ, ଆଦିମାତା ମା' ଦୁର୍ଗା ଦେବୀଙ୍କୁ ପ୍ରାର୍ଥନା କରିବା ଏକାନ୍ତ ବାଞ୍ଛନୀୟ ।

ଘ.ନଂ.- ଟୁ.ଆର୍.ଏ. ୩୫/୭
ଆଠ ନମ୍ବର, ଭୁବନେଶ୍ୱର

---

# ଯଶୀପୁରଠାରେ ମହିଳା ଓ ଶିଶୁ ସ୍ୱାସ୍ଥ୍ୟ ସଚେତନତା ଶିବିର ଅନୁଷ୍ଠିତ

ମୟୂରଭଂଜ ଜିଲ୍ଲା ଯଶୀପୁରଠାରେ ସଂପ୍ରତି ଏକ ମହିଳା ଓ ଶିଶୁ ସ୍ୱାସ୍ଥ୍ୟ ସଚେତନତା ଶିବିର 'କ୍ରେଫ୍ଟଡା' ସ୍ୱେଚ୍ଛାସେବୀ ଅନୁଷ୍ଠାନ ଆନୁକୂଲ୍ୟରେ ଅନୁଷ୍ଠିତ ହୋଇଯାଇଛି । ଏହି ଶିବିରରେ ରାଜ୍ୟ ଅନୁସୂଚିତ ଜନଜାତି ଉନ୍ନୟନ ମନ୍ତ୍ରୀ ଶ୍ରୀ ବଳଭଦ୍ର ମାଝୀ ମୁଖ୍ୟ ଅତିଥି ଭାବେ ଯୋଗଦାନ କରି ମହିଳା ଓ ଶିଶୁମାନଙ୍କର ଉତ୍ତମ ସ୍ୱାସ୍ଥ୍ୟ ନିମନ୍ତେ ଜନସଚେତନତା ସୃଷ୍ଟି ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଆଦିବାସୀ ବହୁଳ ଅଂଚଳମାନଙ୍କରେ ସ୍ୱାସ୍ଥ୍ୟ ସଚେତନତା ସୃଷ୍ଟି କରିବା ପାଇଁ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ପ୍ରମୁଖ ଭୂମିକା ଗ୍ରହଣ କରିବା ଆବଶ୍ୟକ ବୋଲି ସେ କହିଥିଲେ । କୁଷ୍ଠ, ପୋଲିଓ, ମ୍ୟାଲେରିଆ ନିରାକରଣ, ଏଡ୍‌ସ ସଚେତନତା ଏବଂ ଶିଶୁ ପୁଷ୍ଟିହୀନତା ଦୂରୀକରଣ ପାଇଁ ଜନସାଧାରଣଙ୍କ ସହଯୋଗ ଏକାନ୍ତ ଆବଶ୍ୟକ ବୋଲି ମଧ୍ୟ ସେ କହିଥିଲେ ।

ଏହି ସ୍ୱାସ୍ଥ୍ୟ ସଚେତନତା ଶିବିରରେ ଯଶୀପୁର ବିଧାୟକ ଶ୍ରୀ ଶମ୍ଭୁନାଥ ନାୟକ, କ୍ରେଫ୍ଟଡା ସ୍ୱେଚ୍ଛାସେବୀ ଅନୁଷ୍ଠାନର ସାଧାରଣ ସଂପାଦକ ଓ ଅନ୍ୟ ସଦସ୍ୟବୃନ୍ଦ, ସ୍ଥାନୀୟ ଚିକିତ୍ସାଳୟର ଡାକ୍ତର, କରଂଜିଆ ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥାର ପ୍ରକଳ୍ପ ପ୍ରଶାସକ ଶ୍ରୀ ଜେନା ପ୍ରମୁଖ ଯୋଗ ଦେଇ ମହିଳା ଓ ଶିଶୁ ସ୍ୱାସ୍ଥ୍ୟ ସଂପର୍କରେ ଆଲୋକପାତ କରିଥିଲେ । ଏହି ଶିବିରରେ ଆଖପାଖ ଅଂଚଳର ୫୦୦ରୁ ଊର୍ଦ୍ଧ୍ୱ ଆଦିବାସୀ ମହିଳା ଯୋଗଦାନ କରିଥିଲେ ।





# ଆଦିବାସୀ ସମାଜରେ କରମା ପର୍ବ

ଡଃ ଚିତ୍ରସେନ ପଶାୟତ

**କ**ରମା ଏକ ଆଦିବାସୀ ପର୍ବ । ମଧ୍ୟ ତଥା ପୂର୍ବ ଭାରତର ଓଡ଼ିଶା, ବିହାର, ଛତିଶଗଡ଼, ମଧ୍ୟପ୍ରଦେଶ, ଝାରଖଣ୍ଡ, ପଶ୍ଚିମବଙ୍ଗ ଆଦି ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ବସବାସ କରୁଥିବା ବିଂଝାଲ, କୋଲହ, ଖଡ଼ିଆ, ଓରାମ, କିଶାନ, ଭୂୟାଁ, ଗଣ୍ଡ, ସହଁରା ପ୍ରଭୃତି ବିଭିନ୍ନ ଆଦିବାସୀ ଗୋଷ୍ଠୀରେ ଏହି ପର୍ବ ଆନନ୍ଦ ଓ ଉଲ୍ଲାସରେ ପାଳିତ ହୋଇଥାଏ । ସାଧାରଣତଃ ପ୍ରତିବର୍ଷ ଭାଦ୍ରବ ମାସ ଶୁକ୍ଳପକ୍ଷ ଏକାଦଶୀ ତିଥିରେ ଏହି ପର୍ବ ପାଳନ କରାଯାଇଥାଏ ଏବଂ ଏହା କରମା ଏକାଦଶୀ ନାମରେ ନାମିତ । ଏଠାରେ ସୂଚନାଯୋଗ୍ୟ ଯେ ହିନ୍ଦୁମତ ଅନୁଯାୟୀ ଏହା ସୂର୍ଯ୍ୟଦେବଙ୍କର ପାର୍ଶ୍ୱ ପରିବର୍ତ୍ତନ ଏକାଦଶୀ । ପୁନଶ୍ଚ ହିନ୍ଦୁରୀତି ଅନୁଯାୟୀ କାର୍ତ୍ତିକ ଶୁକ୍ଳ, ବୈଶାଖ ଶୁକ୍ଳ, ଆଷାଢ଼ ଶୁକ୍ଳ ଏକାଦଶୀ ସଦୃଶ ଭାଦ୍ରବ ଶୁକ୍ଳ ଏକାଦଶୀ ଏକ ବଡ଼ ଏକାଦଶୀ । ଏହି ଦିନ ନିଷ୍ଠାର ସହିତ ହିନ୍ଦୁମାନେ ନିର୍ଜଳା ଉପବାସ କରିବାର ବିଧି ପ୍ରଚଳିତ । ସମ୍ଭବତଃ କରମା ପର୍ବରେ ଉଭୟ ହିନ୍ଦୁ ଓ ଆଦିବାସୀ ପରମ୍ପରାର ଛାପ ଅନୁଭୂତ ହୋଇଥାଏ ।

କରମସାନୀ, କରମରାନୀ ବା କରସାଇଁ ହେଲେ ଏହି ପର୍ବର ମୁଖ୍ୟ ଉପାସ୍ୟ ଦେବୀ । ସନ୍ତାନ-ସନ୍ତତି ଲାଭ, ସୁଖଶିରୀ ବୃଦ୍ଧି, ରୋଗ ଦୁଃଖରୁ ମୁକ୍ତି, ମରୁଡ଼ି ଫସଲହାନୀ ଇତ୍ୟାଦି ଦୈବି ଦୁର୍ବିପାକରୁ ରକ୍ଷା, ଭଲ ଫସଲ ତଥା ସର୍ବମଙ୍ଗଳ କାମନା ନିମନ୍ତେ ମନାସି କରି ଗାଁମାନଙ୍କରେ କରମା ପୂଜା କରାଯାଇଥାଏ ଏବଂ ଦେବୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ରାତି ତମାମ ନୃତ୍ୟ, ଗୀତର ଆୟୋଜନ କରାଯାଇଥାଏ । ଏହାକୁ ମାନସିକ କରମା କୁହାଯାଏ । ସ୍ଥଳ ବିଶେଷରେ କରମା ପୂଜାର ଆୟୋଜନ ଭାଦ୍ରବ ଶୁକ୍ଳ ଏକାଦଶୀ ବ୍ୟତୀତ ଅନ୍ୟ ସମୟରେ ମଧ୍ୟ କରାଯାଇଥାଏ । ପ୍ରୟୋଜନ ଅନୁଯାୟୀ ଶରତ ଋତୁରେ ଦୁର୍ଗାପୂଜା ଅବସରରେ ମଧ୍ୟ ଏହି ପୂଜାର ଆୟୋଜନ ଦେଖିବାକୁ ମିଳେ । କେତେକ ସ୍ଥଳରେ ପ୍ରତିମାସ ଶୁକ୍ଳ ଏକାଦଶୀ ଦିନ କରମାପୂଜା କରାଯାଉଥିବାର ପରିଲକ୍ଷିତ ହୋଇଥାଏ । ପୁନଶ୍ଚ ଗାଁରେ ଦୁର୍ଭିକ୍ଷ କିମ୍ବା ମରୁଡ଼ିର ଆଶଙ୍କା ଦେଖା ଦେଲେ କରମସାନୀ ପୂଜାର ଆୟୋଜନ ହେଉଥିବାର ଦେଖାଯାଏ । ଏହାକୁ ବୁଢ଼ୀ କରମସାନୀ ବୋଲି ଅଭିହିତ କରିଥାନ୍ତି । ସମୟେ ସମୟେ ଚାଷଜମିରେ ବହ୍ମା ନାମକ ଏକ ପୋକ ଲାଗି ଫସଲକୁ ପୂରାପୂରି ନଷ୍ଟ କରି ଦିଅନ୍ତି । ଏଥିରୁ ରକ୍ଷା ପାଇବା ପାଇଁ କରମା ପୂଜା କରାଯାଏ ଯାହାକି 'ବ୍ରହ୍ମା କରମା' ନାମରେ ନାମିତ । ଏତଦ୍‌ବ୍ୟତୀତ ଆଖପାଖ ଗ୍ରାମର ଲୋକେ ମିଶି ମଧ୍ୟ ମଝିରେ ମଝିରେ ତିନି ଚାରି ବର୍ଷରେ ଥରେ ସଂଘବଦ୍ଧ ଭାବରେ ଏକ ବଡ଼ କରମା ପର୍ବର ଆୟୋଜନ କରିବାର ପରିଦୃଷ୍ଟ ହୋଇଥାଏ । ଏହି ଅବସରରେ ହେଉଥିବା ପୂଜା, ନୃତ୍ୟ ଓ ଗୀତରେ ଭାଗ ନେବା ପାଇଁ ବହୁ ଦୂରଦୂରାନ୍ତରୁ ଲୋକମାନେ ଆସିଥାଆନ୍ତି । କରମା ନୃତ୍ୟ ଓ ଗୀତର ପ୍ରତିଯୋଗିତା ମଧ୍ୟ ଆୟୋଜନ ହୋଇଥାଏ । ବିଭିନ୍ନ ଗ୍ରାମରୁ କରମା ଦଳଗୁଡ଼ିକ ନିମନ୍ତ୍ରିତ ହୋଇ ଆସନ୍ତି । ଏମାନଙ୍କ ଖାଇବା, ପିଇବା, ରହିବା ଇତ୍ୟାଦିର ଦାୟିତ୍ୱ ଆୟୋଜକମାନେ ସୂଚାରୁ ରୂପେ ତୁଲାଇଥାନ୍ତି । ଆବାଳ-ବୃଦ୍ଧ-ବନିତା କେବଳ ପୂଜାରେ ନୁହେଁ ନୃତ୍ୟ ଓ ଗୀତରେ ମଧ୍ୟ ଉତ୍ସାହର ସହିତ ଭାଗ ନେବାର ଦେଖାଯାଏ ।

ଉପରୋକ୍ତ ଆଲୋଚନାକୁ ଭିତ୍ତିକରି କୁହାଯାଇପାରେ ଯେ, କରମା ପ୍ରାୟତଃ ସକାମ ଉପାସନା । କୃଷିର ଉନ୍ନତି ସହିତ ଏହା ବିଶେଷ ଭାବେ ଜଡ଼ିତ । ମାଟି ଓ ମଣିଷର ସୌଭାଗ୍ୟ ଓ ସମୃଦ୍ଧି ପାଇଁ କରମସାନୀ ପାଖରେ ମଣିଷ ନିବେଦନ କରେ । ଆକସ୍ମିକ ବିପର୍ଯ୍ୟୟରୁ ଲୋକଙ୍କ ଧନ, ଜୀବନକୁ ରକ୍ଷା କରିବା ନିମିତ୍ତ ଏବଂ ଆଗାମୀ ଭବିଷ୍ୟତର ସୁରକ୍ଷା ନିମନ୍ତେ କରମା ପୂଜା ଉଦ୍ଦିଷ୍ଟ । ଓଡ଼ିଶାର ପଶ୍ଚିମାଞ୍ଚଳରେ ଏହି ପର୍ବ ବିଶେଷଭାବେ ଭାଦ୍ରବ ଏବଂ ଆଶ୍ୱିନ ମାସରେ ପାଳିତ ହୋଇଥାଏ । କେନ୍ଦୁଝର ଏବଂ ବଣାଇ ପ୍ରଭୃତି ଅଞ୍ଚଳରେ ଏହି ପର୍ବ ଚୈତ୍ର ମାସରେ ମଧ୍ୟ ପାଳନ କରାଯାଇଥାଏ । ଭିନ୍ନ ନାମ ଓ ଭିନ୍ନ ରୂପ ନେଇ ଏହା ମୁଖ୍ୟତଃ ଆଦିବାସୀମାନଙ୍କ ଦ୍ୱାରା ପାଳନ କରାଯାଉଥିଲେ ମଧ୍ୟ ଏଥିରେ ହିନ୍ଦୁମାନେ ମଧ୍ୟ ଭାଗ ନେବାର ଦେଖାଯାଏ । ରାଞ୍ଚି ଜିଲ୍ଲାର ଅନେକ କ୍ଷେତ୍ରିୟ ଜମିଦାର ଉପବାସ ରହି କରମା ବ୍ରତକୁ ଉଚିତ ବିଧାନରେ ପାଳନ କରିବାର ଶୁଣାଯାଏ । ଆଦିବାସୀ ବହୁଳ ଅଞ୍ଚଳରେ ବସବାସ କରୁଥିବା ଅଣ-ଆଦିବାସୀ ଗୋଷ୍ଠୀର ଲୋକମାନେ ମଧ୍ୟ କରମା ପୂଜା, ନୃତ୍ୟ ଓ ଗୀତରେ ଅଂଶ ଗ୍ରହଣ କରିଥାନ୍ତି । ସର୍ବୋପରି ଏହି ପର୍ବର ଅଧିଷ୍ଠାତ୍ରୀ ଦେବୀ ହିନ୍ଦୁମାନଙ୍କର ବୋଲି ଅନେକେ ମତବ୍ୟକ୍ତ କରିଥାନ୍ତି ।

ହିନ୍ଦୁମାନଙ୍କ ମତାନୁଯାୟୀ ଏହି ପୂଜାର ପ୍ରଧାନ ଦେବୀ ହେଲେ କରମା ବା ଭାଗ୍ୟ ଦେବୀ ଏବଂ ପାର୍ଶ୍ୱ ପରିବର୍ତ୍ତନ ଏକାଦଶୀ ଦିନ ଏହି ପର୍ବ ଅନୁଷ୍ଠିତ ହେଉଥିବାରୁ ସୂର୍ଯ୍ୟ ଦେବତା ମଧ୍ୟ ଏଥିରେ ଅନ୍ତର୍ଭୁକ୍ତ । କେତେକ ସ୍ଥାନରେ ତିନୋଟି ବାଉଁଶକୁ ଯୋଡ଼ି ତନ୍ମଧ୍ୟରେ

କରମା ଡାଳ ପୋତି କର୍ମ ଦେବତାଙ୍କୁ ଆବାହନ ତଥା ପୂଜା କରାଯାଏ । ତେଣୁ ତ୍ରିଗୁଣାତ୍ମିକା ପ୍ରକୃତି ମଧ୍ୟରେ ଧର୍ମ ଓ କର୍ମ ସୂର୍ଯ୍ୟଦେବଙ୍କର ବୋଲି କୁହାଯାଇଥାଏ । ଧର୍ମର ବିପ୍ଳବ ବା ପରିବର୍ତ୍ତନ ସମୟରେ ସମନ୍ୱୟକୁ ଶାସ୍ତ୍ରାନୁମୋଦିତ କରିବା ଉଦ୍ଦେଶ୍ୟରେ ଅଥର୍ବ ବେଦର ଆଲୋପନିଷଦର ଉତ୍ପତ୍ତି । ଏଥିରେ ଉଲ୍ଲେଖ ରହିଛି ଆର୍ଯ୍ୟ ଧର୍ମ ସର୍ବଧର୍ମ ସମନ୍ୱୟ ଦ୍ୱାରା ଉତ୍‌ଥାନ ପତନ ଓ ପରିବର୍ତ୍ତନ ହୋଇ ମଧ୍ୟ ଅକ୍ଷୟ ଓ ଅମୃତ ହୋଇ ରହିବ । ଏହି ପୃଷ୍ଠଭୂମି ଉପରେ କରମା ପର୍ବ କ୍ରମଶଃ ହିନ୍ଦୁ ବିଶ୍ୱାସର ପରିଧି ଭିତରେ ସ୍ଥାନ ପାଇବା ସ୍ୱାଭାବିକ ।

ସମ୍ଭବତଃ କର୍ମ ସ୍ୱାମୀର ସ୍ତ୍ରୀ ଲିଙ୍ଗରେ 'କର୍ମସ୍ୱାମିନୀ' ଅପଭ୍ରଂଶରୁ କରମସାନୀ ଶବ୍ଦଟି ସୃଷ୍ଟି ହୋଇଛି । କର୍ମ ଶବ୍ଦର ଦୁଇଗୋଟି ଭିନ୍ନ ଅର୍ଥର ପ୍ରଚଳନ ଦୃଷ୍ଟିରୁ କରମସାନୀ ଶବ୍ଦର ମଧ୍ୟ ଦୁଇଗୋଟି ଅଲଗା ଅର୍ଥ । କାର୍ଯ୍ୟ ଦୃଷ୍ଟିରୁ ବିଚାର କଲେ, ମଣିଷ ତା'ର କର୍ମ (Labour/work) ବଳରେ ଧୀରେ ଧୀରେ ସଭ୍ୟ ହୋଇ ପାରିଛି । ପୁରାତନ ପ୍ରସ୍ତର ଯୁଗରୁ ଆଜିର ଯାନ୍ତ୍ରିକ ଯୁଗରେ ଉପନୀତ ହୋଇ ପାରିଛି । ଖାଦ୍ୟ, ବସ୍ତ୍ର ଭଳି ମୌଳିକ ଆବଶ୍ୟକତାକୁ ପୂରଣ କରିବା ସଂଗେସଂଗେ ନୂଆ ନୂଆ ଜିନିଷ ଆବିଷ୍କାର ତଥା ଉଦ୍ଭାବନ କରି ମଣିଷ ସମାଜକୁ ସମୃଦ୍ଧ କରିପାରିଛି । ଏହି ଦୃଷ୍ଟିକୋଣରୁ ମଣିଷର ସମସ୍ତ କର୍ମର ପଥ ପ୍ରଦର୍ଶିକା ଭାବେ କରମସାନୀ ତା' ଜୀବନର ସମସ୍ତ ସୁଖ, ଶାନ୍ତି, ଉନ୍ନତି, ସମୃଦ୍ଧି ଓ ପ୍ରଗତିର ଏକମାତ୍ର କାରଣ ।

ଦ୍ୱିତୀୟ ଅର୍ଥରେ କର୍ମକୁ ଭାଗ୍ୟ ଅର୍ଥରେ ମଧ୍ୟ ବ୍ୟବହାର କରାଯାଇଥାଏ । କଥାରେ ଅଛି 'କରମ ଲିଖନ କେ କରିବ ଆନ' । ଏହି ପରିପ୍ରେକ୍ଷୀରେ ଭାଗ୍ୟ ବା ଅଦୃଷ୍ଟ ଦେବୀ (Goddess of fortune) ଭାବେ କରମସାନୀ ନାମକରଣ ହୋଇଥିବା ଅନୁମେୟ । ଏହି ଦୃଷ୍ଟିରୁ ନିଜର ତଥା ସାମୂହିକ ମଙ୍ଗଳ ସାଧନ ନିମନ୍ତେ ସମାଜ ତଥା ବ୍ୟକ୍ତିଗତ ଭବିଷ୍ୟତ ଜୀବନକୁ ସୁନ୍ଦର ଓ ନିରାମୟ କରିବା ପାଇଁ କରମସାନୀ ଦେବୀର ପୂଜା କରାଯାଇ ଆସୁଛି ବୋଲି କହିବା ଅସମୀଚୀନବୋଧ ହେବ ନାହିଁ ।

ଅଞ୍ଚଳ ଭେଦରେ କରମା ପୂଜାବିଧିରେ କିଛି କିଛି ତାରତମ୍ୟ ପରିଲକ୍ଷିତ ହୋଇଥାଏ । କରମସାନୀ ଦେବୀଙ୍କ କାଷ୍ଠ ନିର୍ମିତ କିମ୍ବା ମୃତ୍ତିକା ନିର୍ମିତ କୌଣସି ପ୍ରତିମୂର୍ତ୍ତି ନଥାଏ । ହିନ୍ଦୁମାନଙ୍କ ସଦୃଶ କରମସାନୀ ଦେବୀଙ୍କୁ କୌଣସି ମନ୍ଦିର ଭିତରେ ରଖି ଦୈନନ୍ଦିନ ପୂଜା ଆରାଧନା କରିବାର ବିଧି ପରିଦୃଷ୍ଟ ହୁଏ ନାହିଁ । ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଏକ ନିର୍ଦ୍ଦିଷ୍ଟ ବୃକ୍ଷର ଡାଳ ଖଣ୍ଡିଏ ଭାଙ୍ଗି ଆଣି କରମସାନୀ ଦେବୀଙ୍କ ପ୍ରତୀକ ରୂପେ ପ୍ରତିଷ୍ଠିତ କରାଯାଏ । ଏହାକୁ କରମାଡାଳ କୁହାଯାଏ । ବୃକ୍ଷ ପୂଜାର ଏହା ଏକ ଅପୂର୍ବ ନିଦର୍ଶନ । ପୂଜା କରିବାର ଏହି ପରମ୍ପରା ଆର୍ଯ୍ୟୋତ୍ତର ସଂସ୍କୃତିକୁ ଇଙ୍ଗିତ କରେ । ଏଠାରେ ଉଲ୍ଲେଖନୀୟ ଯେ ସମୟାନୁକ୍ରମେ ଆଦିବାସୀ ଜୀବନର ଟୋଟେମ (Totem) ତତ୍ତ୍ୱ ବିଭିନ୍ନ ରୂପରେ ଆର୍ଯ୍ୟ ସଂସ୍କୃତିକୁ ପ୍ରଭାବିତ କରିଛି । ଏହି କ୍ରମରେ ଆଦିବାସୀର ଟୋଟେମ ତତ୍ତ୍ୱ ମାତୃଶକ୍ତି ଧାରଣା ବା ବିଶ୍ୱାସର ବିଭିନ୍ନ ରୂପାନ୍ତର ବୋଲି କୁହାଯାଇପାରେ । ଏହି ପୃଷ୍ଠଭୂମି ଉପରେ କରମାପର୍ବ ମଧ୍ୟ ମାତୃପୂଜା ସହିତ ଜଡ଼ିତ ହୋଇ ଆଦିମ ପ୍ରଭାବରେ ହିନ୍ଦୁ ସମାଜ ମଧ୍ୟରେ ପ୍ରସାର ଲାଭ କରିପାରିଛି । ସେଥିପାଇଁ ବୋଧହୁଏ କେତେଜଣ ଏହାକୁ ଆଦିବାସୀଙ୍କ ପର୍ବ କହୁଥିବା ବେଳେ ଆଉ କେତେଜଣ ଏହାକୁ ହିନ୍ଦୁ ପର୍ବ କହନ୍ତି । ଏହି ଦୃଷ୍ଟିକୋଣରୁ ସାଂସ୍କୃତିକ ଐକ୍ୟ ତଥା ସଂହତିର ରକ୍ଷା ତଥା ସୃଷ୍ଟି କ୍ଷେତ୍ରରେ କରମା ପର୍ବର ଅବଦାନକୁ ଅସ୍ୱୀକାର କରାଯାଇ ପାରିବ ନାହିଁ । 'ସେବିତବ୍ୟ ମହାବୃକ୍ଷଃ ଫଳଛାୟା ସମନ୍ୱିତଃ । ଯଦି ଦୈବାତ ଫଳଂ ନାସ୍ତି ଛାୟା କେନ ନିବାର୍ଯ୍ୟତେ ।।' ଅର୍ଥାତ୍ ଫଳ ଓ ଛାୟା ପ୍ରଦାନକାରୀ ମହାବୃକ୍ଷ ମନୁଷ୍ୟର ବହୁତ ଉପକାର କରିଥାଏ । ଦୈବ ବଶତଃ ଯଦି ଏହି ବୃକ୍ଷରେ କୌଣସି ବର୍ଷ ଫଳ ନ ଧରେ ତେବେ ଏହାର ସୁଶୀତଳ ଛାୟାରୁ କେହି ବଞ୍ଚିତ ହେବେ ନାହିଁ । ବୃକ୍ଷ ମନୁଷ୍ୟ ପାଇଁ ଦେବତା ସଦୃଶ । ବୃକ୍ଷ ପୂଜା ପୃଥିବୀର ଉପାସନା ପରମ୍ପରାରେ ଏକ ଆନ୍ତଃରାଷ୍ଟ୍ରୀୟ ଦର୍ଶନ ଉପରେ ପ୍ରତିଷ୍ଠିତ ।

ସହକାରୀ ପ୍ରଶାସକ
ଶ୍ରୀମନ୍ଦିର କାର୍ଯ୍ୟାଳୟ, ପୁରୀ

---

# ଶୂଳିନୀ ଗୋ ! ସନ୍ତପ୍ତ ତର୍ପଣେ

ତ୍ରିଭୁବନାନନ୍ଦ ପରମହଂସ

ଶାରଦୀୟ ପାର୍ବଣ ସନ୍ଧ୍ୟାରେ
ପଶୁ ମୁହିଁ କେସନେ ଗୋ ! ନିରାଜିବି ପଦ
ଶତ ସମ୍ବତ୍ସର ବ୍ୟାପୀ ବିଦଗ୍ଧ ଜୀବନେ
ଯହିଁ କେବେ ନୋହିଛିତ ମାତୃ ସ୍ନେହେଁ ମୁଗ୍ଧ । ୧ ।
ଦୁଗ୍ଧପାୟି ଶିଶୁ କାହିଁ ଲୋଡ଼େ କି ତୋ କୋଳ
ବିକଳେ ଝୁଣଇ ସିନା ସ୍ତନାଗ୍ର ଜନନୀ
ସ୍ନେହମୟ ମଧୁବୋଳା ଦେହେ ଥାପି ଥରେ
ପାରିବି କି ଏ ଶରୀର ଭାର ଲଦି 'ଦମ୍ଭୋଳି'କୁ ଘେନି ? ୨ ।
କାହିଁ ସେ ବ୍ରହ୍ମଣପଦ ଅର୍କର ଅଙ୍ଗୁଳି
ଲଲାଟ ନେତ୍ରେ ଦେଖିବି ହିରଣ୍ମୟ ତନୁ
ଶତ ଇନ୍ଦ୍ରଜାଲ ବହ ଇନ୍ଦ୍ରିୟ ହଟିବ
ଘୁଞ୍ଚିବ ମୋ ଜନ୍ମାନ୍ତର ପିପାସା ସଂପ୍ରତି । ୩ ।
'ମହିଷା'ର ମହିଷ ପ୍ରକୃତି ତୋ ସର୍ଜନା ସିନା !!
ଖେଳିବାକୁ ଲୁଚକାଳି ଖେଳ ଏ ଯେ ଉତ୍ତପ୍ତ ବାଲୁକା ପ୍ରାନ୍ତରେ
ଅନ୍ତର ଖୋଲି 'ମା' ଥରେ ଦିଅ ଦରଶନ
ଶୂଳିନୀ ଗୋ ! ସନ୍ତପ୍ତ ତର୍ପଣେ,
ଧୋଇ ଦେବି ସେହି ପଦ ନେତ୍ର ପ୍ରାନ୍ତ ନିରେ । ୪ ।

ପ୍ରଧାନାଚାର୍ଯ୍ୟ, ଜନନୀ ସେବା ସଦନ
କପିଳ ପ୍ରସାଦ, ଭୁବନେଶ୍ୱର-୨

# ଗାନ୍ଧିଜୀଙ୍କ ଦୃଷ୍ଟିରେ ଭାରତୀୟ ଅର୍ଥନୀତି

ବିଜୟ କୁମାର ଦାଶ

ରାଷ୍ଟ୍ରର ପିତା ମହାତ୍ମା ଗାନ୍ଧୀ ଭାରତୀୟ ଅର୍ଥନୀତିର ପୂର୍ଣ୍ଣାଙ୍ଗ ବିକାଶ ପାଇଁ ଅନେକ ମୌଳିକ ତଥ୍ୟ ପ୍ରଦାନ କରିଯାଇଛନ୍ତି । ଅର୍ଥନୈତିକ ସମସ୍ୟାର ସମାଧାନ ସହ ଏକ ସୁସ୍ଥ ଅର୍ଥନୀତି ପ୍ରତିଷ୍ଠା ନିମିତ୍ତ ସେ ଯେଉଁ ସୂକ୍ଷ୍ମ ବିଶ୍ଳେଷଣ ଉପସ୍ଥାପନ କରିଛନ୍ତି ତାହା ତାଙ୍କୁ ଜଣେ ଅନନ୍ୟ ଅର୍ଥନୀତିଜ୍ଞ ଭାବରେ ବିଶ୍ୱ ଦରବାରରେ ସ୍ୱୀକୃତି ଦେଇଛି । ସତ୍ୟ ଓ ଅହିଂସାର ଏକନିଷ୍ଠ ଉପାସକ ଭାବରେ ସେ ଭାରତରେ ଏପରି ଏକ ଆଦର୍ଶ ଅର୍ଥନୈତିକ ବିକାଶର ନକ୍ସା ପ୍ରସ୍ତୁତ କରିବାକୁ ଚାହୁଁଥିଲେ ଯାହା ସରଳ ଜୀବନ, ଅହିଂସା ଓ ମାନବୀୟ ମୂଲ୍ୟବୋଧ ଉପରେ ପ୍ରତିଷ୍ଠିତ ହେବ । ମହାତ୍ମା ଗାନ୍ଧୀ ଭାରତର ବଂଚିତ ଶ୍ରେଣୀର କଲ୍ୟାଣ ପାଇଁ ଗଭୀର ଭାବେ ଚିନ୍ତିତ ଥିଲେ । ଗୋଟିଏ ସର୍ବୋଦୟ ସମାଜରେ ସମସ୍ତଙ୍କର ମଂଗଳ ପାଇଁ ସେ ଉଦ୍ୟମ କରୁଥିଲେ ଏବଂ ସମାଜର ଦରିଦ୍ରତମ ବ୍ୟକ୍ତିର ଉନ୍ନତି ପାଇଁ ସେ ବିଶେଷ ଦୃଷ୍ଟି ଦେଉଥିଲେ । ସେ କହୁଥିଲେ ଯେ ପ୍ରକୃତ ଅର୍ଥନୀତି ଉଚ୍ଚ ନୈତିକ ମୂଲ୍ୟବୋଧର ବିରୁଦ୍ଧାଚରଣ କରେ ନାହିଁ । ଗାନ୍ଧିଜୀଙ୍କର ଅର୍ଥନୈତିକ ବିଶ୍ଳେଷଣର କେତେକ ଗୁରୁତ୍ୱପୂର୍ଣ୍ଣ ଦିଗ ଉପରେ ସଂକ୍ଷିପ୍ତ ଆଲୋଚନାଟିଏ କରାଯାଇପାରେ ।

ଗାନ୍ଧିଜୀ ଏକ ବିକେନ୍ଦ୍ରିତ ଅର୍ଥନୀତିରେ ଗୁରୁତ୍ୱ ଆରୋପ କରିଥିଲେ । ସେ କହୁଥିଲେ ଯେ ରାଷ୍ଟ୍ରର ନିୟନ୍ତ୍ରଣରେ ଅଧିକ ଶିଳ୍ପ ରହିଲେ ତାହା ଏକ ନୂତନ ଶ୍ରେଣୀର ଏକଛତ୍ରବାଦ ସୃଷ୍ଟି କରିବ । ତେଣୁ ଆମର ଅର୍ଥନୀତି ଏପରି ଭାବରେ ବିକେନ୍ଦ୍ରିତ ହେବା ଉଚିତ ଯେଉଁଠାରେ ଉତ୍ପାଦନ ବହୁଳ ଭାବରେ ବହୁ ସ୍ଥାନରେ ହେବ । ଏହା ଦ୍ୱାରା ମାନବ ସମାଜର ସାମୂହିକ ଅର୍ଥନୈତିକ କଲ୍ୟାଣ ସାଧିତ ହୋଇପାରିବ । ଗାନ୍ଧିଜୀ ଭଲ ଭାବେ ଜାଣିଥିଲେ ଯେ ଭାରତର ଆତ୍ମା କହିଲେ ଗ୍ରାମାଂଚଳକୁ ହିଁ ବୁଝାଏ । ଭାରତର ଅର୍ଥନୀତି ଗ୍ରାମଭିତ୍ତିକ ହୋଇଥିବାରୁ ଗ୍ରାମାଂଚଳର ବିକାଶ ବିନା ଭାରତର ପୂର୍ଣ୍ଣାଙ୍ଗ ଅର୍ଥନୈତିକ ବିକାଶ ସମ୍ଭବ ନୁହେଁ । ଗ୍ରାମାଂଚଳରେ ଯେଉଁ ଉତ୍କଟ ଦାରିଦ୍ର୍ୟ ଓ ବେକାରୀ ଦେଖା ଦେଇଥିଲା, ସେଥିରୁ ମୁକ୍ତ ହେବା ପାଇଁ ଗ୍ରାମୋଦ୍ୟୋଗ ଓ କ୍ଷୁଦ୍ର କୁଟୀରଶିଳ୍ପର ପୁନରୁଦ୍ଧାର ଏବଂ ବିକାଶ ଅପରିହାର୍ଯ୍ୟ ବୋଲି ସେ ମତବ୍ୟକ୍ତ କରିଥିଲେ । ସେ ସମୟରେ ଗାନ୍ଧିଜୀଙ୍କର 'ଚରଖା' ଓ 'ଖଦୀ' କାର୍ଯ୍ୟକ୍ରମ ଗ୍ରାମାଂଚଳର ଲକ୍ଷ ଲକ୍ଷ ଦରିଦ୍ର ପରିବାରକୁ ଆର୍ଥିକ ଉନ୍ନତି ଆଣି ଦେଇଥିଲା । ଗ୍ରାମାଂଚଳଗୁଡ଼ିକୁ ସହରାଂଚଳର ଶୋଷଣରୁ ମୁକ୍ତ କରି ସହର ଓ ଗ୍ରାମ ମଧ୍ୟରେ ଥିବା ଅର୍ଥନୈତିକ ବୈଷମ୍ୟକୁ ହ୍ରାସ କରିବା ପାଇଁ ଗ୍ରାମ୍ୟ ଶିଳ୍ପର ଦ୍ରୁତ ବିକାଶକୁ ସେ ସର୍ବାଧିକ ଗୁରୁତ୍ୱ ଦେଇଥିଲେ । ଗ୍ରାମାଂଚଳର ଅର୍ଥନୈତିକ ବିକାଶ ପାଇଁ ପଂଚାୟତଗୁଡ଼ିକୁ ଆବଶ୍ୟକୀୟ କ୍ଷମତା ଦିଆଯିବା ସହ ସମସ୍ତ ଅର୍ଥନୈତିକ ଯୋଜନା ତଳସ୍ତରରୁ ଆରମ୍ଭ ହେବା ସପକ୍ଷରେ ସେ ମତ ଦେଇଥିଲେ । ସେ ଚାହୁଁଥିଲେ ଯେ ଭାରତୀୟ ଅର୍ଥନୀତି ସମସ୍ତ ସମୃଦ୍ଧ, ସ୍ୱାବଲମ୍ବି ଗ୍ରାମକୁ ନେଇ ବିକଶିତ ହେଉ । ସେ ଯେଉଁ ସ୍ୱଦେଶୀ କଥା କହୁଥିଲେ ତା'ର ପ୍ରକୃତ ଲକ୍ଷ୍ୟ ଥିଲା ଭାରତର ସମସ୍ତ ଅତ୍ୟାବଶ୍ୟକୀୟ ଦ୍ରବ୍ୟ ପ୍ରତିଟି ଗ୍ରାମରେ ଗ୍ରାମବାସୀଙ୍କର ଶ୍ରମ ଓ ଜ୍ଞାନରେ ପର୍ଯ୍ୟାପ୍ତ ପରିମାଣରେ ଉତ୍ପାଦନ କରିବା । ଗାନ୍ଧିଜୀ ଉତ୍ପାଦନରେ ବହୁଳ ଯନ୍ତ୍ରପାତି ବା ମେସିନ୍‌ର ବ୍ୟବହାରର ବିରୋଧୀ ଥିଲେ । ସେ କହୁଥିଲେ ଯେ ମଣିଷକୁ ତା'ର ସମସ୍ତ ଅଭାବ ପୂରଣ କରିବା ପାଇଁ ଭଗବାନ ହାତ ଦେଇଛନ୍ତି । ପାଶ୍ଚାତ୍ୟ ରାଷ୍ଟ୍ରଗୁଡ଼ିକରେ 'ବୈଷୟିକ ଅଗ୍ରଗତି' ପାଇଁ ପାଗଳାମିକୁ ସେ ଦୃଢ଼ କଣ୍ଠରେ ସମାଲୋଚନା କରିଥିଲେ । ପୁଂଜିବାଦୀ ରାଷ୍ଟ୍ରଗୁଡ଼ିକ ଅତ୍ୟାଧୁନିକ ବୈଷୟିକ ଜ୍ଞାନ କୌଶଳରେ ଅଧିକ ଉତ୍ପାଦନ କରି ଅପେକ୍ଷାକୃତ ଦରିଦ୍ର ରାଷ୍ଟ୍ରଗୁଡ଼ିକୁ ଶୋଷଣ କରିଥାନ୍ତି । ଏହି 'ମେସିନ୍ ସଭ୍ୟତା' ଗୋଟିଏ ରାଷ୍ଟ୍ର ଅନ୍ୟ ରାଷ୍ଟ୍ରକୁ ଶୋଷଣ କରିବା ପାଇଁ ଉତ୍ସାହିତ କରିଥାଏ । ଅନ୍ୟ ଏକ ଦୃଷ୍ଟିକୋଣରୁ ଗାନ୍ଧିଜୀ କହୁଥିଲେ ଯେ ଯଦି ମଣିଷ ଉତ୍ପାଦନରେ ଅଧିକ ଯନ୍ତ୍ରପାତିର ସାହାଯ୍ୟ ନିଏ ତା' ହେଲେ







ଏହା ମଣିଷକୁ କାର୍ଯ୍ୟ କରିବାର ଆନନ୍ଦରୁ ବଂଚିତ କରିଥାଏ । ମଣିଷ ମେସିନ୍ ସହ କାର୍ଯ୍ୟ କରି ମେସିନ୍‌ର ଦାସ ହୋଇଯାଏ, ଯାହା ତା'ର ଅନ୍ତର୍ନିହିତ କାର୍ଯ୍ୟ ଦକ୍ଷତା, କୁଶଳତା ଓ ଗଭୀର ଚିନ୍ତାଶକ୍ତି ହ୍ରାସ କରିଥାଏ । ଅର୍ଥନୈତିକ ଦିଗରୁ ମଧ୍ୟ ଗାନ୍ଧିଜୀ ଭାବୁଥିଲେ ଯେ, ଯେଉଁ ଦେଶରେ ଶ୍ରମର ଯୋଗାଣ ସ୍ୱଳ୍ପ ଏବଂ ସୀମିତ, ସେଠାରେ ମେସିନ୍‌ର ବ୍ୟବହାର ହେବା ଉଚିତ । କିନ୍ତୁ ଭାରତ ପରି ଏକ ଶ୍ରମବହୁଳ ରାଷ୍ଟ୍ରରେ କଳକବ୍‌ଜା, ଯନ୍ତ୍ରପାତିର ଅତ୍ୟଧିକ ବ୍ୟବହାର ଅନାବଶ୍ୟକ ଅଟେ । କାରଣ ଯଦି ସେଠାରେ ମେସିନ୍ ମଣିଷର ସ୍ଥାନ ନିଏ, ତା'ହେଲେ ଏହା କ୍ରମବର୍ଦ୍ଧିଷ୍ଣୁ ବେକାରୀ ସମସ୍ୟାକୁ ଆହୁରି ଇନ୍ଧନ ଯୋଗାଇ ଦେଇ ସମାଜରେ ବିଭିନ୍ନ ସଂକଟ ସୃଷ୍ଟି କରିବ । ଗୋଟିଏ ଦେଶରେ ମେସିନ୍‌ର ଅତ୍ୟଧିକ ବ୍ୟବହାର ଦ୍ୱାରା ବହୁଳ ଉତ୍ପାଦନ କେବଳ କେତେକ ମୁଷ୍ଟିମେୟ ପରିଚାଳକ, ଯନ୍ତ୍ରୀ ଏବଂ ବୈଷୟିକ ଜ୍ଞାନ ସଂପନ୍ନ ବ୍ୟକ୍ତିଙ୍କ ଦ୍ୱାରା ନିୟନ୍ତ୍ରିତ ହୁଏ । ଯାହାକି ଏକ ଅର୍ଥନୈତିକ ଢାଞ୍ଚାର ଗଣତାନ୍ତ୍ରିକ ଭିତ୍ତିକୁ ଦୋହଲାଇ ଦେଇଥାଏ । ଅର୍ଥନୈତିକ କ୍ଷମତାର କେନ୍ଦ୍ରୀକରଣ ହୋଇ 'ଶୋଷଣ' ବୃଦ୍ଧି ପାଏ । ଉତ୍ପାଦନ କ୍ଷେତ୍ରରେ ମେସିନ୍ ଓ ଆଧୁନିକ ବୈଷୟିକ ଜ୍ଞାନର ପ୍ରୟୋଗ ସଂପର୍କରେ ଗାନ୍ଧିଜୀଙ୍କର ଚିନ୍ତାଧାରାକୁ ଠିକ୍ ଭାବେ ଅନୁଧ୍ୟାନ କରି ନପାରି ଅନେକ ତାଙ୍କୁ ସମାଲୋଚନା କରିଥିଲେ । ତେବେ କଳକବ୍‌ଜା, ଯନ୍ତ୍ରପାତି ବ୍ୟବହାର ସଂପର୍କରେ ଗାନ୍ଧିଜୀଙ୍କର ଦୃଷ୍ଟିଭଙ୍ଗୀର ଏକ ସ୍ୱଷ୍ଟ ଚିତ୍ର ପାଇବା ପାଇଁ ତାଙ୍କର ଏକ ଆଳାପ, ଆଲୋଚନା ଏଠାରେ ଉପସ୍ଥାପନ କରାଯାଇପାରେ ।

ଥରେ ଗାନ୍ଧିଜୀଙ୍କର ଶିଷ୍ୟ ରାମ ଚନ୍ଦ୍ରନ୍ ତାଙ୍କୁ ପଚାରିଲେ 'ବାପୁଜୀ, ଆପଣ ମେସିନ୍ ବିରୁଦ୍ଧରେ କି ?' ଗାନ୍ଧିଜୀ ହସି ହସି ଉତ୍ତର ଦେଲେ, 'ଯେତେବେଳେ ଏହି ଶରୀର ହେଉଛି ଏକ ଅତି ସୂକ୍ଷ୍ମ ଯନ୍ତ୍ର, ଯାହା ଦେହରେ ଯାବତୀୟ କଳକବ୍‌ଜା ଖଂଜା ଯାଇଛି, ସେତେବେଳେ ମୁଁ କ'ଣ ଯନ୍ତ୍ରପାତିର ବିରୋଧୀ ହୋଇପାରିବି ? ଚରଖା ହେଉଛି ଗୋଟିଏ ଯନ୍ତ୍ର । ଏପରିକି ଛୋଟ ଦାନ୍ତଖୁଣ୍ଟାଟିଏ ମଧ୍ୟ ଗୋଟିଏ ଯନ୍ତ୍ର । ମୁଁ ଯନ୍ତ୍ରପାତିର ବ୍ୟବହାରକୁ ବିରୋଧ କରୁନାହିଁ, ମୁଁ ବିରୋଧ କରୁଛି ଯନ୍ତ୍ରପାତି ପାଇଁ ମଣିଷର ପାଗଳାମିକୁ, ଯାହାକି ସେମାନେ ଶ୍ରମ-ସଂଚୟକାରୀ ଯନ୍ତ୍ରପାତି ବୋଲି କହୁଛନ୍ତି । ଯେତେବେଳେ ହଜାର ହଜାର ଲୋକ ବେକାର ଏବଂ ରାଜ ରାସ୍ତାରେ ଅନାହାରରେ ସଢୁଛନ୍ତି, ସେତେବେଳେ ମଣିଷ ଶ୍ରମ-ସଂଚୟ କରି ଚାଲିଛି । ମୁଁ ମଧ୍ୟ ସମୟ ଓ ଶ୍ରମ ସଂଚୟ କରିବାକୁ ଚାହେଁ, କେବଳ ଗୋଟିଏ ନିର୍ଦ୍ଦିଷ୍ଟ ସଂପ୍ରଦାୟ ବା ଶ୍ରେଣୀ ପାଇଁ ନୁହେଁ ବରଂ ସମଗ୍ର ମାନବ ସମାଜ ପାଇଁ । ମୁଁ ମଧ୍ୟ ସଂପଦର କେନ୍ଦ୍ରୀକରଣ ଚାହେଁ କେତେକ ମୁଷ୍ଟିମେୟ ଲୋକଙ୍କ ହାତରେ ନୁହେଁ ବରଂ ସମସ୍ତ ମଣିଷଙ୍କ ହାତରେ । ଆଜିକାଲି ମେସିନ୍ କେତେକ ଲୋକଙ୍କୁ ହଜାର ହଜାର ଲୋକଙ୍କ ପିଠିରେ ଚଢ଼ି ଯିବାକୁ ସାହାଯ୍ୟ କରୁଛି । ଶ୍ରମ ସଂଚୟ ଏମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ନୁହେଁ ବରଂ ଲୋଭ । ଏଇଥିପାଇଁ ମୁଁ ମୋର ଶକ୍ତି ମୁତାବକ ସଂଘର୍ଷ କରୁଛି ।'

ରାମଚନ୍ଦ୍ରନ ପୁଣି ପଚାରିଲେ, 'ତା'ହେଲେ ବାପୁଜୀ, ଆପଣ ମେସିନ୍ ବିରୁଦ୍ଧରେ ଯୁକ୍ତି ନ କରି ଏହାର ଅପବ୍ୟବହାର ସଂପର୍କରେ କହୁଛନ୍ତି ।'

ଗାନ୍ଧିଜୀ ଉତ୍ତର ଦେଲେ, 'ମୁଁ ନିଃସନ୍ଦେହରେ କହିବି, ହଁ । ମୁଁ ଆହୁରି କହିବି ଯେ ବିଜ୍ଞାନର ଉଦ୍ଭାବନ ଓ ଆବିଷ୍କାର 'ଲୋଭ'ର ଏକ ଅସ୍ତ୍ର ହେବା ଉଚିତ ନୁହେଁ । ଶ୍ରମିକମାନେ ଅତ୍ୟଧିକ ପରିଶ୍ରମ କରିବେ ନାହିଁ ଏବଂ ମେସିନ୍ ସେମାନଙ୍କ ପାଇଁ ପ୍ରତିବନ୍ଧକ ନହୋଇ ସେମାନଙ୍କୁ ସାହାଯ୍ୟ କରିବା ଉଚିତ । ମୁଁ ଯନ୍ତ୍ରପାତିର ମୂଳୋତ୍ପାଟନ କଥା କହୁନାହିଁ, ଏହାର ସୀମା ସଂପର୍କରେ କହୁଛି ।' ଉତ୍ପାଦନକାରୀଙ୍କ ଉଦ୍ଦେଶ୍ୟରେ ଗାନ୍ଧିଜୀ କହୁଥିଲେ ଯେ, ମୁଁ ମଧ୍ୟ ବହୁଳ ଉତ୍ପାଦନ ଚାହେଁ କିନ୍ତୁ ଏହି ଅଧିକ ଉତ୍ପାଦନ ଜନସାଧାରଣଙ୍କର ପ୍ରତିଟି ଘରେ ହେବା ଉଚିତ୍ । ମୋ ମତରେ ଯନ୍ତ୍ରପାତି, ମେସିନ୍ ସବୁ ଏପରି ମୌଳିକ ହେବା ଉଚିତ ଯାହାକୁ ମୁଁ ଲକ୍ଷ ଲକ୍ଷ ଲୋକଙ୍କର ପ୍ରତିଟି ଘରେ ପ୍ରତିଷ୍ଠା କରିପାରିବି । ଯଦି ଉତ୍ପାଦନ ଓ ଉପଭୋଗ ଗୋଟିଏ ଅଂଚଳରେ ହୁଏ, ତା'ହେଲେ ଉତ୍ପାଦନକୁ ତୁରନ୍ତ ବୃଦ୍ଧି କରିବା ପାଇଁ ଯେଉଁ ବ୍ୟଗ୍ରତା ଦେଖାଦେଇଛି ତାହା ଅଦୃଶ୍ୟ ହୋଇଯିବ । ଦ୍ରବ୍ୟର ଉତ୍ପାଦନ ଓ ବଣ୍ଟନରେ ମଧ୍ୟ ଅଧିକ ସମତା ରକ୍ଷା କରାଯାଇପାରିବ । ସାଂପ୍ରତିକ ଅର୍ଥନୈତିକ ବ୍ୟବସ୍ଥାରେ ଯେଉଁ ସବୁ ସମସ୍ୟା ଦେଖାଦେଇଛି ସେସବୁ ଆପେ ଆପେ ଦୂରୀଭୂତ ହୋଇଯିବ । ଯଦି ଦ୍ରୁତ ଶିଳ୍ପାୟନର ଆବଶ୍ୟକତା ରହିଛି ତା'ହେଲେ ଏହା କେତେକ ନିର୍ଦ୍ଦିଷ୍ଟ ଅଂଚଳରେ କେନ୍ଦ୍ରୀଭୂତ ନହୋଇ ଭାରତର ପ୍ରତିଟି ଅଂଚଳରେ ହେବା ଉଚିତ୍ ।

ଏତଦ୍‌ବ୍ୟତୀତ ଗାନ୍ଧିଜୀ ଭାରତୀୟ ଅର୍ଥନୀତିରେ ଉତ୍ପାଦନର ଢାଞ୍ଚା ଓ ପ୍ରକାର ଭେଦ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଯେପର୍ଯ୍ୟନ୍ତ ଦେଶର ସମସ୍ତ ଲୋକମାନଙ୍କର ସର୍ବନିମ୍ନ ମୌଳିକ ଆବଶ୍ୟକତାକୁ ପୂରଣ କରାନଯାଇଛି ସେ ପର୍ଯ୍ୟନ୍ତ ସମାଜରେ ମଧ୍ୟବିତ୍ତ ଓ ଉଚ୍ଚଶ୍ରେଣୀର ଲୋକମାନେ ଉପଭୋଗ କରୁଥିବା ଦ୍ରବ୍ୟର ଉତ୍ପାଦନ ଉପରେ ନିୟନ୍ତ୍ରଣ ରଖିବାକୁ ସେ ମତବ୍ୟକ୍ତ କରିଥିଲେ । ସେ କହୁଥିଲେ ଯେ ଯେଉଁ ଅର୍ଥନୈତିକ ଢାଞ୍ଚା ମଣିଷକୁ ତା'ର ମୌଳିକ ଆବଶ୍ୟକତାକୁ ପୂରଣ କରିବାରୁ ବଂଚିତ କରିଛି ତାହାକୁ ନିନ୍ଦା କରିବା ଉଚିତ୍ । ତାଙ୍କର ଚିନ୍ତାଧାରା ଥିଲା 'ଜନ ସମୁଦାୟ ପାଇଁ ଜନ ସମୁଦାୟର ଉତ୍ପାଦନ' ଅର୍ଥନୀତିରେ ସେ 'ଚାହିଦାଭିମୁଖୀ ଉତ୍ପାଦନ'କୁ 'ଆବଶ୍ୟକତାଭିମୁଖୀ ଉତ୍ପାଦନ'ରେ ପରିବର୍ତ୍ତିତ କରିବା ପାଇଁ ଚାହୁଁଥିଲେ । ମଣିଷର ଉଚ୍ଚମାନର ଜୀବନ ଧାରଣ ପାଇଁ ଯେଉଁ ଅଧିକରୁ ଅଧିକ ଭୌତିକ ଦ୍ରବ୍ୟର ଉପଭୋଗର ବ୍ୟାକୁଳତା ଦେଖାଦେଇଛି ତାହା ତା'ର ଜୀବନକୁ ସହଜ ଓ ସୁନ୍ଦର ନକରି ବରଂ ବେଶୀ ଦୁଃଖଦ କରିଛି । ଗାନ୍ଧିଜୀଙ୍କର ଚାହିଦା ହ୍ରାସ ପାଇଁ ଆହ୍ୱାନ ଏବଂ 'ଅପରିଗ୍ରହ' ନୀତି ଉଭୟର ମୁଖ୍ୟ ଲକ୍ଷ୍ୟ ଥିଲା, ମିଳିତ ପ୍ରଚେଷ୍ଟା ଏବଂ ସହଯୋଗ ଦ୍ୱାରା ପୂର୍ଣ୍ଣ ନିଯୁକ୍ତିର ସୁଯୋଗ ଦେଇ ଅର୍ଥନୈତିକ ଅଭିବୃଦ୍ଧିକୁ ତ୍ୱରାନ୍ୱିତ କରିବା । ଏହା ସହ ସେ ରାଷ୍ଟ୍ରର ସଂଚୟ ଉପରେ ମଧ୍ୟ ଗୁରୁତ୍ୱ ଆରୋପ କରିଥିଲେ ।

ଗାନ୍ଧିଜୀ ସମାଜରେ ଅର୍ଥନୈତିକ ସମତା ଓ ସଂପଦର ସମବଣ୍ଟନକୁ ମଧ୍ୟ ଯଥେଷ୍ଟ ପ୍ରାଧାନ୍ୟ ଦେଇଥିଲେ । ତାଙ୍କ ମତରେ ଅର୍ଥନୈତିକ ସମତାର ଅର୍ଥ ନୁହେଁ, ସମାଜର ପ୍ରତିଟି ବ୍ୟକ୍ତି ନିକଟରେ ସମାନ ପରିମାଣ ଦ୍ରବ୍ୟ ରହିବ ବରଂ ଏହାର ଅର୍ଥ ହେଉଛି ପ୍ରତିଟି





ବ୍ୟକ୍ତି ରହିବା ପାଇଁ ଗୋଟିଏ ଉତ୍ତମ ଗୃହ, ଆହାର ପାଇଁ ଆବଶ୍ୟକୀୟ ସନ୍ତୁଳିତ ଖାଦ୍ୟ ଏବଂ ପିନ୍ଧିବା ପାଇଁ ବସ୍ତ୍ର ମିଳିବା ଉଚିତ୍ । ଅର୍ଥନୈତିକ ସମତା ସଂପର୍କରେ ଗାନ୍ଧିଜୀ ତାଙ୍କର ଦୃଷ୍ଟିଭଂଗୀ ଆହୁରି ସରଳ ଓ ସ୍ପଷ୍ଟ କରିବାକୁ ଯାଇ ଏକ ଉଦାହରଣ ଦେଇ କହିଛନ୍ତି ଯେ, ଗୋଟିଏ ପିମ୍ପୁଡ଼ିର ଖାଦ୍ୟ ତୁଳନାରେ ହାତୀ ଏକ ହଜାର ଗୁଣ ଖାଦ୍ୟ ଆବଶ୍ୟକ କରେ । କିନ୍ତୁ ଏହା ଏକ ଅସମତାର ସୂଚନା ନୁହେଁ । ଅର୍ଥନୈତିକ ସମତାର ପ୍ରକୃତ ଅର୍ଥ ହେଲା ପ୍ରତିଟି ବ୍ୟକ୍ତିର ସର୍ବନିମ୍ନ ଆବଶ୍ୟକତାକୁ ପୂରଣ କରିବା । ଯଦି କେବଳ ଜଣେ ବ୍ୟକ୍ତି, ସ୍ତ୍ରୀ ଏବଂ ଚାରୋଟି ପିଲା ଥିବା ଅନ୍ୟ ଜଣେ ବ୍ୟକ୍ତି ପରି ସମସ୍ତ ଦ୍ରବ୍ୟ, ସୁବିଧା ଦାବୀ କରେ ତାହା ଅର୍ଥନୈତିକ ସମତାକୁ ବିରୋଧ କରୁଛି । ଗାନ୍ଧିଜୀ ଲେଖିଛନ୍ତି ଯେ ସମାଜରେ ଧନୀ ଓ ଗରିବ ମଧ୍ୟରେ ଥିବା ଅସମତା ଅତ୍ୟନ୍ତ ଯନ୍ତ୍ରଣାଦାୟକ । ପ୍ରତିଟି ବ୍ୟକ୍ତି ସନ୍ତୁଳିତ ଆହାର ପାଇବା, ରହିବା ପାଇଁ ଭଲ ଘର, ପିଲାମାନଙ୍କ ପାଇଁ ଉତ୍ତମ ଶିକ୍ଷା ସୁବିଧା ଏବଂ ଆବଶ୍ୟକୀୟ ସ୍ୱାସ୍ଥ୍ୟ ସେବା ରହିବା ଉଚିତ । ଏହା ହିଁ ମୋ ଦୃଷ୍ଟିରେ ଅର୍ଥନୈତିକ ସମତା । ସମବଣ୍ଟନ ସଂପର୍କରେ ଏକ ଉଦାହରଣ ଦେଇ ଗାନ୍ଧିଜୀ କହିଥିଲେ ଯେ ଯଦି ଜଣେ ବ୍ୟକ୍ତିର ହଜମ ଶକ୍ତି ଦୁର୍ବଳ ଏବଂ ରୁଟି ପାଇଁ ତା'ର କେବଳ ଏକ ପାଉଣ୍ଡ ଅଟାର ଏକ ଚତୁର୍ଥାଂଶ ଆବଶ୍ୟକ ଏବଂ ଅନ୍ୟ ଜଣକର ଏକ ପାଉଣ୍ଡ ଅଟାର ଆବଶ୍ୟକତା ରହିଛି, ତା'ହେଲେ ଉଭୟ ସେମାନଙ୍କର ଅଭାବ ପୂରଣ କରିବାର ଅବସ୍ଥାରେ ରହିବା ଉଚିତ । ଏଥିପାଇଁ ସମଗ୍ର ସାମାଜିକ ବ୍ୟବସ୍ଥାର ପୁନର୍ଗଠନର ଆବଶ୍ୟକତା ରହିଛି । ଅହିଂସା ଉପରେ ପ୍ରତିଷ୍ଠିତ ଏକ ସମାଜରେ ଏହି ନୀତି ବ୍ୟତୀତ ଅନ୍ୟ କୌଣସି ନିୟମ ତିଷ୍ଠିପାରିବ ନାହିଁ ।

ଅର୍ଥନୀତିରେ ଅଧିକ ଉତ୍ପାଦନ ଏବଂ ଶ୍ରମିକ-ମାଲିକ ସଂପର୍କ ଉପରେ ମଧ୍ୟ ଗାନ୍ଧିଜୀ ବହୁ ପୂର୍ବରୁ ମତ ପ୍ରଦାନ କରିଯାଇଛନ୍ତି । ସେ କହୁଥିଲେ ଯେ କୌଣସି ଶିଳ୍ପରେ ଶ୍ରମିକ ଓ ମାଲିକ ମଧ୍ୟରେ ସଂପର୍କ ସ୍ୱାମୀ ଏବଂ ଦାସର ନହୋଇ ପିତା-ପୁତ୍ରର ସଂପର୍କ ହେବା ଉଚିତ୍ । ଏପରିକି ସେମାନଙ୍କ ମଧ୍ୟରେ ରକ୍ତ ସଂପର୍କରେ ଭ୍ରାତୃଭାବ ବଜାୟ ରହିବା ଆବଶ୍ୟକ ଯେକୌଣସି ଉତ୍ପାଦନ ପ୍ରକ୍ରିୟାରେ ଶ୍ରମ ଓ ପୁଂଜି ଉଭୟ ପରସ୍ପର ପ୍ରତି ନିର୍ଭରଶୀଳ । ପ୍ରକୃତ ସାମାଜିକ ଅର୍ଥଶାସ୍ତ୍ର ଯେକୌଣସି ସଂଗଠନରେ ନିଯୁକ୍ତିଦାତା ଏବଂ ନିଯୁକ୍ତି ପାଇଥିବା ବ୍ୟକ୍ତି ଉଭୟ ଅବିଭାଜ୍ୟ ଅଂଗ ବୋଲି ଶିକ୍ଷା ଦେଇଥାଏ । ପୁଂଜିପତିମାନେ ଶ୍ରମିକ ଶ୍ରେଣୀର କଲ୍ୟାଣ ନିମିତ୍ତ ଟ୍ରଷ୍ଟିଭାବେ କାର୍ଯ୍ୟ କରିବା ଉଚିତ ଏବଂ ଶ୍ରମିକମାନେ ରାଷ୍ଟ୍ରର ଟ୍ରଷ୍ଟି ହେବା ଉଚିତ୍ । ଉଚ୍ଚ ହାରରେ ମଜୁରୀ ନେବା ଯେପରି ଶ୍ରମିକର ଅଧିକାର, ସେହିପରି କାର୍ଯ୍ୟକ୍ଷେତ୍ରରେ ନିଜର ସର୍ବୋତ୍ତମ ଦକ୍ଷତା ପ୍ରଦର୍ଶନ କରିବା ମଧ୍ୟ ତାହାର ସର୍ବପ୍ରଥମ କର୍ତ୍ତବ୍ୟ ।

ପରିଶେଷରେ ଏହା କୁହାଯାଇପାରେ ଯେ, ଗାନ୍ଧିଜୀଙ୍କର ଅର୍ଥନୈତିକ ଚିନ୍ତାଧାରା ଭାରତୀୟ ଅର୍ଥନୀତିର ପୂର୍ଣ୍ଣାଙ୍ଗ ଆର୍ଥିକ, ଆଧ୍ୟାତ୍ମିକ ଓ ନୈତିକ ବିକାଶ ପାଇଁ ହିଁ ଉଦ୍ଦିଷ୍ଟ ଥିଲା । ସେ କହୁଥିଲେ ଯେ ଅର୍ଥନୈତିକ ବିକାଶ ପାଇଁ ଉଦ୍ଦିଷ୍ଟ କାର୍ଯ୍ୟକ୍ରମର ଏକ ମାନବୀୟ ଆବେଦନ ରହିବା ଉଚିତ । ମହାତ୍ମା ଗାନ୍ଧୀ ନିଜ ଜୀବନର ପ୍ରତିଟି କ୍ଷଣ ହିଁ କେବଳ ମାନବ ସମାଜର ସର୍ବାଙ୍ଗୀନ କଲ୍ୟାଣ ପାଇଁ ବଂଚି ଥିଲେ । ସଂପ୍ରତି ସରକାର ଓ ଯୋଜନାବିତ୍‌ମାନେ ଭାରତୀୟ ଅର୍ଥନୀତିର ବିକାଶ ପାଇଁ ଗାନ୍ଧିଜୀଙ୍କ ପ୍ରଦର୍ଶିତ ମାର୍ଗକୁ ଅନୁସରଣ କରୁଛନ୍ତି । ମହାତ୍ମା ଆଜି ଆମ ଗହଣରେ ନ ଥିଲେ ମଧ୍ୟ ଭାରତ ତାଙ୍କର ସେହି ଦୁର୍ଲ୍ଲଭ ଚିନ୍ତା ଓ ଚେତନାର ଅମ୍ଳାନ ଆଲୋକରେ ଅଧିକରୁ ଅଧିକ ଆଲୋକିତ ହେବାରେ ଲାଗିଛି ।

ଅଧ୍ୟାପକ, ଅର୍ଥନୀତି ବିଭାଗ
ଆଂଚଳିକ ପଂଚାୟତ ମହାବିଦ୍ୟାଳୟ
ସୁଜନପୁର, ଯାଜପୁର - ୭୫୫୦୧୭

---

## ଗ୍ରାମାଂଚଳ ବିକାଶ ପ୍ରକ୍ରିୟାରେ ଯୋଗାଯୋଗ ବ୍ୟବସ୍ଥା ଉପରେ ଗୁରୁତ୍ୱ ପ୍ରଦାନ କରାଯାଉଛି ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ

ଗ୍ରାମାଂଚଳର ସାମାଜିକ ଓ ଆର୍ଥିକ ବିକାଶ ପ୍ରକ୍ରିୟାରେ ସରକାର ଯୋଗାଯୋଗ ବ୍ୟବସ୍ଥା ଉପରେ ବିଶେଷ ଗୁରୁତ୍ୱ ଆରୋପ କରୁଛନ୍ତି ବୋଲି ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ ପ୍ରକାଶ କରିଛନ୍ତି ।

ଗତ ସେପ୍ଟେମ୍ବର **୨୩** ତାରିଖ ଦିନ ମନ୍ତ୍ରୀ ଶ୍ରୀ ନାୟକ ବରୀ-ଡେରାବିଶି ନିର୍ବାଚନ ମଣ୍ଡଳୀ ଅନ୍ତର୍ଗତ ବିଦୁପାଠାରେ ପ୍ରଧାନମନ୍ତ୍ରୀ ଗ୍ରାମ୍ୟ ସଡ଼କ ଯୋଜନାରେ ୪୨.୩୨ ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ଏମ୍.ଡି.ଆର୍-**୧୪**ରୁ ବିଦୁପା ରାସ୍ତା ଏବଂ **୩** ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ବିଦୁପା ପ୍ରାଥମିକ ବିଦ୍ୟାଳୟ ନୂତନ ଗୃହ ପାଇଁ ଶିଳାନ୍ୟାସ କରିଥିଲେ । ଏହି ଅବସରରେ ଆୟୋଜିତ ଉତ୍ସବରେ ଉଦ୍‌ବୋଧନ ଦେଇ ମନ୍ତ୍ରୀ ଶ୍ରୀ ନାୟକ ରାଜ୍ୟର ଦରିଦ୍ର ଓ ଅବହେଳିତ ଲୋକମାନଙ୍କ ସାମାଜିକ ଓ ଆର୍ଥିକ ବିକାଶ ପାଇଁ ସରକାରଙ୍କ ଜନକଲ୍ୟାଣ କାର୍ଯ୍ୟକ୍ରମ ସଂପର୍କରେ ସୂଚନା ଦେଇ ସେହିସବୁ କାର୍ଯ୍ୟକ୍ରମଗୁଡ଼ିକର ସଫଳ ରୂପାୟନ ପାଇଁ ସମସ୍ତଙ୍କ ସହଯୋଗ କାମନା କରିଥିଲେ । ବରୀ-ଡେରାବିଶି ନିର୍ବାଚନ ମଣ୍ଡଳୀର ବିକାଶ ନିମନ୍ତେ ସମସ୍ତ ପ୍ରକାର ଉଦ୍ୟମ କରାଯାଉଛି ଏବଂ ଏହାକୁ ଆହୁରି ତ୍ୱରାନ୍ୱିତ କରାଯିବ ବୋଲି ମଧ୍ୟ ସେ ପ୍ରକାଶ କରିବା ସହିତ **୩୦** ଜଣଙ୍କୁ ବାର୍ଦ୍ଧକ୍ୟ ଓ ବିଧବା ଭତ୍ତା ବଣ୍ଟନ କରିଥିଲେ ।

କାଶୀନାଥ ମହାବିଦ୍ୟାଳୟ ଅଧ୍ୟକ୍ଷ ଶ୍ରୀ କୃଷ୍ଣଚନ୍ଦ୍ର ଦାସଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଉକ୍ତ ଉତ୍ସବରେ ପଂଚାୟତ ସମିତି ଚେୟାରମ୍ୟାନ ଶ୍ରୀ ବୃନ୍ଦାବନ ଜେନା, ଜିଲ୍ଲା ପରିଷଦ ସଦସ୍ୟ ଶ୍ରୀ ସୁଧୀର ମଲ୍ଲିକ, ସରପଂଚ ଶ୍ରୀ ଦେବ ଦାସ ଏବଂ ଗ୍ରାମ୍ୟ ଉନ୍ନୟନ ନିର୍ବାହୀ ଯନ୍ତ୍ରୀ ଶ୍ରୀ ତୁଷାର ପରିଡ଼ା ପ୍ରମୁଖ ଉଦ୍‌ବୋଧନ ଦେଇଥିଲେ । ଏହାପରେ ମନ୍ତ୍ରୀ ଶ୍ରୀ ନାୟକ ନିର୍ମାଣାଧୀନ ତିନିମୁହାଣୀ ପୋଲ, ବରୀପାଳ ଥାନା, ଅଗ୍ନିଶମ ସେବା କେନ୍ଦ୍ର ଓ ସ୍ୱାଧୀନତା ସଂଗ୍ରାମୀ ଭବନର ନିର୍ମାଣ କାର୍ଯ୍ୟ ଅନୁଧ୍ୟାନ କରି ସେହିସବୁ କାର୍ଯ୍ୟର ନିର୍ମାଣକୁ ତ୍ୱରାନ୍ୱିତ କରି ନିର୍ଦ୍ଧାରିତ ସମୟସୀମା ମଧ୍ୟରେ ସଂପୂର୍ଣ୍ଣ କରିବାକୁ ପରାମର୍ଶ ଦେଇଥିଲେ ।

# ଗାନ୍ଧିଜୀଙ୍କ ଦୃଷ୍ଟିରେ ଶିକ୍ଷା ଓ ଏ ଶତାବ୍ଦୀର ଶିକ୍ଷାନୀତି

ରବୀନ୍ଦ୍ର କୁମାର ଦାଶ

ମାନବ ଜୀବନର ବହୁ ଅସୁବିଧା, ଜଟିଳ ପରିସ୍ଥିତିକୁ ସଫଳତାର ସହ ମୁକାବିଲା କରିବା କ୍ଷେତ୍ରରେ ଯାହା ମସ୍ତିଷ୍କର ବୌଦ୍ଧିକତାକୁ ଶାଣିତ କରିଥାଏ, ତାକୁ ଶିକ୍ଷା କୁହାଯାଏ । ଶିକ୍ଷାର ସଂଜ୍ଞା ନିରୂପଣ କରିବାକୁ ଯାଇ ଏକଦା ବୈଜ୍ଞାନିକ ଆଇନଷ୍ଟାଇନ କହିଥିଲେ - 'Education should aim at developing a harmonious personality by training the pupils to think and act independently and stimulate the curiosity of the child and thus awakens and strengthen the psychological forces within him.' ଜାତିର ଜନକ ଗାନ୍ଧିଜୀଙ୍କ ମତରେ - 'ଶିକ୍ଷା ସଚ୍ଚରିତ୍ର ଗଠନ ଓ ବୌଦ୍ଧିକତାର ବିକାଶ ତଥା ଉନ୍ମେଷ କରିଥାଏ ।' 'Education aims at character building or the enlightenment and enlargement of mind' - Gandhiji; ବାସ୍ତବିକ୍, ଶିକ୍ଷା ମଣିଷର ଚିନ୍ତାଚେତନାକୁ ପରିବ୍ୟାପ୍ତ ବା ଊର୍ଦ୍ଧ୍ୱାଭିମୁଖୀ କରିଥାଏ ।



ଆଧୁନିକ ଶିକ୍ଷାନୀତି ଗାନ୍ଧୀ ଦର୍ଶନର ପ୍ରତିକୂଳ ଅଟେ । ତାଙ୍କ ଜୀବନ ତ ଏକ ଖୋଲା ବହି ଥିଲା । ସେ ବହୁ ଶିକ୍ଷାବିତ୍, ଶିକ୍ଷକ, ଶିକ୍ଷାର୍ଥୀ ଓ ଶିକ୍ଷାନୁଷ୍ଠାନର ପ୍ରତ୍ୟକ୍ଷ ଓ ପରୋକ୍ଷ ସଂସ୍ପର୍ଶରେ ଆସିଥିଲେ । ବିଶ୍ୱର ବହୁ ଦେଶ ଭ୍ରମଣକରି ଅନେକ ଅନୁଧ୍ୟାନ ଓ ଗଭୀର ଅନୁଶୀଳନ ପରେ ଆମ ଦେଶ ଭାରତ ପାଇଁ କି ଧରଣର ଶିକ୍ଷାନୀତି ହେବା ଉଚିତ୍, ସେ ସମ୍ପର୍କରେ ମତାମତ ପ୍ରକଟ କରିଥିଲେ । ତାଙ୍କର ଦିଗ୍‌ଦର୍ଶନ କେତେକାଂଶରେ ଆମ ଦେଶର ଶିକ୍ଷାକୁ ପ୍ରଭାବିତ କରିଥିଲା । ଏହା ସତ୍ୟ ଯେ, ଯେଉଁ ଦେଶର ଶିକ୍ଷା ଯେତେ ଉନ୍ନତ, ସେ ଦେଶର ଉନ୍ନତି, ସଭ୍ୟତା, ସଂସ୍କୃତି ଅନୁରୂପ ଉନ୍ନତ ଅଟେ । ଭେଲୋର୍‌ଠାରେ ଛାତ୍ରମାନଙ୍କଠାରୁ ସମ୍ମିଳିତ ଅଭିନନ୍ଦନ ଗ୍ରହଣ କରିବା ଅବସରରେ ସେ ଛାତ୍ରମାନଙ୍କୁ ଦେଇଥିବା ମୂଲ୍ୟବାନ୍ ଉପଦେଶଗୁଡ଼ିକ Young India ପତ୍ରିକାରେ ୧୯୨୭ ମସିହା ଅଗଷ୍ଟ ୮ ତାରିଖରେ ପ୍ରକାଶିତ ହୋଇଥିଲା । ଯା'ର ସାରବତ୍ତା ଥିଲା ଯେ ଛାତ୍ରାବସ୍ଥା ହି ମାନବ ଜୀବନର ଗୁରୁତ୍ୱପୂର୍ଣ୍ଣ ସମୟ । ପ୍ରତ୍ୟେକ ପ୍ରଥମେ ନିଜର ମନକୁ ଚିହ୍ନିବ, ତଦନୁସାରେ ତତ୍ତ୍ୱ ନେବା ଉଚିତ୍ ।

ଶିକ୍ଷାର ଲକ୍ଷ୍ୟ ଚରିତ୍ର ଗଠନ ଓ ପବିତ୍ରତା । ଗାନ୍ଧିଜୀଙ୍କ ମତରେ 'ଛାତ୍ର' ଶବ୍ଦର ପ୍ରକୃତ ଅର୍ଥ ବ୍ରହ୍ମଚାରୀ । ଆଧ୍ୟାତ୍ମିକାର ପୃଷ୍ଠଭୂମିରେ ଶିକ୍ଷା ପର୍ଯ୍ୟବସିତ ହେବା ଉଚିତ । ସଂଯମତା, ଚରିତ୍ରବତ୍ତା, ଲକ୍ଷ୍ୟପୂର୍ଣ୍ଣ ଆଚରଣ ଛାତ୍ରଟି ପାଖରୁ ଆଶା କରାଯାଏ । ଶିକ୍ଷାର୍ଥୀ ଜୀବନରେ ଭଗବତ୍ ଗୀତାଠାରୁ ଆରମ୍ଭ କରି ସମସ୍ତ ଧର୍ମଗ୍ରନ୍ଥକୁ ପାଠକରିବା ଉଚିତ । ତାହା ପୁଣି ଚିତ୍ତ ଶୁଦ୍ଧି ବିନା ନିରର୍ଥକ । ଶିକ୍ଷାର୍ଥୀମାନେ ଗୀତା, ଉପନିଷଦର ମହତ୍‌ବାଣୀଗୁଡ଼ିକୁ ଆଚାର-ବିଚାରରେ ବିନିଯୋଗ କରିବା ଉଚିତ୍ । ଈଶ୍ୱର ବିଶ୍ୱାସୀ ହେବାଦ୍ୱାରା ମଣିଷ ନିରହଙ୍କାରୀ ହେବା ସହ ଫଳ ଆଶାବିନା ନିରନ୍ତର କାର୍ଯ୍ୟ କରିଚାଲେ । ସେହିପରି ନିତ୍ୟ-ନୈମିତ୍ତିକ ଶିକ୍ଷା ସହ ଧନ୍ଦାମୂଳକ ବୈଷୟିକ ଶିକ୍ଷା ଅଙ୍ଗୀଭୂତ ନହେଲେ ସେ ଶିକ୍ଷା ଅକାରଣ । କାରଣ, ଶିକ୍ଷାର ପରିସର ବ୍ୟାପକ । ଛାତ୍ର ଜୀବନରେ ଖଦୀବସ୍ତ୍ର ପରିଧାନ, ସୂତାକାଟିବା କାର୍ଯ୍ୟ ଛାତ୍ରମାନଙ୍କୁ ସ୍ୱାବଲମ୍ବୀ ହେବାକୁ ଅନୁପ୍ରେରିତ କରିବା ସହ ବଳକା ସମୟର ସଦୁପଯୋଗ କର୍ମତତ୍ପର କରିଥାଏ । ଆତ୍ମନିଯୁକ୍ତି କ୍ଷେତ୍ରରେ ଏହା ବେଶ୍ ଖୋରାକ୍ ଯୋଗାଇ ଥାଏ । ବେକାର ସମସ୍ୟା ବିରୁଦ୍ଧରେ ଏହା ତ ଏକ ସଫଳ ପଦକ୍ଷେପ । ମାନବିକ ଶକ୍ତିର ସୁବିନିଯୋଗ ତଥା ବିକାଶ ଦିଗରେ ଏହା ସହାୟକ ହୋଇଥାଏ । ଏହା ବି ରାଷ୍ଟ୍ରୀୟ ଅର୍ଥନୈତିକ ପ୍ରଗତିରେ ଏକ ବଳିଷ୍ଠ ତଥା ଗଠନମୂଳକ ଭୂମିକା ନିଭାଇଥାଏ ।

ଚରିତ୍ର ଗଠନ ହିଁ ଶିକ୍ଷାର ସାର୍ଥକତା । ଏହା ମଣିଷକୁ ସଚ୍ଚରିତ୍ର ସଂଯମୀ ବା ଦୂରଦର୍ଶୀ ହେବାକୁ ସୁଶିକ୍ଷା ଦେଇଥାଏ । ଗାନ୍ଧିଜୀଙ୍କ ମତରେ - 'If wealth is lost, nothing is lost. If health is lost, something is lost. If character is lost, everything is lost.'

ଶିକ୍ଷାରେ ସୁନ୍ଦର ଅକ୍ଷର ଏକ ପ୍ରମୁଖ ଭୂମିକା ନିଭାଇଥାଏ । ଅବଶ୍ୟ ଗାନ୍ଧିଜୀଙ୍କ ଜୀବନକାଳ ଭିତରେ ତାଙ୍କର ଅକ୍ଷର କଦର୍ଯ୍ୟ ଥିଲା । ଦକ୍ଷିଣ ଆଫ୍ରିକାକୁ ଓକିଲାତି କରିବାକୁ ଯାଇଥିବାବେଳେ ସେଠିକାର ଓକିଲମାନଙ୍କର ସୁନ୍ଦର ଅକ୍ଷର ଦେଖିଲା ପରେ, ନିଜର କଦର୍ଯ୍ୟ ଅକ୍ଷର ପାଇଁ ସେ ଖୁବ୍ ଲଜ୍ଜିତ ହୋଇଥିଲେ । ପରେ ଭଲ ଅକ୍ଷର ଲେଖିବାର ଉଦ୍ୟମ କରି ସେ ଅସଫଳ ହୋଇଥିଲେ । ତାଙ୍କର ଏହି ତିକ୍ତ ଅନୁଭୂତିକୁ ଶିଖି ସେହି ଭୁଲ୍ ନକରିବା ପାଇଁ ସେ ଶିକ୍ଷାର୍ଥୀମାନଙ୍କୁ ଉପଦେଶ ଦେଇଥିଲେ । ବାପୁଜୀଙ୍କ ମତରେ - 'Bad handwriting should be regarded as a sign of an imperfect education. Every young man and women should understand that good handwriting is a necessary part of education.'

ଶିକ୍ଷାକୁ ଡିଗ୍ରୀ ହାସଲ ବା ଚାକିରି ପାଇଁ ଉଦ୍ଦିଷ୍ଟ ବୋଲି ଭାବି ସାର୍ଟିଫିକେଟ୍ ହାସଲ ଉଦ୍ଦେଶ୍ୟରେ ଆୟତ୍ତ କରିବା ଅନୁଚିତ୍ । ତଦ୍ଦ୍ୱାରା ଶିକ୍ଷାର ମୂଳ ଆଭିମୁଖ୍ୟ ଓ ମୌଳିକତା କ୍ଷୁଣ୍ଣ ହୁଏ । ଏହି ପର୍ଯ୍ୟାୟରେ ଗାନ୍ଧିଜୀ କହନ୍ତି - 'Everything should be learnt by heart' ଦକ୍ଷିଣ ଆଫ୍ରିକାର ଟଲ୍ଷ୍ଟୟ ଆଶ୍ରମ ତାଙ୍କୁ ଏ କ୍ଷେତ୍ରରେ ପ୍ରଭାବିତ କରିଥିଲା । ମାତୃଭାଷାରେ ଶିକ୍ଷାଦାନ, ଶିକ୍ଷାଗ୍ରହଣ ଉପରେ ସେ ସର୍ବାଧିକ ଗୁରୁତ୍ୱ ପ୍ରଦାନ କରିଥିଲେ । ତେଣୁ ସେ କହୁଥିଲେ - 'The mother tongue should be used as the medium of instruction of schools.'

ଶିକ୍ଷାନୀତିର ପାଠ୍ୟଖସଡ଼ାରେ ଏ ଦେଶର ଜାତୀୟ ସଂହତି ଧର୍ମନିରପେକ୍ଷତା, ପରମ୍ପରା ଓ ସଂସ୍କୃତିର ପ୍ରତିଫଳନ ରହିବା ବିଧେୟ ବୋଲି ବାପୁଜୀ କହୁଥିଲେ । ଏହା ଶିକ୍ଷାର୍ଥୀକୁ ସ୍ୱଦେଶପ୍ରେମୀ କରି ଗଢ଼ିଥାଏ । ଫଳତଃ ମେଧାବି ପ୍ରତିଭାମାନେ ସୁଖସୁବିଧା ହାସଲ ପାଇଁ ବିଦେଶକୁ ଯିବାକୁ ଇଚ୍ଛା ବା ଆଗ୍ରହ କରିବେ ନାହିଁ । ତଦ୍ଦ୍ୱାରା 'ମେଧାଚାଲାଣ' (brain drain) ରୋକା ଯାଇପାରିବ । ଗାନ୍ଧିଜୀଙ୍କ ସେ ସମୟର ଏହି ଆଶଙ୍କାର ସର୍ବକାଳୀନତା ଏବେ ପରିଦୃଷ୍ଟ । ସୁତରାଂ, ତା'ର ପ୍ରାସଙ୍ଗିକତା ଆଜି ଉପଲବ୍ଧ । ଶାରୀରିକ ମାନସିକ ଆଭିବୃଦ୍ଧି ଯେପରି ଯଥାନୁରୂପ ହୋଇପାରେ ସେଥିପ୍ରତି ଶିକ୍ଷା ଅଙ୍ଗୀକାରବଦ୍ଧ ରହିବା ଉଚିତ । ଏହା ଦ୍ୱାରା ଶିକ୍ଷାର୍ଥୀଟି ପୂର୍ଣ୍ଣାଙ୍ଗ ଶିକ୍ଷା (Integrated Education) ପାଇ ଆଦର୍ଶ ବ୍ୟକ୍ତିତ୍ୱର ଅଧିକାରୀ ହୋଇଥାଏ । ପ୍ରଚଳିତ ଶିକ୍ଷାରେ ବସ୍ତୁବାଦର ପ୍ରାବଲ୍ୟତା ଥିବାବେଳେ ଭୋଗବାଦ ଆଡ଼କୁ ଏହା ନେଇଯାଏ । ଏଥିରେ ଆଧାତ୍ମିକତା ଖୁବ୍ କ୍ଷୀଣ । ଅହିଂସା, ସତ୍ୟ, ବିଶ୍ୱଭ୍ରାତୃତ୍ୱଭାବ, 'ବସୁଧୈବ କୁଟୁମ୍ବକମ୍'ର ମହାନ୍‌ଭାବ ସେତେ ନଥିବା ଉଦ୍‌ବେଗର କଥା ବୋଲି ସେ ବିଚାର କରୁଥିଲେ । ସମାଜର ସମକାଳୀନତା ଓ ତତ୍କାଳିକତାର ଘୋର ଅଭାବ ଆଜିର ଶିକ୍ଷାରେ ରହିଥିବାର ସେ ଅନୁଭବ କରିଥିଲେ । ଗାନ୍ଧିଜୀଙ୍କ ପରିକଳ୍ପିତ ରାମରାଜ୍ୟ ଗଠନ ଦିଗରେ କେଉଁ ଶିକ୍ଷା ଆବଶ୍ୟକ ସେ ସମ୍ପର୍କରେ ସେ କହନ୍ତି - 'Education is a means for the preparation of Life whose aim is self-realisation.'

ବ୍ରିଟିଶ ସରକାର ଅମଳର ମ୍ୟାକ୍‌ଲେଙ୍କ ଶିକ୍ଷାନୀତିକୁ ଭାରତରେ ଲଦି ଦିଆଯାଇଥିବା ଏବଂ ଦୀର୍ଘକାଳ ଧରି ଏହାର ପ୍ରଚଳନ ଆମକୁ ପାଶ୍ଚାତ୍ୟ ଶୈଳିକୁ ଅନୁକରଣ କରିବାକୁ ଯାଇ ଆମର ହନୁକରଣ ହୋଇଛି । ଏଥିରେ କେବଳ ପ୍ରଚଳିତ ଚାକିରିଜୀବୀ ଶ୍ରେଣୀ ସୃଷ୍ଟି ଓ ପ୍ରଚଳିତ ସୁବିଧା ସୁଯୋଗ ଆଗରେ ଅଣଚାକିରି କ୍ଷେତ୍ରରେ ତା'ର ଅଭାବ ଆମ ଦେଶର ଶିକ୍ଷାକୁ ସାର୍ବଜନୀନ ଓ ସର୍ବକାଳୀନ କରିପାରି ନାହିଁ । ବରଂ କେବଳ ବେକାର, କର୍ମ ବିମୁଖତା ଓ ଶ୍ରେଣୀ ବିଭାଗକୁ ଏହା ଦୃଢ଼ୀଭୂତ କରିଛି । ପରବର୍ତ୍ତୀ ସମୟର ୧୯୮୬ର ଶିକ୍ଷାନୀତି ମଧ୍ୟ ଆଶାଜନକ ସଫଳତା ପାଇ ପାରିନାହିଁ । ବରଂ ବ୍ୟକ୍ତି ଚରିତ୍ରର ଅବକ୍ଷୟ ଘଟିଛି । ଯୁବକମାନଙ୍କୁ ଏହା ସହରାଭିମୁଖୀ କରିଛି । ଗ୍ରାମ୍ୟ ଜୀବନ ଓ ଗ୍ରାମ୍ୟ ବିକାଶ ପଙ୍ଗୁ ହୋଇଛି । ଏହି ଅସଜଡ଼ା ତଥା ଅଲୋଡ଼ା ଶିକ୍ଷାନୀତି ଯୋଗୁଁ ଦେଶର ଅର୍ଥ, ଶକ୍ତି, ସମୟ, ମାନବିକ ସମ୍ବଳ ଶକ୍ତିର ଦୁରୁପଯୋଗ ଘଟିଛି । ଯିଏ ଯେଉଁ ଗୁଣର ଅଧିକାରୀ, ତା'ର ବିକାଶ ପାଇଁ ସେ ସୁବିଧା - ସୁଯୋଗ ପାଉ ନାହିଁ । ଏକ ସମୃଦ୍ଧ ଭାରତ ଗଠନରେ କୃଷକ, ସୈନିକ, ବୈଜ୍ଞାନିକ, ଡାକ୍ତର ଇଞ୍ଜିନିୟର, ସାହିତ୍ୟିକ, ଐତିହାସିକ, କ୍ରୀଡ଼ାବିତ୍, ଶିକ୍ଷାବିତ୍ ପ୍ରଭୃତି ବିଭିନ୍ନ ବର୍ଗର ନାଗରିକ ଦରକାର । ଯା'ର ଯେଉଁ ଦିଗରେ ଆଗ୍ରହ ଅଛି ତା'ର ବିକାଶ ପାଇଁ ଶିକ୍ଷାରେ ସେପରି ସୁବ୍ୟବସ୍ଥା ରହିବା ଆବଶ୍ୟକ । ପ୍ରଚଳିତ ଶିକ୍ଷା ଏବେ ପରିବର୍ତ୍ତିତ ପରିସ୍ଥିତିରେ ସମୟର ଆହ୍ୱାନ ଅନୁଯାୟୀ ଦେଶ ପାଇଁ ପୁରୁଣା ଓ ଅଲୋଡ଼ା ହୋଇଥିବାରୁ ଏହାର ସଂସ୍କାର ଆବଶ୍ୟକ । ବାପୁଜୀଙ୍କ ପ୍ରଦତ୍ତ ଆଦର୍ଶ ଶିକ୍ଷା, ବୈଷୟିକ ଧନ୍ଦାମୂଳକ ଶିକ୍ଷା, ମାନବିକ ମୂଲ୍ୟବୋଧ ଭିତ୍ତିକ ଶିକ୍ଷାକୁ ଏ ସମୟରେ ପ୍ରାଧାନ୍ୟ ଦେବା ଦରକାର । ଶିକ୍ଷା ଆଉ ଚାକିରିଆ ଶ୍ରେଣୀ ସୃଷ୍ଟି ନକରୁ । ଏହି ପରିପ୍ରେକ୍ଷୀରେ ଦେଶସାରା ପ୍ରଚଳିତ ଶିକ୍ଷାର ପୃଷ୍ଠଭୂମିରେ ଘରୋଇ ଟିଉସନ୍, ପରୀକ୍ଷାରେ ଅସାଧୁ ଉପାୟ ଅବଲମ୍ବନ ପ୍ରଭୃତିର ସମୀକ୍ଷା ବା ପୁନର୍ବିଚାର କରାଯିବା ଉଚିତ ।

ଏ ଶତାବ୍ଦୀ ପାଇଁ ପ୍ରଚଳିତ ଶିକ୍ଷା ଢାଞ୍ଚାରେ ପରିବର୍ତ୍ତନ ଏକାନ୍ତ ଆବଶ୍ୟକ । ବାପୁଜୀଙ୍କ ପରିକଳ୍ପିତ ଶିକ୍ଷାର ଛାଇରେ ଏହି ପରିବର୍ତ୍ତିତ ଶିକ୍ଷା ପ୍ରସ୍ତୁତି ଅପରିହାର୍ଯ୍ୟ । ପ୍ରଥମତଃ ପ୍ରାଥମିକ ଶିକ୍ଷାକୁ ସମସ୍ତଙ୍କ





ପାଇଁ ବାଧ୍ୟତାମୂଳକ କରିବା ସହ କ୍ରୀଡ଼ା-କସରତ, ହସ୍ତକର୍ମ, ପ୍ରକୃତି ପର୍ଯ୍ୟବେକ୍ଷଣ, ପରିବେଶ ସୁରକ୍ଷା ସନ୍ନିବେଶିତ ହେବା ଦରକାର । ମାଧ୍ୟମିକ ସ୍ତରରେ ଧନ୍ଦାମୂଳକ ଶିକ୍ଷାକୁ ସଂଯୋଜିତ କରିବା ମଧ୍ୟ ଉଚିତ । ଇଚ୍ଛାଧୀନ ବିଷୟ ଓ ସାଧାରଣ ବିଷୟର (Uniform Course) ବ୍ୟବସ୍ଥା ରଖାଯିବା ଆବଶ୍ୟକ । ଡିଗ୍ରୀ ବା ଶେଷ ପରୀକ୍ଷାର ଫଳକୁ ସାଧାରଣ ନିଯୁକ୍ତିରେ ପ୍ରବେଶର ମାନଦଣ୍ଡ ନରହି ସମ୍ପୃକ୍ତ ବିଭାଗର କାର୍ଯ୍ୟ ଧାରାକୁ ଏଥିରେ ପରୀକ୍ଷା କରାଯିବା ଦରକାର । ବିଭିନ୍ନ ଧନ୍ଦାମୂଳକ ଶିକ୍ଷାକୁ ଶିକ୍ଷାର୍ଥୀର ଚୟନ ଅନୁସାରେ ବାଧ୍ୟତାମୂଳକ କରାଗଲେ କଲେଜ ସ୍ତରର ପିଲା ତଥା ମାଧ୍ୟମିକ ସ୍ତରରୁ ଏହା ବ୍ୟକ୍ତିକୁ ସ୍ୱାବଲମ୍ବୀ କରିପାରନ୍ତା । ସେହିପରି ମେଧାବି ଉଚ୍ଚଶିକ୍ଷିତମାନେ ଦେଶପାଇଁ ସେମାନଙ୍କର ମେଧା (Talency) ବିନିଯୋଗରେ ସେବା ଯୋଗାଇ ବିଦେଶକୁ ନଯାଇ ସେଠାରେ ସ୍ଥାୟୀ ବାସିନ୍ଦା ନହେବା ଦିଗରେ କ୍ଷେତ୍ର ପ୍ରସ୍ତୁତି ମଧ୍ୟ ହେବା ଦରକାର । ଆମର ସାମାଜିକ ଚଳଣି, ସଂସ୍କୃତିର ପ୍ରତିଫଳନ ଶିକ୍ଷାରେ ସନ୍ନିବେଶିତ ନହେଲେ ଭବିଷ୍ୟତ ପିଢ଼ିର ନାଗରିକମାନେ ଆମକୁ ନ୍ୟୁନ ଦୃଷ୍ଟିରେ ବିଚାର କରିବେ । ଏଥିସହ ଏହି ପରିବର୍ତ୍ତିତ ଶିକ୍ଷାରେ ବ୍ୟକ୍ତି ଚରିତ୍ର ଓ କାର୍ଯ୍ୟର ସ୍ୱଚ୍ଛତା ଓ ଉତ୍ତର ଦାୟିତ୍ୱବୋଧ (Accountability)ର ପୁନର୍ଗଠନ ପାଇଁ ସୁପରିକଳ୍ପିତ ବ୍ୟବସ୍ଥା ରହିବା ଉଚତ୍ । ଶିକ୍ଷା ନିର୍ଦ୍ଧାରକମାନେ ଶିକ୍ଷାସହ ସମ୍ପୃକ୍ତ ଶିକ୍ଷାବିତ୍, ଶିକ୍ଷାପ୍ରେମୀ ଓ ଚିନ୍ତାଶୀଳ ବୁଦ୍ଧିଜୀବୀମାନଙ୍କ ପରାମର୍ଶ ଗ୍ରହଣ କରିବା ସର୍ବାଦୌ ଆବଶ୍ୟକ । ତା'ହେଲେ ଆମ ଦେଶ ଏକ ବିକଶିତ ରାଷ୍ଟ୍ରରେ ପରିଣତ ହେବା ସହ ଏ ଦେଶର ଅବକ୍ଷୟ ରୁଗ୍ଣ ଚିନ୍ତା-ଚେତନା, ବିକାଶ ଦିଗରେ ନୂଆ ସୂର୍ଯ୍ୟଟିଏ ଉଇଁ ଆସିବ । ଗାନ୍ଧିଜୀଙ୍କ ପରିକଳ୍ପିତ ରାମରାଜ୍ୟ ଏବଂ ସ୍ୱରାଜ୍ୟ ସୁ-ରାଜ୍ୟରେ ସାରା ବିଶ୍ୱକୁ ବାଟ ଦେଖାଇବ ।

ଆଡ଼ଭୋକେଟ୍ ଓ 'ସମାଜ' ପ୍ରତିନିଧି
ଭୁବନ, ଢେଙ୍କାନାଳ- ୭୫୯୦୧୭

---

* ଜଣେ ବିଶ୍ୱାସ ଦ୍ୱାରା ଅସମ୍ଭବକୁ ସମ୍ଭବ କରିପାରେ । ... ମହାତ୍ମା ଗାନ୍ଧୀ

ସଂଗ୍ରହାକ - ପ୍ରତାପଚନ୍ଦ୍ର ମହାନ୍ତି

---

# ବିଜୟା ଦଶମୀ

ପ୍ରତିମା ମହାନ୍ତି

ଶେଫାଳିର ମହକରେ ଝୁମି ଝୁମି
ପ୍ରକୃତିର ପ୍ରାଂଗଣରେ
ଶରତ ଆସିଛି ଏବେ
ସଙ୍ଗେ ନେଇ ବିଜୟା ଦଶମୀ ।
ଦେଖ ମାତା କୃପାମୟୀ
ସୁସଜ୍ଜିତ ଏଇ ତବ ପୂଜା ବେଦୀ ପରେ
ନବ ବଧୂ ସମ
'ଅହଂକାର' ହୋଇଛି ସଜେଇ,
ଅତି ସହଜରେ
ଉଡ଼ି ଉଡ଼ି ବୁଲେ
ଗର୍ବ, ଦମ୍ଭ, ଅଭିମାନ ଏଠି
ବିପ୍‌ପଣୀର ସମ୍ଭାର ମେଲାଇ ।
ପଟ୍ଟବସ୍ତ୍ର ପରିହିତ ପଣ୍ଡିତ ପୂଜକ
ଉଚ୍ଚସ୍ୱରେ କରୁଥାଏ ମନ୍ତ୍ର ଉଚ୍ଚାରଣ
ଅର୍ଥ ଲିପ୍‌ସୁ ଆଖିରେ ତା'
ସ୍ୱାର୍ଥର ପିପାସା ।
ପାରୁଛ କି ଦେଖି ମାତା
ପୂଜା ଆଢୁଆଳେ
ଧର୍ମ ନାମେ ଅଧର୍ମର ଲୀଳା
ଚାନ୍ଦା ଅର୍ଥେ ନିଶା ସକ୍ତ
ଭକ୍ତଗଣ ତୋ'ର
ପୂଜାକୁ ବାହାନା କରି
ଚେଲା ଚାମଣ୍ଡାଙ୍କୁ ଧରି
କରୁଥାନ୍ତି ଖେଳା ।
ହେ ମାତା ! ଶକ୍ତି ପ୍ରଦାୟିନୀ
କଳୁଷ ହାରିଣୀ ଦେବୀ
ଦୟାକର ଦୟାକର ବାରେ
ସତ୍ୟ ଯଦି ଆବିର୍ଭାବ ତୁମ
ଏ ମହୀ ମଣ୍ଡଳେ
ସଂହାରିଣୀ ରୂପ ଧରି
ଦୁଷ୍ଟର ବିନାଶ କରି
ଧନ୍ୟ କର ଏ ମର୍ତ୍ତ୍ୟମଣ୍ଡଳ
ପାପର ବିନାଶ ହେଉ
ଅନ୍ଧକାର ଦୂରେ ଯାଉ
ସାଧୁସନ୍ଥ ହିତ ଅର୍ଥେ
କୃପା ତବ ଝରିଯାଉ
ଆଜିର ଏ ପବିତ୍ର ତିଥିରେ ଏଇ ନିବେଦନ ମୋର
ଜଗତ୍‌ମାତା ଘେନା କର ।

ଗଣେଶ୍ୱରପୁର ବାଳିକା
ଉଚ୍ଚ ବିଦ୍ୟାଳୟ, ପୁରୀ





# ବିରଳ ବ୍ୟକ୍ତିତ୍ୱ - ଲାଲବାହାଦୂର ଶାସ୍ତ୍ରୀ

ହରିହର ପ୍ରସାଦ ମହାଲିକ

**ସ୍ୱା**ଧୀନତା ପରବର୍ତ୍ତୀ ଭାରତରେ ଆଜି ପର୍ଯ୍ୟନ୍ତ ବିଭିନ୍ନ ରାଜନୈତିକ ଦଳର ନେତାମାନେ ପ୍ରଧାନମନ୍ତ୍ରୀ ପଦବୀରେ ରହିଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ସ୍ୱର୍ଗତଃ ଲାଲବାହାଦୂର ଶାସ୍ତ୍ରୀ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିପାରିଛନ୍ତି । ତାଙ୍କର ସରଳ, ନିଷ୍କପଟ ଆଚରଣ, ଅହଙ୍କାର ଶୂନ୍ୟ ବ୍ୟକ୍ତିତ୍ୱ ଓ କର୍ତ୍ତବ୍ୟନିଷ୍ଠା ତାଙ୍କୁ ଚିରସ୍ମରଣୀୟ କରି ରଖିବ । ଛୋଟିଆ ମଣିଷଟିଏ, ଅତି ସାଦାସିଧା ପୋଷାକ, ମୁଣ୍ଡରେ ଗାନ୍ଧୀ ଟୋପି, ଖଦଡ଼ ଧୋତି, ପଞ୍ଜାବୀ ପିନ୍ଧା ଏହି ନେତା ଜଣକ ମାତ୍ର ଦେଢ଼ବର୍ଷ ପ୍ରଧାନମନ୍ତ୍ରୀ ରହିଥିଲେ ମଧ୍ୟ ଦେଶକୁ ଏକ ନୂତନ ଦିଗଦର୍ଶନ ଦେଇଯାଇଛନ୍ତି ।

ପଣ୍ଡିତ ଜବାହରଲାଲ ନେହେରୁ ଦୀର୍ଘ ୧୭ ବର୍ଷ ଭାରତର ଅପ୍ରତିଦ୍ୱନ୍ଦ୍ୱୀ ନେତା ତଥା ପ୍ରଧାନମନ୍ତ୍ରୀ ରହିବା ପରେ ୧୯୬୪ ମେ ମାସରେ ତାଙ୍କର ଦେହାନ୍ତ ହୋଇଯାଇଥିଲା । ଗୁଲଜାରୀଲାଲ ନନ୍ଦା କିଛି ଦିନ ଅସ୍ଥାୟୀ ପ୍ରଧାନମନ୍ତ୍ରୀ ରହିବା ପରେ କେନ୍ଦ୍ର ମନ୍ତ୍ରିମଣ୍ଡଳର ନିଷ୍ପତ୍ତିକ୍ରମେ ଲାଲବାହାଦୂର ଶାସ୍ତ୍ରୀଙ୍କୁ ସର୍ବସମ୍ମତ ନେତା ନିର୍ବାଚିତ କରାଯାଇଥିଲା । ସେତେବେଳେ କଂଗ୍ରେସ ଦଳରେ ଏସ୍.କେ. ପାଟିଲ, ଅତୁଲ୍ୟ ଘୋଷ, କ୍ରିଷ୍ଣା ମେନନ୍, ଟି.ଟି. କ୍ରିଷ୍ଣମାଚାରୀ, ନୀଲମ ସଞ୍ଜୀବ ରେଡ୍ଡି, ମୋରାରଜୀ ଦେଶାଇ, ଗୁଲଜାରୀଲାଲ ନନ୍ଦାଙ୍କ ଭଳି ବହୁ ପ୍ରତିଭାଶାଳୀ ନେତା ଥିଲେ ମଧ୍ୟ ଲାଲବାହାଦୂରଙ୍କୁ ହିଁ ପ୍ରଧାନମନ୍ତ୍ରୀ ପଦ ପାଇଁ ବଛା ଯାଇଥିଲା । ସ୍ୱର୍ଗତଃ ଶାସ୍ତ୍ରୀ ୧୯୬୪ ଜୁନ୍ ୨ ତାରିଖରୁ ୧୯୬୬ ଜାନୁଆରୀ ୧୦ ତାରିଖ ପର୍ଯ୍ୟନ୍ତ ଦେଶର ପ୍ରଧାନମନ୍ତ୍ରୀ ରହିଥିଲେ । ତାଙ୍କର 'ଜୟ ଜବାନ, ଜୟ କିଷାନ' ଧ୍ୱନି ସମଗ୍ର ଦେଶରେ ନୂତନ ଉଦ୍ଦୀପନା ସୃଷ୍ଟି କରିଥିଲା ।

ଉତ୍ତରପ୍ରଦେଶର ବାରାଣସୀ ନିକଟବର୍ତ୍ତୀ ମୋଗଲସରାଇ ଗ୍ରାମରେ ଏକ ଦରିଦ୍ର ପରିବାରରେ ୧୯୦୪ ମସିହା ଅକ୍ଟୋବର ୨ ତାରିଖରେ ତାଙ୍କର ଜନ୍ମ । ପିତା ଶାରଦା ପ୍ରସାଦ ଶ୍ରୀବାସ୍ତବ ଏକ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକ ଥିଲେ । ଲାଲବାହାଦୂର ମାତ୍ର ଦେଢ଼ବର୍ଷ ବୟସରେ ନିଜ ପିତାଙ୍କୁ ହରାଇଥିଲେ । ଉତ୍କଟ ଦାରିଦ୍ର୍ୟ, ଅଭାବ ଅନଟନ ମଧ୍ୟରେ ମାତା ରାମଦୁଲାରୀ ଲାଲୁଙ୍କ ସମେତ ଆଉ ଦୁଇ କନ୍ୟାଙ୍କ ଭରଣପୋଷଣ କରିଥିଲେ । ମାତ୍ର ଦାରିଦ୍ର୍ୟର କଷାଘାତ ସହ୍ୟ କରିନପାରି ରାମଦୁଲାରୀ ପିଲାମାନଙ୍କୁ ନେଇ ନିଜ ବାପଘରକୁ ଚାଲି ଯାଇଥିଲେ । ସେହିଠାରେ ଲାଲବାହାଦୂରଙ୍କ ବାଲ୍ୟ ଶିକ୍ଷା ଆରମ୍ଭ ହୋଇଥିଲା । ଗ୍ରାମରେ ପ୍ରାଥମିକ ଶିକ୍ଷା ଶେଷକରି ହରିଶ୍ଚନ୍ଦ୍ର ବିଦ୍ୟାପୀଠରେ ସେ ଉଚ୍ଚ ମାଧମିକ ଶିକ୍ଷା ଲାଭ କରିଥିଲେ ।

ଲାଲବାହାଦୂରଙ୍କ ପାରିବାରିକ ଅବସ୍ଥା ସ୍ୱଚ୍ଛଳ ନଥିବାରୁ ସେ ଉଚ୍ଚଶିକ୍ଷା ପାଇ ପାରିନଥିଲେ । ୧୯୨୧ରେ ସେ ଗାନ୍ଧିଜୀଙ୍କ ଦ୍ୱାରା ସ୍ଥାପିତ କାଶୀ ଜାତୀୟ ବିଦ୍ୟାପୀଠରେ ସଂସ୍କୃତ ଅଧ୍ୟୟନ କଲେ । ସେଠାରେ ବିଦ୍ୟାର୍ଥୀମାନଙ୍କୁ କଠୋର ସଂଯମ, ନିଷ୍ଠା, ଚରିତ୍ରବତ୍ତା ଓ ଅନୁଶାସନ ମଧ୍ୟରେ ରହିବାକୁ ପଡୁଥିଲା । ୧୯୨୫ରେ ସେ 'ଉପାଧି' ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି 'ଶାସ୍ତ୍ରୀ' ଉପାଧି ଲାଭ କଲେ । ବିଦ୍ୟାପୀଠରେ ଅଧ୍ୟାପକମାନଙ୍କ ସୁପାରିଶକ୍ରମେ ଲାଲବାହାଦୂରଙ୍କୁ 'ଲୋକସେବକ ମଣ୍ଡଳ'ର ସଭ୍ୟ ରୂପେ ନିଯୁକ୍ତି ମିଳିଲା । ତାଙ୍କର କାର୍ଯ୍ୟଦକ୍ଷତା, କର୍ତ୍ତବ୍ୟନିଷ୍ଠା ଓ ଦେଶପ୍ରେମ ଯୋଗୁଁ ତାଙ୍କୁ ଲୋକସେବକ ମଣ୍ଡଳର ଆଜୀବନ ସଭ୍ୟ କରାଯାଇଥିଲା । କାଶୀ ବିଦ୍ୟାପୀଠର ଅଧ୍ୟକ୍ଷ ଡଃ ଭଗବାନ ଦାସ ତାଙ୍କ ରାଜନୈତିକ ଜୀବନର ଗୁରୁ ଥିଲେ ।

୧୯୨୮ ମସିହାରେ ମା'ଙ୍କ ଅନୁରୋଧ ରକ୍ଷାକରି ୨୩ ବର୍ଷ ବୟସରେ ସେ ଲଳିତା ଦେବୀଙ୍କୁ ବିବାହ କଲେ । ଉତ୍କଟ ଅଭାବ, ଅନଟନ ଓ ଦାରିଦ୍ର୍ୟ ମଧ୍ୟରେ ଥାଇ ମଧ୍ୟ ଲାଲବାହାଦୂର ଜନସେବା ଓ ଦେଶ ସେବାକୁ ଜୀବନର ବ୍ରତ ଭାବରେ ଗ୍ରହଣ କରିନେଲେ । ପତ୍ନୀ ଲଳିତା ଦେବୀ ମଧ୍ୟ ପତିଙ୍କ ସରଳ ଜୀବନଯାପନ ପ୍ରଣାଳୀକୁ ଗ୍ରହଣ କରିନେଲେ ।

୧୯୩୦ ମସିହା ବେଳକୁ ଭାରତରେ ସର୍ବତ୍ର ସ୍ୱାଧୀନତା ଆନ୍ଦୋଳନର ନିଆଁ କୁହୁଳୁଥାଏ । ପଚିଶ ବର୍ଷ ବୟସ୍କ ଲାଲବାହାଦୂର ମାତାଙ୍କ ଅନୁମତି ନେଇ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଲେ । ବିଭିନ୍ନ ସଭା ସମିତିରେ ଭାଷଣ ଦେଇ ବ୍ରିଟିଶ ସରକାରଙ୍କ କଠୋର ଦମନଲୀଳାର ସମାଲୋଚନା କରିବାକୁ ଆରମ୍ଭ କଲେ । ଫଳରେ ସେ ବାରମ୍ବାର ଗିରଫ ହୋଇ ପ୍ରାୟ ୬ ଥର ଜେଲରେ ରହିଲେ । ଜେଲରେ ପ୍ରାୟ ୯ ବର୍ଷ ରହିବା ସମୟରେ ସେ ବହୁ ପୁସ୍ତକ ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ । ସେ ଜେଲରେ ଥିବା ସମୟରେ ତାଙ୍କ ପୁଅ ଓ ଝିଅ ଗୁରୁତର ରୋଗାକ୍ରାନ୍ତ ହେଲେ । ଚିକିତ୍ସା ଅଭାବରୁ

ଝିଅର ମୃତ୍ୟୁ ହୋଇଗଲା । ଜେଲ କର୍ତ୍ତୃପକ୍ଷଙ୍କ ଅନୁମତିକ୍ରମେ ସେ ଘରକୁ ଆସି ପୁଅର ଚିକିତ୍ସା ବ୍ୟବସ୍ଥା କରିବା ପରେ ଚୁକ୍ତି ଅନୁଯାୟୀ ପୁଣି ଜେଲକୁ ଫେରି ଯାଇଥିଲେ ।

୧୯୨୦ ମସିହାରେ ଶାସ୍ତ୍ରୀଜୀ କଂଗ୍ରେସରେ ଯୋଗ ଦେଲେ । ୧୯୪୬ ମସିହାରେ ସେ ଉତ୍ତର ପ୍ରଦେଶ ବ୍ୟବସ୍ଥାପକ ସଭାର ସଭ୍ୟ ରୂପେ ନିର୍ବାଚିତ ହୋଇ ପୋଲିସ ବିଭାଗ ମନ୍ତ୍ରୀ ହୋଇଥିଲେ । ୧୯୪୭ ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନ ହେବା ପରେ ଲାଲବାହାଦୂରଙ୍କୁ ନିଖିଳ ଭାରତ କଂଗ୍ରେସ କମିଟିର ସମ୍ପାଦକ ଭାବେ ନିଯୁକ୍ତି ମିଳିଥିଲା । ଉତ୍ତରପ୍ରଦେଶରେ ମନ୍ତ୍ରୀ ହେବାପରେ ମଧ୍ୟ ସେ ଅତି ସରଳ ଜୀବନ ଯାପନ କରୁଥିଲେ । ସେ ନିଜ ସରକାରୀ ବଙ୍ଗଳାରୁ ଶୀତାତାପ ନିୟନ୍ତ୍ରକ ଯନ୍ତ୍ର ଉଠାଇ ଦେଇଥିଲେ । ମୋଟା ଖଦଡ଼ ଧୋତି ଓ ପଞ୍ଜାବୀ ପିନ୍ଧୁ ଥିଲେ । ସେ ଶାକାହାରୀ ଥିଲେ । କୌଣସି ପ୍ରକାର ବିଳାସ, ବ୍ୟସନ ବା ଦୁର୍ନୀତି ତାଙ୍କୁ ସ୍ପର୍ଶ କରିନଥିଲା ।

ତତ୍କାଳୀନ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁଙ୍କ ନିମନ୍ତ୍ରଣକ୍ରମେ ଶାସ୍ତ୍ରୀଜୀ ୧୯୫୨ ମସିହାରେ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଯୋଗ ଦେଲେ । ସେ ରେଳବାଇ ଓ ପରିବହନ ବିଭାଗର କ୍ୟାବିନେଟ ପାହ୍ୟା ମନ୍ତ୍ରୀ ଭାବେ ନିଜର କାର୍ଯ୍ୟ ଦକ୍ଷତା ପ୍ରଦର୍ଶନ କରିଥିଲେ । କିନ୍ତୁ ଦୁଇଥର ରେଳ ଦୁର୍ଘଟଣା ଘଟିବା ପରେ ସେ ଏଥିପାଇଁ ନିଜକୁ ଦାୟୀ କରି ମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ । ପ୍ରଧାନମନ୍ତ୍ରୀ ଯେତେ ବୁଝାଇଲେ ମଧ୍ୟ ସେ ଇସ୍ତଫା ପ୍ରତ୍ୟାହାର କଲେ ନାହିଁ । ଏହା ତାଙ୍କର କର୍ତ୍ତବ୍ୟନିଷ୍ଠା ଓ ଦାୟିତ୍ୱବୋଧର ପରିଚାୟକ । ମାତ୍ର ଆଜିକାଲି ସେଭଳି ଦାୟିତ୍ୱବୋଧ ବିରଳ ।

ପରବର୍ତ୍ତୀ ସମୟରେ ଲାଲବାହାଦୂର କେନ୍ଦ୍ର ଶିଳ୍ପ ଓ ବାଣିଜ୍ୟ ବିଭାଗ କ୍ୟାବିନେଟ ମନ୍ତ୍ରୀ ହୋଇଥିଲେ । ତାଙ୍କର ନିଷ୍ଠା ଓ କାର୍ଯ୍ୟଦକ୍ଷତା ଯୋଗୁଁ ପଣ୍ଡିତ ନେହେରୁ ଲାଲବାହାଦୂରଙ୍କୁ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ଭାବେ ନିଯୁକ୍ତି ଦେଇଥିଲେ । ଶାସ୍ତ୍ରୀଜୀ ଯାହା କରିବାକୁ ଚାହୁଁଥିଲେ ଓ ନିଷ୍ପତ୍ତି କରୁଥିଲେ ତାହା କରୁଥିଲେ । ସେ ଥିଲେ କର୍ମଠ, ନିରଳସ ଓ ଅହଂଭାବ ଶୂନ୍ୟ କର୍ମଯୋଗୀ । ସେ ଅତ୍ୟନ୍ତ ଶାନ୍ତ ଓ ସରଳ ସ୍ୱଭାବର ଥିବାରୁ ସାଧାରଣ ଲୋକେ ନିଜର ଅଭାବ ଅସୁବିଧା ତାଙ୍କୁ ସହଜରେ ଜଣାଇ ପାରୁଥିଲେ । ସେ ଜନସାଧାରଣଙ୍କ ସହିତ ମିଶୁଥିଲେ ଓ ସେମାନଙ୍କ ସମସ୍ୟା ଧୈର୍ଯ୍ୟର ସହିତ ଶୁଣି ତାର ପ୍ରତିକାର କରୁଥିଲେ । ତାଙ୍କ ପାଇଁ 'ଜେଡ଼ ପ୍ଲସ' ସିକ୍ୟୁରିଟି ବା ନିରାପତ୍ତା ବ୍ୟବସ୍ଥା ଦରକାର ନଥିଲା । ସେ ପ୍ରକୃତ ଜନ ପ୍ରତିନିଧି ଥିଲେ । ପରବର୍ତ୍ତୀ କାଳରେ ଶାସ୍ତ୍ରୀଜୀ ବିଭାଗ ବିହୀନ ମନ୍ତ୍ରୀଭାବେ ପ୍ରଧାନମନ୍ତ୍ରୀଙ୍କ ପରାମର୍ଶଦାତା ଥିଲେ ।

୧୯୬୨ ମସିହାରେ ଚୀନ ଭଳି ଏକ ପଡ଼ୋଶୀ ବନ୍ଧୁ ରାଷ୍ଟ୍ର ଭାରତ ଉପରେ ଅଚାନକ ଆକ୍ରମଣ କରି ବହୁ ଭାରତୀୟ ଅଞ୍ଚଳ ଦଖଲ କରି ନେଲା । ବହୁ ଭାରତୀୟ ସୈନ୍ୟ ମୃତାହତ ହେଲେ ଓ ଯୁଦ୍ଧବନ୍ଦୀ ହେଲେ । ସେଥିରେ ପ୍ରଧାନମନ୍ତ୍ରୀ ନେହେରୁ ଗୁରୁତର ମାନସିକ ଆଘାତ ପାଇଥିଲେ । ପଞ୍ଚଶୀଳ ନୀତି ଏବଂ ହିନ୍ଦୀ-ଚୀନି ଭାଇ ଭାଇ ଧ୍ୱନିର ବିଫଳତା ନେହେରୁଙ୍କୁ ବ୍ୟଥିତ କରିଥିଲା । ୧୯୬୪ରେ ନେହେରୁଙ୍କ ଦେହାନ୍ତ ହୋଇଗଲା । ଫଳରେ ଲାଲବାହାଦୂର ସର୍ବସମ୍ମତିକ୍ରମେ ଭାରତର ପ୍ରଧାନମନ୍ତ୍ରୀ ହେଲେ । ସେ ପ୍ରଧାନମନ୍ତ୍ରୀ ହେବାପରେ କେତେକ ନୂତନ ପରମ୍ପରା ସୃଷ୍ଟି କଲେ ଓ ବିରୋଧୀ ଦଳ ନେତାମାନଙ୍କୁ ବିଭିନ୍ନ ସରକାରୀ ଦାୟିତ୍ୱ ପ୍ରଦାନ କରିଥିଲେ ।

ସେ ପ୍ରଧାନମନ୍ତ୍ରୀ ଥିବାବେଳେ ୧୯୬୫ ସେପ୍ଟେମ୍ବର ମାସରେ ଭାରତ ଉପରେ ପାକିସ୍ଥାନ ଅଚାନକ ଆକ୍ରମଣ କଲା । ପାକିସ୍ଥାନ ଭାବିଥିଲା ନେହେରୁଙ୍କ ପରେ ଭାରତ ଦୁର୍ବଳ ହୋଇ ପଡ଼ିଥିବ, ତେଣୁ କାଶ୍ମୀରକୁ ଅନାୟାସରେ ଦଖଲ କରିନେବ । ମାତ୍ର ଶାସ୍ତ୍ରୀଜୀ ପାକିସ୍ଥାନର ଦୃଢ଼ ମୁକାବିଲା କଲେ । ତାଙ୍କର 'ଜୟ ଜବାନ, ଜୟ କିଷାନ' ଧ୍ୱନି ଦେଶବାସୀଙ୍କୁ ତଥା ଭାରତୀୟ ସାମରିକ ବାହିନୀକୁ ଏଭଳି ଉଦ୍‌ବୁଦ୍ଧ କରିଥିଲା ଯେ, ଭାରତୀୟ ସେନାବାହିନୀ ପାକିସ୍ଥାନ ଭିତରେ ପ୍ରବେଶ କରି ବହୁ ଅଞ୍ଚଳ ଦଖଲ କରି ଲାହୋର ଆଡ଼କୁ ମାଡ଼ି ଯାଇଥିଲେ । ପାକିସ୍ଥାନ ଆତଙ୍କିତ ହୋଇ ଜାତିସଂଘର ଶରଣାପନ୍ନ ହେଲା । ଫଳରେ ଜାତିସଂଘ ଓ ସୋଭିଏତ୍ ରୁଷ ପ୍ରଧାନମନ୍ତ୍ରୀ ଯୁଦ୍ଧ ବନ୍ଦ ପାଇଁ ନିବେଦନ କଲେ । ଶେଷରେ ରୁଷିଆର ତାସକେଣ୍ଟ ସହରରେ ପ୍ରଧାନମନ୍ତ୍ରୀ ଲାଲବାହାଦୂର ଶାସ୍ତ୍ରୀ, ପାକିସ୍ଥାନ ରାଷ୍ଟ୍ରପତି ଜେନେରାଲ ଆୟୁବ ଖାଁ ଓ ରୁଷ ପ୍ରଧାନମନ୍ତ୍ରୀ କୋସିଗିନ୍‌ଙ୍କ ମଧ୍ୟରେ ଶାନ୍ତି ଆଲୋଚନା ହୋଇ ଏକ ଶାନ୍ତି ଚୁକ୍ତି ସ୍ୱାକ୍ଷରିତ ହେଲା । ରୁଷ ପ୍ରଧାନମନ୍ତ୍ରୀଙ୍କ ମଧ୍ୟସ୍ଥତାରେ ଏହି ଚୁକ୍ତି କାର୍ଯ୍ୟକାରୀ ହେଲା । ଚୁକ୍ତି ଅନୁଯାୟୀ ଭାରତ ଦଖଲ କରିଥିବା ଅଞ୍ଚଳ ପାକିସ୍ଥାନକୁ ଫେରାଇ ଦିଆଗଲା ।

ମାତ୍ର ଦୁଃଖର ବିଷୟ, ସେହି ତାସକେଣ୍ଟଠାରେ ଶାସ୍ତ୍ରୀଜୀ ୧୯୬୬ ଜାନୁଆରୀ ୧୦ ତାରିଖରେ ଶାନ୍ତି ଚୁକ୍ତିରେ ସ୍ୱାକ୍ଷର କରିବା ପରେ ସେହିଦିନ ମଧ୍ୟରାତ୍ରିରେ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ପ୍ରାଣତ୍ୟାଗ କଲେ । ହୁଏତ ଶାନ୍ତି ଚୁକ୍ତିରେ ସ୍ୱାକ୍ଷର ପାଇଁ ତାଙ୍କ ଉପରେ ଚାପ ପ୍ରୟୋଗ କରାଯାଇଥିଲା, ଯାହା ଫଳରେ ସେ ଗୁରୁତର ମାନସିକ ଆଘାତ ପାଇଥିଲେ । ଶାସ୍ତ୍ରୀଜୀଙ୍କ ମୃତ୍ୟୁ ସମ୍ବାଦ ଭାରତବାସୀଙ୍କୁ ସ୍ତମ୍ଭୀଭୂତ କରି ଦେଇଥିଲା । ତାଙ୍କର ମରଶରୀର ଭାରତକୁ ଅଣାଗଲା ଓ ଲକ୍ଷ ଲକ୍ଷ ଦେଶବାସୀଙ୍କ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ମଧ୍ୟରେ ତାଙ୍କ ଶେଷକୃତ୍ୟ ସମ୍ପନ୍ନ ହୋଇଥିଲା ।

ଶାସ୍ତ୍ରୀଜୀ ଆଜି ନାହାନ୍ତି । କିନ୍ତୁ ତାଙ୍କର ସରଳତା, ତ୍ୟାଗପୂତ ଜୀବନ, ନିଷ୍ଠା ଓ ଦେଶପ୍ରେମ ତାଙ୍କୁ ଅମର କରି ରଖିଛି । ତାଙ୍କର ଦକ୍ଷତା ଓ କର୍ତ୍ତବ୍ୟନିଷ୍ଠା ପାଇଁ ତତ୍କାଳୀନ ରାଷ୍ଟ୍ରପତି ସର୍ବପଲ୍ଲୀ ରାଧାକ୍ରିଷ୍ଣନ ଶାସ୍ତ୍ରୀଜୀଙ୍କୁ ଦେଶର ସର୍ବୋଚ୍ଚ ସମ୍ମାନ 'ଭାରତ ରତ୍ନ' ଉପାଧିରେ ସମ୍ମାନିତ କରିଥିଲେ ।

ପି.ଆଇ.ବି.








# ସତ୍ୟବାଦୀ ବନବିଦ୍ୟାଳୟରେ ମୂଲ୍ୟବୋଧ ଶିକ୍ଷା

ନିର୍ମଳା କୁମାରୀ ମହାପାତ୍ର

**ବ୍ୟ**କ୍ତି ବିଶ୍ୱର ସଂକ୍ଷିପ୍ତ ସାର । ବ୍ୟକ୍ତିର ବଳିଷ୍ଠ କାର୍ଯ୍ୟ ପରିସରରେ ବିଶ୍ୱର ଅମୃତ କାବ୍ୟ ବିରଚିତ ହୁଏ । ଦୈନନ୍ଦିନ ଜୀବନରେ ସେହି 'ଭଲ' / 'ଉତ୍ତମ'ର ନଜିର କଥା କଥାକେ ଉପସ୍ଥାପିତ ହୋଇଥାଏ । ସେହି ଭଲ ବା ଉତ୍ତମଟି ବ୍ୟକ୍ତି/ସ୍ଥାନ/ଅନୁଷ୍ଠାନ/ବିଭବ ବା ସେହିପରି କିଛି ମୂର୍ତ୍ତ ବସ୍ତୁ ହୋଇଥାଇ ପାରନ୍ତି ଅଥବା ରୁଚି/ଆଗ୍ରହ/ଅନୁସନ୍ଧିତ୍ସା/ ଆଚରଣ ପରି କିଛି ଅମୂର୍ତ୍ତ (abstract) ଚିନ୍ତାଧାରା ହୋଇଥାଇପାରେ । ତେବେ ନଜିର/ଉଦାହରଣରେ ମୂର୍ତ୍ତ (concrete) ବସ୍ତୁ ସବୁ ପ୍ରଥମେ ଆସନ୍ତି ଓ ବହୁଳ ଭାବେ ବ୍ୟବହୃତ ହୁଅନ୍ତି । ମୂର୍ତ୍ତବସ୍ତୁ ଜରିଆରେ ଅମୂର୍ତ୍ତ ଚିନ୍ତାଧାରାର ଅବତାରଣା କରାଯାଇଥାଏ । ବର୍ତ୍ତମାନର ସମାଜ-ଦେଶ-ରାଷ୍ଟ୍ର-ବିଶ୍ୱ କଥା ଚିନ୍ତା କରାଯାଉ । ବାର୍ତ୍ତମାନିକ ସମସ୍ତ ଅସମତା-ଅସନ୍ତୁଳନ-ଅସନ୍ତୋଷ-ଅଶାନ୍ତି ପାଇଁ ଶିକ୍ଷା ବ୍ୟବସ୍ଥାକୁ ଦାୟୀ କରାଯାଇ ମୂଲ୍ୟବୋଧର ଅବକ୍ଷୟ ପ୍ରତି ନିଦାନ ଖୋଜା ଚାଲିଛି । ପରସ୍ପର ପ୍ରତି କାଦୁଅ ଫୋପଡ଼ା-ଫୋପଡ଼ି, ପରସ୍ପର ଦୋଷାରୋପ କରିବାରେ ଆଦର୍ଶ ଶିକ୍ଷାନୁଷ୍ଠାନ, ଆଦର୍ଶ ଶିକ୍ଷକ, ଶିକ୍ଷା ପଦ୍ଧତି ଆଲୋଚନା ପରିସରଭୁକ୍ତ ହେବା ଯଥାର୍ଥ । ସାକ୍ଷୀଗୋପାଳର ବନବିଦ୍ୟାଳୟ ଓ ସତ୍ୟବାଦୀ ଶିକ୍ଷା ପଦ୍ଧତିର ପର୍ଯ୍ୟାଲୋଚନା ଏବେ ଏକ ଆବଶ୍ୟକତା ବୋଲି ଅନୁଭୂତ ହୁଏ । ଅତଏବ ଅତି ସଂକ୍ଷେପରେ ବନବିଦ୍ୟାଳୟରେ ମୂଲ୍ୟବୋଧୀୟ ଶିକ୍ଷା ସଂପର୍କରେ ଧାରଣା କରିନେବା ।

ବିଶାଳ ସମୁଦ୍ର, ଅଗାଧ ଜଳ ସଂପଦ । ସମୁଦ୍ର ଜଳର ପ୍ରତିଟି ଅଣୁରେ ଲବଣ-ସତ୍ତା ରହିଥାଏ । ଗୋ-ମହିଷାଦିର କ୍ଷୀରର ପ୍ରତିଟି ବିନ୍ଦୁର ଘୃତାଂଶ ମିଶି କରିଥାଏ । ସେହିପରି ବ୍ୟକ୍ତି/ଅନୁଷ୍ଠାନର କାର୍ଯ୍ୟାବଳୀରେ ମୂଲ୍ୟବୋଧ ବିଛାଡ଼ି ହୋଇ ରହିଥାଏ । 'ମୂଲ୍ୟ' ତ ଅନୁଭବର କଥା, ସହଜବୋଧ୍ୟ ପାଇଁ ତାହାକୁ ଅଙ୍କରେ ପରିପ୍ରକାଶ କରାଯାଏ, ଯଥା- ଶହେରୁ ଶହେ/ଅଶୀ/ଷାଠିଏ/ପଚାଶ/ଚାଳିଶ କିମ୍ବା କ/ଖ/ଗ/ଘ/ଙ ବର୍ଗ (Grade O/A/B/C/D/E) ଇତ୍ୟାଦି । ତେବେ ଆମ ଦୃଷ୍ଟି ବଳୟରେ, ସ୍ଥିତ ତଥ୍ୟାବଳୀରୁ ସ୍ପଷ୍ଟ ଯେ ସାକ୍ଷୀଗୋପାଳର ବନ ବିଦ୍ୟାଳୟ ଥିଲା ଆଦର୍ଶସ୍ଥାନୀୟ ଓ ଉତ୍କୃଷ୍ଟ 'କ' ବର୍ଗର ଏକ ଶିକ୍ଷାନୁଷ୍ଠାନ ।

ପଣ୍ଡିତ ଗୋପବନ୍ଧୁ ଦାସଙ୍କର ପ୍ରିୟ ଶିକ୍ଷାନୁଷ୍ଠାନ ସାକ୍ଷୀ ଗୋପାଳର 'ବନ ବିଦ୍ୟାଳୟ' ବକୁଳ ଛୁରୀଅନା କୁଂଜରେ ସନ ୧୯୦୯ ମସିହା, ଅଗଷ୍ଟ ୧୨ ତାରିଖରେ ସ୍ଥାପିତ ହୋଇଥିଲା । ମାତ୍ର ୧୯ ଜଣ ଛାତ୍ରଙ୍କୁ ନେଇ ପ୍ରଥମେ ଏହା ମଧ୍ୟ ଇଂରାଜୀ ବିଦ୍ୟାଳୟ ଭାବେ ପ୍ରତିଷ୍ଠା ପାଇଥିଲା । ସ୍କୁଲଟିଏ ହେବ, ତା' ପାଇଁ ଦରକାର ଘର, ଶିକ୍ଷକ, ଶିକ୍ଷାର୍ଥୀ ଓ ଶିକ୍ଷା ଉପକରଣ ଇତ୍ୟାଦି ।ସେତେବେଳେ ମନ୍ଦିରର ବଙ୍ଗଳାରେ ପ୍ରଥମେ ସ୍କୁଲକାର୍ଯ୍ୟ ଚାଲିଲା । ବିଦ୍ୟାଳୟର ସଂପାଦକ ପଣ୍ଡିତ ଗୋପବନ୍ଧୁ ଦାସ ମନ୍ଦିର ପରିଚାଳନା ସମିତିକୁ ମନ୍ଦିରର ଉତ୍ତର-ପଶ୍ଚିମ ଦିଗରେ ଥିବା ଦୁଇ ଏକର ଜମିକୁ ବିଦ୍ୟାଳୟ ନାମରେ କବଲା କରିବା ପାଇଁ ଅନୁରୋଧ କରିଥିଲେ । ତାହା ହିଁ କାର୍ଯ୍ୟକାରୀ ହୋଇଥିଲା ।

ଗୋପବନ୍ଧୁଙ୍କର ସୁଦୂରପ୍ରସାରୀ ଚିନ୍ତା, ପ୍ରାଚୀନ ଗୁରୁକୁଳ ଆଶ୍ରମର ଆଦର୍ଶରେ ଯୁଗୋପଯୋଗୀ ଶିକ୍ଷା ଦର୍ଶନର ସମ୍ମିଶ୍ରଣରେ ଏକ ଉନ୍ନତ ବିଧିରେ ଶିକ୍ଷାଦାନ ବ୍ୟବସ୍ଥା ସେ ଚାହୁଁଥିଲେ । ତତ୍କାଳୀନ ସମୟ (ବିଂଶ ଶତାବ୍ଦୀର ପ୍ରଥମ ଦଶକ)ର ଅଗ୍ରଣୀ ମହାବିଦ୍ୟାଳୟ - ପୁନାର ଫର୍ଗୁସନ୍ କଲେଜକୁ ଦୃଷ୍ଟିରେ ରଖି ସେ ମୁକ୍ତବାୟୁ ବିଦ୍ୟାଳୟର ସଂରଚନା ଆରମ୍ଭ କରିଥିଲେ । ତେଣୁ ବର୍ଷାଦିନ ବ୍ୟତୀତ ଅନ୍ୟ ସବୁଦିନରେ ବୃକ୍ଷଛାୟାରେ ମୁକ୍ତବାୟୁରେ ଓ ବର୍ଷା ଚାରିମାସ ଛପର ଘରେ ପାଠ ପଢ଼ା ଯାଉଥିଲା । ବର୍ତ୍ତମାନ ମଧ୍ୟ ବନବିଦ୍ୟାଳୟରେ ସିମେଣ୍ଟ ଚଉକି-ମେଜ ଓ ସଭା ପ୍ରାଙ୍ଗଣ ବିଦ୍ୟମାନ ଅଛି ।

ସମସ୍ତଙ୍କୁ ଶିକ୍ଷାଲାଭର ସୁବିଧା ସୁଯୋଗ ଦେବା ଥିଲା ଏହି ବନବିଦ୍ୟାଳୟର ଉଦ୍ଦେଶ୍ୟ ଓ ଲକ୍ଷ୍ୟ । ଏହି ବିଦ୍ୟାଳୟ ଶିକ୍ଷାଦାନ ସହ ସରଳ ଓ ବିଳାସହୀନ ଜୀବନଯାପନ କରିବାର ପ୍ରୋତ୍ସାହନ ଦେଉଥିଲା । ପ୍ରାଚୀନ ଗୁରୁକୁଳ ରୀତିରେ ପାଠଦାନ, ବୋଧ ଓ ଉପଲବ୍ଧି ପାଇଁ ଯଥାଯଥ ଭାବେ ଶିକ୍ଷକମାନଙ୍କର ପ୍ରଯତ୍ନ, ଛାତ୍ରାବାସ ରହଣୀରେ ସରଳ ଜୀବନଯାପନର ଆଦର୍ଶ କଡ଼ାକଡ଼ି ଭାବେ ପାଳନ କରାଯାଉଥିଲା । ଏଠାରେ ବିଦ୍ୟାର୍ଥୀମାନଙ୍କର ଶାରୀରିକ, ମାନସିକ, ବୌଦ୍ଧିକ ତଥା ହାର୍ଦ୍ଦିକ ବିକାଶ ପାଇଁ ସବୁ ରକମର ସୁବିଧା ସୁଯୋଗ ରଖାଯାଇଥିଲା । କ୍ରୀଡ଼ା-କସରତ, ସଂଗୀତ, ତର୍କସଭା, ଶିଳ୍ପ କୃଷି, ଲୋକସେବା, ଭ୍ରମଣ, ପୁସ୍ତକ ପଠନ, ଧର୍ମ ଶିକ୍ଷା, ନୀତି ଶିକ୍ଷା,

ଆଲୋଚନା ସଭା ଆଦି ଜରିଆରେ ଛାତ୍ରମାନଙ୍କଠାରେ ନିହିତ ପ୍ରତିଭାର ବିକାଶ ପାଇଁ ଦୃଷ୍ଟି ଦିଆଯାଉଥିଲା । ଏହା ଥିଲା ସେ'କାଳର ଓଡ଼ିଶାର ଏକ ଜଣାଶୁଣା ମଣିଷଗଢ଼ା କାରଖାନା । ଏତଦ୍ ବ୍ୟତୀତ ଜନସାଧାରଣଙ୍କୁ ସଚେତନ କରାଇବା ପାଇଁ ସାଧାରଣ ଶିକ୍ଷା ଦେବା ଥିଲା ଏହି ବିଦ୍ୟାଳୟର ମୌଳିକ ଆଦର୍ଶ । ଫଳତଃ ସ୍ଥାନୀୟ ସତ୍ୟବାଦୀ ଓ ତା'ର ଆଖପାଖ ଅଂଚଳର ପିଲାଙ୍କ ସହ ପୁରୀ, ଗଞ୍ଜାମ, କଟକ, ବାଲେଶ୍ୱର, ମେଦିନାପୁର, ମୟୂରଭଞ୍ଜରୁ ପିଲାଏ ଆସି ଏଠାରେ ନାମ ଲେଖାଉଥିଲେ । ଓଡ଼ିଶାର ବିଭିନ୍ନ ଗଡ଼ଜାତ ରାଜ୍ୟର ଧନିମାନୀ ଲୋକେ ସେମାନଙ୍କର ପିଲାଙ୍କୁ ଏଠାକାର ଛାତ୍ରାବାସରେ ରଖାଇ ପାଠ ପଢ଼ାଉଥିଲେ । ଉଦ୍ଦେଶ୍ୟ ଥିଲା ଧୂରୀଣ ଶିକ୍ଷକମାନଙ୍କ ସଂପର୍କରେ ଆସି ପିଲାଏ ପାଠରେ ଧୁରନ୍ଧର ହେବେ । ଉତ୍ତମ ଗୁରୁକୁଳରେ ରହି ପିଲାଏ କୁଳୀନ ହେବେ, ଉତ୍ତମ ପାଠଶାଳା ପ୍ରଭାବରେ ହେବେ ଶାଳୀନ ।

ପଣ୍ଡିତ ଗୋପବନ୍ଧୁଙ୍କ ବିଚାର ଓ ଚିନ୍ତାଧାରା ଥିଲା ଅତି ଉତ୍ତମ । ସମୟର ଊର୍ଦ୍ଧ୍ୱରେ ଅତି ଉତ୍ତମ ବିଚାର କରି ଜଣେ ଯେତେବେଳେ କାର୍ଯ୍ୟାରମ୍ଭ କରନ୍ତି, ତାହାକୁ ବୁଝି ନପାରି ସାଧାରଣ ସ୍ତରର ମଣିଷ ବିରୋଧ କରନ୍ତି । ତାହା ହିଁ ହୋଇଥିଲା ବନବିଦ୍ୟାଳୟ କ୍ଷେତ୍ରରେ । ସନ ୧୯୧୨, ମାର୍ଚ୍ଚ ୧୨ ତାରିଖ ରାତିରେ କେତେଜଣ ଆତତାୟୀ ବିଦ୍ୟାଳୟ ଗୃହରେ ଅଗ୍ନି ସଂଯୋଗ କରି ଦେଇଥିଲେ । ଏତଦ୍ଦ୍ୱାରା ବିଦ୍ୟାଳୟ ଗୃହ, ଆସବାବପତ୍ର ଓ ଦୁର୍ଲ୍ଲଭ ମୂଲ୍ୟବାନ ପୁସ୍ତକାଗାରଟି ସହ ଆନୁଷଙ୍ଗିକ ଜିନିଷ (ଆନୁମାନିକ ଟ.୫୦୦୦/-ର ଜିନିଷ) ଧ୍ୱଂସ ହୋଇ ଯାଇଥିଲା । ସେ ଯୁଗ ଅର୍ଥାତ୍ ୧୯୧୨ ମସିହାରେ ଟ.୫୦୦୦/- (ପାଞ୍ଚ ହଜାର ଟଙ୍କା) କ'ଣ ବଡ଼କଥା ନୁହେଁ ?

ଇତିହାସ କହେ ପ୍ରାଚୀନ ନାଳନ୍ଦା ବିଶ୍ୱବିଦ୍ୟାଳୟର ପାଠାଗାରକୁ ଅସହିଷ୍ଣୁ ଲୋକେ ପୋଡ଼ି ଦେଇଥିଲେ । ଜ୍ଞାନର ଆଲୋକରେ ଅଜ୍ଞାନର ଚକ୍ଷୁ ଝଲସିଯାଏ, ବେଳେବେଳେ ସେ ଆଲୋକର ପାରାବାରରେ ନିଜକୁ ସପ୍ତବାର ସ୍ନାନ କରାଇ ସ୍ୱୟଂ ପରିବର୍ତ୍ତିତ ହୁଏ । କେତେକ କ୍ଷେତ୍ରରେ ମୂଢ଼ ପରିବର୍ତ୍ତିତ ହେବା ବଦଳରେ ଜ୍ଞାନାଲୋକରେ ଅନ୍ଧୀଭୂତ ହୋଇ ଅକାଣ୍ଡ କରିବସେ । ଠିକ୍ ଯେପରି କେତେଜଣ ମୌଳବାଦୀ ବନବିଦ୍ୟାଳୟର ପୁସ୍ତକାଗାରକୁ ଧ୍ୱଂସ କରିଥିଲେ । ସେଭଳି ହୀନପନ୍ଥା ବ୍ୟତୀତ ଅଜ୍ଞାନକୁ ବା ଆଉ କେଉଁ କାର୍ଯ୍ୟ ଦେଖାଯାଆନ୍ତା । ଯାହାହେଉ ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀ ସ୍କୁଲ ଘରକୁ ପୋଡ଼ିଥିଲା ବେଳେ ଆଉ ଦଳେ ସୁହୃଦୟ-ଉଦାରମନା-ଶିକ୍ଷାପ୍ରେମୀଜନ ସାହାଯ୍ୟ ଦେବାକୁ ଧାଇଁ ଆସିଲେ । ଘର ପୋଡ଼ି ଯିବାର ୬ ଘଣ୍ଟା (ଛଅ ଘଣ୍ଟା) ଭିତରେ ପାଖ ଗାଁମାନଙ୍କରୁ ନଡ଼ିଆ ବାହୁଙ୍ଗା ସଂଗ୍ରହ କରାଯାଇ ଛାମୁଣ୍ଡିଆ ଘର ତିଆରି କରାଗଲା ।

ଜୁନ ମାସରେ ଓଡ଼ିଶାରେ ବର୍ଷାରତୁ ଆରମ୍ଭ । ଅତଏବ ସେ ସବୁକୁ ଦୃଷ୍ଟିରେ ରଖି 'କ' ଓ 'ଖ' ଧାଡ଼ି ନାମରେ ଦୁଇଧାଡ଼ି ପକ୍କା ଘର ତିଆରି ହୋଇଗଲା । ବିଦ୍ୟାଳୟର ସ୍ଥାୟୀ ଘର ସନ ୧୯୧୩ରେ ଆରମ୍ଭ ହୋଇ ୧୯୧୪ରେ ସମାପ୍ତ ହୋଇଥିଲା । ସେତେବେଳକୁ ହାଇସ୍କୁଲର ଉପର ଶ୍ରେଣୀଗୁଡ଼ିକ ମଧ୍ୟ ଖୋଲି ସାରିଥାଏ ।

**ଶିକ୍ଷକ :** ୧୯୧୧, ଅକ୍ଟୋବର ୧୧ ତାରିଖରେ ନୀଳକଣ୍ଠ ଦାସ ଏହି ବନବିଦ୍ୟାଳୟରେ ଶିକ୍ଷକ ରୂପେ ଯୋଗ ଦେଇଥିଲେ । ତାଙ୍କର ନେତୃତ୍ୱରେ ଗୋପବନ୍ଧୁଙ୍କ ପରିକଳ୍ପିତ ହାଇସ୍କୁଲ ପ୍ରତିଷ୍ଠା ସମ୍ଭବପର ହୋଇପାରିଥିଲା । ପରବର୍ତ୍ତୀ କାଳରେ ସେ ବିଦ୍ୟାଳୟର ପ୍ରଧାନଶିକ୍ଷକ ହୋଇଥିଲେ ।

ଆଚାର୍ଯ୍ୟ ହରିହର ଦାସ କଟକର ପ୍ୟାରିମୋହନ ଏକାଡ଼େମୀରୁ ଚାକିରି ଛାଡ଼ି ୧୯୧୨ ମସିହାରେ ବନବିଦ୍ୟାଳୟରେ ଶିକ୍ଷକ ଭାବେ ଯୋଗ ଦେଇଥିଲେ । ସେହିବର୍ଷ କଲିକତା ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କରି ଗୋଦାବରୀଶ ମିଶ୍ର ଏଠାରେ ଯୋଗ ଦେଇଥିଲେ । ସେ ଯୋଗ ଦେବାର ବର୍ଷକ ପରେ ପଣ୍ଡିତ କୃପାସିନ୍ଧୁ ମିଶ୍ର ଏଠାରେ ଶିକ୍ଷକ ହେଲେ । କୃପାସିନ୍ଧୁଙ୍କୁ ମିଶାଇ ଏମ୍.ଏ. ପାସ୍ କରିଥିବା ଶିକ୍ଷକ ହେଲେ ୩ ଜଣ । ନୀଳକଣ୍ଠ ଦାସ ଦର୍ଶନ ଶାସ୍ତ୍ରରେ, ଗୋଦାବରୀଶ ଅର୍ଥନୀତିରେ ଏମ୍.ଏ. ଥିଲାବେଳେ କୃପାସିନ୍ଧୁ ଥିଲେ ଇତିହାସରେ ଏମ୍.ଏ., ଆଚାର୍ଯ୍ୟ ହରିହର ଥିଲେ ଏଫ୍.ଏ. (ଆଜିକାଲିର ଆଇ.ଏ.) ପାଶ୍ କରିଥିବା ଶିକ୍ଷକ । ଆଚାର୍ଯ୍ୟଙ୍କର ଅନ୍ୟତମ ସହକର୍ମୀ ଥିଲେ ପଣ୍ଡିତ ବାସୁଦେବ ମହାପାତ୍ର । ସର୍ବଗୁଣାଧାର ଶ୍ରୀ ରାମଚନ୍ଦ୍ର ରଥ ଥିଲେ ମାଟ୍ରିକୁଲେସନ୍ ପାଶ୍ କରିଥିବା ଶିକ୍ଷକ । କୃଷି ଶିକ୍ଷକ ଥିଲେ ନାରାୟଣ ସୁମନ୍ତ ପଟ୍ଟନାୟକ (ବଡାମ୍ବା ଅଂଚଳର ଲୋକ) କାଠକାମ ଓ କୁଟୀର ଶିଳ୍ପ ଶିକ୍ଷକ ଥିଲେ ଅର୍ଜୁନ ମହାରଣା (ଯାଜପୁର ଅଂଚଳର) ବଗିଚା କାର୍ଯ୍ୟ ସ୍ୱୟଂ ନୀଳକଣ୍ଠ ଦାସ, ପ୍ରଧାନ ଶିକ୍ଷକ ଦେଖାଶୁଣା କରୁଥିଲେ । ଏତଦ୍‌ବ୍ୟତୀତ ଅନ୍ୟ ଶିକ୍ଷକମାନେ ଥିଲେ ଶ୍ରୀ ରଘୁନାଥ ମିଶ୍ର, ହଳଧର ମହାପାତ୍ର ଓ ମାଗୁଣି ମିଶ୍ର । ବିଦ୍ୟାରେ ଧୂରୀଣ, ଜ୍ଞାନଦୀପ୍ତ, ଆଚରଣସିଦ୍ଧ ଶିକ୍ଷକମାନେ ଥିଲେ ବିଦ୍ୟାଳୟର ସବୁଠୁଁ ବଡ଼ ସଂପତ୍ତି । ଚଳନ୍ତୀ ଦେବତା ।

ସତ୍ୟବାଦୀ ବନବିଦ୍ୟାଳୟ ଥିଲା ମୁଖ୍ୟତଃ ଆବାସିକ । ଏଥିରେ ଛାତ୍ର ତଥା ଶିକ୍ଷକଗଣଙ୍କୁ ବିଦ୍ୟାଳୟ ହତାରେ ରହିବାର ସୁବିଧା କରାଯାଇଥିଲା । ତେବେ ସ୍ଥାନୀୟ ପିଲାମାନେ ଥିଲେ ଦିବାଧାୟୀ । ବିଦ୍ୟାଳୟର ମୋଟ ଛାତ୍ର ସଂଖ୍ୟାର ୩/୪ ଭାଗ ଥିଲେ ଅନ୍ତେଃବାସୀ । ପ୍ରଧାନଶିକ୍ଷକ ଥିଲେ ବିଦ୍ୟାଳୟର ସର୍ବମୁଖ୍ୟ ବ୍ୟକ୍ତି, ଶିକ୍ଷାକୁଳର କୁଳପତି । ବିଷୟଗତ ଜ୍ଞାନ, ଶିକ୍ଷାବିଧି ଓ ପ୍ରଶାସନିକତା ଦୃଷ୍ଟିରୁ ପ୍ରଧାନଶିକ୍ଷକ ଥିଲେ ଆଦର୍ଶ ସ୍ଥାନୀୟ ଓ ତାଙ୍କର ନିୟନ୍ତ୍ରଣ ନିର୍ଦ୍ଦେଶକୁ ଅନ୍ୟ ସମସ୍ତେ ମାନି ନେଉଥିଲେ । ଶିକ୍ଷକମାନେ ନିଜନିଜକୁ ସୁଚାରୁ ରୂପେ ପ୍ରସ୍ତୁତ କରି ଶିକ୍ଷାଦାନ କରି ଛାତ୍ର ମହଲରେ ଆଦୃତ ହେଉଥିଲେ ।

**ଶିକ୍ଷାଦାନ ପ୍ରଣାଳୀ :** ପ୍ରତ୍ୟକ୍ଷ ପାଠଦାନରେ ପୂର୍ବପାଠର ଆଲୋଚନା ସହ ନୂତନ ପାଠର ଉପକ୍ରମ, ଉପସ୍ଥାପନା, ବୋଧଜ୍ଞାନ ପରୀକ୍ଷା ଓ ସର୍ବଶେଷରେ ଲବ୍ଧଜ୍ଞାନର ପରୀକ୍ଷା କରାଯାଉଥିଲା । ଲିଖିତ

ଅନୁଶୀଳନୀଗୁଡ଼ିକୁ ଶିକ୍ଷକମାନେ ଯତ୍ନ ସହକାରେ ସଂଶୋଧନ କରୁଥିଲେ ।

ଅଧ୍ୟୟନ, ପାଠାଭ୍ୟାସ ଉପରେ ଗୁରୁତ୍ୱ ଦିଆଯାଉଥିଲା । ଦକ୍ଷତା ହାସଲରେ କୌଣସି ଅବୋଧ ରହିଲେ, ଛାତ୍ରମାନେ ଶିକ୍ଷକମାନଙ୍କ ସହ ପରାମର୍ଶ - ଆଲୋଚନା କରି ପାରୁଥିଲେ । ପାଠରେ ଅପେକ୍ଷାକୃତ ପଛୁଆ ଛାତ୍ରଙ୍କୁ ଶିକ୍ଷକ ନିଜେ ଯତ୍ନ ସହକାରେ ପଢ଼ାଉଥିଲେ । ଯଥା- ସ୍ୱୟଂ ଆଚାର୍ଯ୍ୟ ହରିହର କୋଠରୀ କୋଠରୀ ବୁଲି ପିଲାମାନଙ୍କୁ ଗଣିତ ବୁଝାଉଥିଲେ । ପାଠାଭ୍ୟାସ ଜାରି ରଖିବା ପାଇଁ ଶିକ୍ଷକବର୍ଗ ତଥା ପ୍ରଧାନଶିକ୍ଷକ ଘନଘନ ପରିଦର୍ଶନ କରୁଥିଲେ । ଯଥା ସମୟରେ ପରୀକ୍ଷା ମଧ୍ୟ କରାଯାଉଥିଲା ।

**ଶୃଙ୍ଖଳା :** ବିଦ୍ୟାଳୟରେ ଶୃଙ୍ଖଳା ରକ୍ଷା ପାଇଁ କର୍ମବଣ୍ଟନ, ବର୍ଗମନ୍ତ୍ରୀ ଚୟନ (Monitor System) ପ୍ରବର୍ତ୍ତନ କରାଯାଉଥିଲା । ପିଲାମାନେ ନିଜ ନିଜର କାମ କରୁଥିଲେ । ଶିକ୍ଷକମାନେ ତଦାରଖ କରୁଥିଲେ । ସାମୂହିକ କାର୍ଯ୍ୟକୁ ଭାଗ କରାଯାଇ ବିଭିନ୍ନ ଦଳ ମଧ୍ୟରେ ବାଣ୍ଟି ଦିଆଯାଉଥିଲା । ଦଳର ମୁଖ୍ୟ ଥିଲେ ଜଣେ ବଡ଼ଚାଟ (Monitor), ଉପଦେଷ୍ଟା ରହୁଥିଲେ ଜଣେ ଶିକ୍ଷକ । ଅନ୍ୟ ଜଣେ ଶିକ୍ଷକ ପର୍ଯ୍ୟବେକ୍ଷଣ କରି ଗଠନମୂଳକ ମତାମତ ଦେଉଥିଲେ । ବନ୍ଧୁତ୍ୱ, ସହଯୋଗ ତଥା ସ୍ୱୟଂ ଶାସନ ବ୍ୟବସ୍ଥାରେ ଛାତ୍ରମାନଙ୍କ ଭିତରେ ଆତ୍ମବିଶ୍ୱାସର ଅଭିବୃଦ୍ଧି ଘଟୁଥିଲା । ଛାତ୍ରାବାସର ପରିଚାଳନା ମଧ୍ୟ ବଡ଼ପିଲା (ଉପର ଶ୍ରେଣୀର ଛାତ୍ର)ଙ୍କ ଦ୍ୱାରା କରାଯାଉଥିଲା, ଅବଶ୍ୟ କେହି ଜଣେ ଶିକ୍ଷକ ବା ପ୍ରଧାନଶିକ୍ଷକ ଏଗୁଡ଼ିକୁ ପର୍ଯ୍ୟବେକ୍ଷଣ କରୁଥିଲେ । କୌଣସି ସମସ୍ୟାକୁ ଛାତ୍ର ଅଦାଲତରେ ଉପସ୍ଥାପନ କରାଯାଇ ତାହାର ଆଶୁ ସମାଧାନ କରାଯାଉଥିଲା । ଚରିତ୍ରଗଠନ ପାଇଁ ବ୍ରହ୍ମଚର୍ଯ୍ୟ ଶିକ୍ଷା ପ୍ରଦାନ ପାଇଁ ପ୍ରଯତ୍ନ କରାଯାଉଥିଲା ।

**ସାହିତ୍ୟ ଚର୍ଚ୍ଚା :** ବନବିଦ୍ୟାଳୟ ଓ ତା'ର ପଞ୍ଚସଖା ଯଥା- ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ ଓ ହରିହରଙ୍କ କର୍ତ୍ତୃକ ସୃଷ୍ଟ ସାହିତ୍ୟ ଓ ଅନ୍ୟାନ୍ୟ ରଚନାବଳୀକୁ ଭିତ୍ତିକରି ଏକ ସ୍ୱତନ୍ତ୍ର ଯୁଗ, ଯଥା- ଓଡ଼ିଆ ସାହିତ୍ୟର ସତ୍ୟବାଦୀଯୁଗ ସୃଷ୍ଟି କରିପାରିଛି । ବିଦ୍ୟାଧୂରୀଣ ବାଗ୍ମୀ ଶିକ୍ଷକମାନେ ଥିଲେ କବି-ଲେଖକ-ପ୍ରାବନ୍ଧିକ-ପତ୍ରକାର ଓ ସମାଲୋଚକ । ସେମାନଙ୍କ ପ୍ରଭାବରେ ବନବିଦ୍ୟାଳୟର ଛାତ୍ରମାନଙ୍କର ସୃଜନୀଶକ୍ତିର ପୂର୍ଣ୍ଣବିକାଶ ପାଇଁ ଅନୁକୂଳ ଜଳବାୟୁ ସୁଲଭ ହେଉଥିଲା ।

ଛାତ୍ର-ଶିକ୍ଷକ ଏକାଠି ବସି ଆପଣା-ଆପଣାର ରଚନା ପାଠ କରୁଥିଲେ । ପ୍ରତି ଶ୍ରେଣୀରୁ ହାତଲେଖା ପତ୍ରିକା ବାହାରୁଥିଲା । ଦଶମ ଶ୍ରେଣୀର ପତ୍ରିକା 'ବୀଣା' ସେ ସମୟରେ ବେଶ୍ ଜଣାଶୁଣା ହୋଇପାରିଥିଲା । ପ୍ରତିମାସର ଶେଷ ଶନିବାର ଦିନ ବୈଠକ ବସୁଥିଲା । ଏହାକୁ କୁହାଯାଉଥିଲା Lalegro Club. ଏଥିରେ ନିଜ ଇଚ୍ଛାନୁସାରେ କବିତା, ଗୀତ, ପ୍ରବନ୍ଧ, ଗଳ୍ପ, ବକ୍ତୃତା ଆଦି ଉପସ୍ଥାପନ କରିବାର ସୁଯୋଗ ଛାତ୍ରମାନେ ପାଇପାରୁଥିଲେ । ଏହାର ପ୍ରଭାବରେ ପରବର୍ତ୍ତୀ କାଳରେ ଏହି ବିଦ୍ୟାଳୟର ଛାତ୍ର ହରିହର ମହାପାତ୍ର ପରବର୍ତ୍ତୀ କାଳରେ ନ୍ୟାୟମୂର୍ତ୍ତି ହରିହର ମହାପାତ୍ର ବିଚାର ତଥା ସାହିତ୍ୟ-ସଂସ୍କୃତିର ପୃଷ୍ଠପୋଷକ ହୋଇପାରିଥିଲେ । କବି ବୈକୁଣ୍ଠନାଥ ପଟ୍ଟନାୟକ, ବିପ୍ଳବୀ ଲେଖକ ଭଗବତୀ ଚରଣ ପାଣିଗ୍ରାହୀ, ଅଧ୍ୟାପକ ସଦାଶିବ ମିଶ୍ର, ପତ୍ରକାର ଉଦୟନାଥ ଷଡଙ୍ଗୀ ଆଦି ଥିଲେ ଏଇ ବିଦ୍ୟାଳୟର ଛାତ୍ର, ଯେଉଁମାନଙ୍କ ଉପରେ ବିଦ୍ୟାଳୟର ସାହିତ୍ୟଚର୍ଚ୍ଚା ବେଶ୍ ପ୍ରଭାବ ପକାଇ ପାରିଥିଲା ।

**ତର୍କସଭା :** ବନବିଦ୍ୟାଳୟର ପ୍ରତିଷ୍ଠାତା ତଥା ଅନ୍ୟାନ୍ୟ ଶିକ୍ଷକମାନେ ଥିଲେ ଉଚ୍ଚକୋଟୀର ବକ୍ତା । ଅତଏବ ବିଦ୍ୟାଳୟର ଛାତ୍ରମାନଙ୍କର ଅଭିଭାଷଣ ଶକ୍ତି ବଢ଼ାଇବା ପାଇଁ ପ୍ରତି ରବିବାର 'ଇତିହାସ' ସଂକ୍ରାନ୍ତୀୟ ଆଲୋଚନା ଓ ପ୍ରତି ଶନିବାର ତତ୍କାଳୀନ ସମୟଭିତ୍ତିକ ନାନା ସମସ୍ୟାକୁ ନେଇ ତର୍କସଭା ଅନୁଷ୍ଠିତ ହେଉଥିଲା । ରାଜ୍ୟ ତଥା ଦେଶର ବିଶିଷ୍ଟ ବ୍ୟକ୍ତି ଏହି ସଭାରେ ଉଦ୍‌ବୋଧନ ଦେବାର ବ୍ୟବସ୍ଥା କରାଯାଉଥିଲା । ଅନେକ ସମୟରେ ପଣ୍ଡିତ ଗୋପବନ୍ଧୁ ସ୍ୱୟଂ ସଭାପତି ବା ସାଧାରଣ ବକ୍ତା ଭାବେ ଅବତୀର୍ଣ୍ଣ ହେଉଥିଲେ । ପ୍ରକାଶ ଥାଉ କି ଏଠାକାର ଛାତ୍ର-ଶିକ୍ଷକ ସେ ସମୟରେ ଓ ପରବର୍ତ୍ତୀକାଳରେ ରାଜ୍ୟ ତଥା ଦେଶର ସୁନାମଧନ୍ୟ ବକ୍ତା / ଅଧିବକ୍ତା ହୋଇପାରିଥିଲେ । ଉଦାହରଣ ସ୍ୱରୂପ - ପଣ୍ଡିତ ଗୋପବନ୍ଧୁ ବିଧାୟକ ଭାବେ ଲୋକମାନଙ୍କର ଦୁଃଖକଷ୍ଟକୁ ବିହାର-ଓଡ଼ିଶା ବିଧାନ ପରିଷଦରେ ଏପରି ଭାବେ ଉପସ୍ଥାପନ କରିଥିଲେ ଯେ ତାହାର ଉତ୍ତରରେ ମହାମାନ୍ୟ ଛୋଟଲାଟ ସାର୍ ଏଡୱାର୍ଡ୍ ଗେଟ୍ (Sir Edward Gate) ୧୯୨୦, ଏପ୍ରିଲ୍ ୦୭ ତାରିଖରେ ପୁରୀ ଜିଲ୍ଲାର ଦୁର୍ଭିକ୍ଷ ପ୍ରପୀଡ଼ିତ ଅଂଚଳ ବୁଲି ଦେଖିବା ପାଇଁ ଆସି ବିହିତ ପ୍ରତିକାର କରିଥିଲେ । ଏହି ବିଦ୍ୟାଳୟର ତତ୍କାଳୀନ ଗୁରୁ ପଣ୍ଡିତ ନୀଳକଣ୍ଠ ଦାସ ଓ ପଣ୍ଡିତ ଗୋଦାବରୀଶ ମିଶ୍ର ପରବର୍ତ୍ତୀ କାଳରେ ଯଥାକ୍ରମେ ଓଡ଼ିଶା ବିଧାନସଭାର ବାଚସ୍ପତି ଓ ଶିକ୍ଷାମନ୍ତ୍ରୀ ହୋଇଥିଲେ ।

ତର୍କସଭା ତଥା ଇତିହାସ ଆଲୋଚନା ମୂଳରେ ମହତ୍ ଉଦ୍ଦେଶ୍ୟ ନିହିତ ଥିଲା । ସେତେବେଳେ ପରାଧୀନ ଦେଶ, ସ୍କୁଲ ପିଲାଙ୍କୁ ସ୍ୱାଧୀନଚେତା କରିବା ପାଇଁ ଇତିହାସ ଆଲୋଚନା ଥିଲା ଏକ ଶକ୍ତିଶାଳୀ ତଥା ନିରାପଦ ମାଧ୍ୟମ । ଇଟାଲୀ, ଜର୍ମାନ, ଫ୍ରାନ୍ସ, ଆମେରିକା ଆଦି ଦେଶର ସ୍ୱାଧୀନତାର କାହାଣୀ, ନବଜାଗରଣର କ୍ରମୋନ୍ନତି ସୋପାନ ତର୍ଜମା କରାଯାଇ ପିଲାମାନଙ୍କୁ ସଂଗ୍ରାମର ପ୍ରେରଣା ଦିଆଯାଉଥିଲା । ଧୀରେ ଧୀରେ ପିଲାଏ ଆତ୍ମନିର୍ଭରଶୀଳ ହୋଇ ସ୍ୱାଧୀନତା ଆଡ଼କୁ ମୁହାଁଇବେ - ଏହା ଥିଲା ରାଜ୍ୟ-ଦେଶ-ବିଶ୍ୱ-କାହାଣୀ ବର୍ଣ୍ଣନାର ମୂଳ ଉଦ୍ଦେଶ୍ୟ ।

**କ୍ରୀଡ଼ା ଓ ବ୍ୟାୟାମ :** ସୁସ୍ଥ ମନ ପାଇଁ ଦରକାର ସୁସ୍ଥ ଶରୀର । ଅତଏବ କ୍ରୀଡ଼ା ଓ ବ୍ୟାୟାମର ଆବଶ୍ୟକତା ଶିକ୍ଷାକ୍ଷେତ୍ରରେ ଅନୁଭୂତ ହୁଏ । ବନବିଦ୍ୟାଳୟର ପିଲାମାନେ ନିୟମିତ ବ୍ୟାୟାମ ଓ ଖେଳ କସରତ କରୁଥିଲେ । ବିଶେଷତଃ ଦେଶୀ ଖେଳ, ଦଣ୍ଡଖେଳ, ବାଗୁଡ଼ି,

ଦୀର୍ଘଦୌଡ଼ ଆଦିର ପ୍ରତିଯୋଗିତା ଆୟୋଜନ କରାଯାଉଥିଲା । ଏତଦ୍ୱାରା ପିଲାମାନଙ୍କର ଦାୟିତ୍ୱବୋଧ ବଢୁଥିଲା ଓ ଶରୀର ସୁସ୍ଥସବଳ ରହିପାରୁଥିଲା ।

**ପରିଭ୍ରମଣ :** ଶିକ୍ଷାନୁଷ୍ଠାନ ଜରିଆରେ ପରିଭ୍ରମଣ ଅର୍ଥ ପ୍ରତ୍ୟକ୍ଷ ଜ୍ଞାନାର୍ଜନ ପାଇଁ ଶ୍ରେଣୀକକ୍ଷକୁ ଶିକ୍ଷାନୁଷ୍ଠାନରୁ ପର୍ଯ୍ୟଟନସ୍ଥଳୀକୁ କିଛି ସମୟ ପାଇଁ ଉଠାଇ ନେବା । ବିଦ୍ୟାଳୟରୁ ପର୍ଯ୍ୟଟନସ୍ଥଳ ପର୍ଯ୍ୟନ୍ତ ସମସ୍ତ ପଥ ଅତିକ୍ରମ କରିବା ମଧ୍ୟ ଶିକ୍ଷଣର ଅଂଶବିଶେଷ । ଏତଦ୍ୱାରା ବାସ୍ତବ ଦୁନିଆ ସହ କାରବାର ହେବା ପାଇଁ ଛାତ୍ରଛାତ୍ରୀମାନେ ଅବସର-ଆସର ପାଇଥାଆନ୍ତି । ବନବିଦ୍ୟାଳୟର ଛାତ୍ରମାନେ ଶିକ୍ଷକମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପରିଭ୍ରମଣ କରୁଥିଲେ । ନୂଆକରି ଦେଖୁଥିବା ସ୍ଥାନ - କୀର୍ତ୍ତି ଉପରେ ଆଲୋଚନା କରୁଥିଲେ । ସେମାନଙ୍କର ଯାତ୍ରା-ରହଣୀ-ପର୍ଯ୍ୟଟନ ଶୃଙ୍ଖଳାର ସହ ପରିଚାଳନା କରାଯାଉଥିଲା । ଅନେକ ପରିଭ୍ରମଣ ମଧ୍ୟରୁ ଥରେ କୋଣାର୍କ ଓ ରାମଚଣ୍ଡୀ ଦେଖିବାକୁ ଯିବାବେଳେ ପାଗର ପ୍ରତିକୂଳତାରୁ ଛାତ୍ରମାନେ ପ୍ରଧାନଶିକ୍ଷକ ପଣ୍ଡିତ ନୀଳକଣ୍ଠଙ୍କ ସହ ରାମଚଣ୍ଡୀରେ ରାତି ବିତାଇଥିଲେ । ପିଲାଏ ଶୋଇଗଲେ, ମାତ୍ର ନୀଳକଣ୍ଠ ପିଲାମାନଙ୍କୁ ଜଗିବା ଅବସରରେ ଯାହା ଚିନ୍ତା କରିଥିଲେ ତାହା ହେଲା ତାଙ୍କର 'କୋଣାର୍କେ' କାବ୍ୟର ଭିତ୍ତିଭୂମି । ବୁଝିବାକୁ ହେବ ଯେ 'କୋଣାର୍କେ' କାବ୍ୟ ରଚନା କରିବାର ପ୍ରେରଣା ଏଇ ପରିଭ୍ରମଣରୁ ହିଁ ମିଳିଥିଲା ।

**ସାହାଯ୍ୟ - ସହାନୁଭୂତି :** ବନବିଦ୍ୟାଳୟର ଛାତ୍ର-ଶିକ୍ଷକ ସମାଜ ବହୁବିଧ ସେବାକାର୍ଯ୍ୟ କରୁଥିଲେ । ବଢ଼ି-ମରୁଡ଼ି-ଘରପୋଡ଼ି ଆଦିରେ ପିଲାଏ ସହାୟତା କରୁଥିଲେ । ବଢ଼ି ବେଳେ ଗାଁ ଗାଁ ବୁଲି ଭିକ୍ଷା କରି ସେ ସବୁକୁ ବିପନ୍ନ ଲୋକଙ୍କୁ ବାଣ୍ଟୁଥିଲେ । 'ରଥଯାତ୍ରା' ଓ 'ଉତ୍କଳ ସମ୍ମିଳନୀ'ରେ ସ୍ୱେଚ୍ଛାସେବକ ଭାବେ କାର୍ଯ୍ୟ କରି ଏହି ବିଦ୍ୟାଳୟର ଛାତ୍ରମାନେ ସୁନାମ ଅର୍ଜନ କରିଥିଲେ ।

**କୃତୀଛାତ୍ର :** ଏହି ବିଦ୍ୟାଳୟର କୃତୀଛାତ୍ରମାନଙ୍କ ମଧ୍ୟରୁ କବି ବୈକୁଣ୍ଠନାଥ ପଟ୍ଟନାୟକ, ଭଗବତୀ ପାଣିଗ୍ରାହୀ, ଉଦୟନାଥ ଷଡଙ୍ଗୀ, ଜଷ୍ଟିସ୍ ହରିହର ମହାପାତ୍ର, ଅଧ୍ୟାପକ ସଦାଶିବ ମିଶ୍ର ଆଦି ପ୍ରଧାନ । ଜଷ୍ଟିସ୍ ହରିହର ମହାପାତ୍ର ବନବିଦ୍ୟାଳୟରେ କିଛି ଦିନ ଶିକ୍ଷକତା ମଧ୍ୟ କରିଥିଲେ ।

**ବାର୍ଷିକ ଉତ୍ସବ :** ଛାତ୍ରମାନଙ୍କୁ ସଫଳତାର ସ୍ୱୀକୃତି ଜଣାଇ ସେମାନଙ୍କୁ ପାଞ୍ଚପଚିଶରେ ପ୍ରଶଂସା କରି ଉତ୍ତରୋତ୍ତର ଉନ୍ନତିପଥ ପରିଷ୍କାର କରିବା ଇଚ୍ଛାରେ ଏହି ବିଦ୍ୟାଳୟର ବାର୍ଷିକ ଉତ୍ସବ ପ୍ରତିବର୍ଷ ଡିସେମ୍ବର/ଜାନୁଆରୀରେ ଅନୁଷ୍ଠିତ ହୁଏ । ଏଥିରେ ବିଦ୍ୟାଳୟର ସାମୂହିକ ଉନ୍ନତିର ତର୍ଜମା ମଧ୍ୟ କରାଯାଏ । ଥରେ ମିଷ୍ଟର ମଧୁସୂଦନ ଦାସ (ଉତ୍କଳଗୌରବ ମଧୁସୂଦନ ଦାସ) ବାର୍ଷିକ ଉତ୍ସବରେ ଅତିଥି ହୋଇଥିଲେ ।

ବନବିଦ୍ୟାଳୟର ଛାତ୍ରମାନଙ୍କର ସୁଗୁଣ ତଥା ନିଃସ୍ୱାର୍ଥପର ସେବା ଭାବରେ ମୁଗ୍ଧ ହୋଇ, ମଧୁବାବୁ ପିଲାଙ୍କୁ ଘୋଡ଼ାଗାଡ଼ିରେ ବସାଇ କଟକ ନଗର ଓ ବାରବାଟୀ କିଲ୍ଲା ବୁଲାଇ ଦେଖାଇଥିଲେ ।

ଏହିପରି ଖୋଜିଗଲେ ପାଇବା ଯେ, ବନବିଦ୍ୟାଳୟ ନିର୍ଦ୍ଧାରିତ ପାଠ୍ୟକ୍ରମ ସହ ଛାତ୍ରମାନଙ୍କୁ ଶୃଙ୍ଖଳିତ, ନିୟମାନୁବର୍ତ୍ତୀ, ସାହସୀ, ସାଧୁ, ଧୈର୍ଯ୍ୟବାନ୍ ନିଷ୍ପାପର କରି ଗଢ଼ି ତୋଳିବା ପାଇଁ ଅନେକ କାର୍ଯ୍ୟକ୍ରମ ଜାରି ରଖିଥିଲା । ବିଦ୍ୟାଳୟ ପରିଦର୍ଶନ କରି ବଡ଼ ବଡ଼ ନେତା, ଶିକ୍ଷାବିତ୍ ଆଦି ଅତି ଉତ୍ତମ ମତାମତ ପ୍ରଦାନ କରିଥିଲେ । ବନବିଦ୍ୟାଳୟର ଉଚ୍ଚ ମୂଲ୍ୟବୋଧ ସମସ୍ତଙ୍କୁ ସ୍ପର୍ଶ କରି ପାରିଥିଲା ।

ଶିକ୍ଷାରେ ମୂଲ୍ୟବୋଧ ନ ରହିଲେ ଶିକ୍ଷା ଶବ୍ଦର ଅବମୂଲ୍ୟାୟନ ଘଟେ । ଶିକ୍ଷକ, ଶିକ୍ଷାର୍ଥୀ, ଶିକ୍ଷାୟତନ, ଶିକ୍ଷା ଉପକରଣ, ଶିକ୍ଷା ପ୍ରବିଧି, ଶିକ୍ଷା ସଂପର୍କିତ ପ୍ରତିଟି ଅଂଶ ମୂଲ୍ୟବୋଧ ଅଭାବରେ ଯଥାର୍ଥ ମର୍ଯ୍ୟାଦା ପାଆନ୍ତି ନାହିଁ । ଶିକ୍ଷାର ସମସ୍ତ ଅଧିକରଣ (Agency)କୁ ଏଥିପାଇଁ ସଜାଗ କରାଇବାକୁ ହୁଏ । ଆଜି ଶିକ୍ଷକ ସଶକ୍ତିକରଣ (Empowerment of Teachers) କଥା ଉଠୁଛି । ମୂଲ୍ୟବୋଧର ଅବକ୍ଷୟକୁ ରୋକିବା ପାଇଁ ଶିକ୍ଷାବିତ୍‌ମାନଙ୍କୁ ପଥମତ ଚିନ୍ତା କରିବାକୁ ପଡୁଛି । ସାମାଜିକ-ନୈତିକ-ଆଧାତ୍ମିକ ମୂଲ୍ୟବୋଧର ତର୍ଜମା ଅବସରରେ ବନବିଦ୍ୟାଳୟର ନଜିର ଦେବାକୁ ହେଉଛି । ପଣ୍ଡିତ ଗୋପବନ୍ଧୁଙ୍କ ରଚିତ ପ୍ରାର୍ଥନା ଏହି ଅବସରରେ ସ୍ମରଣୀୟ, ଯଥା-

'ନମୋ ନିରଞ୍ଜନ ନିଖିଳ ନିଧାନ
ବ୍ୟାପ୍ତ ସର୍ବଚରାଚରେ
ପ୍ରଭୁ ଦୟାମୟ ମଙ୍ଗଳ ଆଳୟ
ଜୟ ଜଗଦୀଶ ହରେ ।
ନମୋ ନିରାକାର ସର୍ବ ବିଶ୍ୱାଧାର
ବ୍ୟକ୍ତ ବାହ୍ୟ ଅଭ୍ୟନ୍ତରେ
ପ୍ରଭୁ ବିଶ୍ୱପତି ଅଗତିର ଗତି
ଜୟ ଜଗଦୀଶ ହରେ ।
ଧରି ତୁମ୍ଭବଳ ବହଇ ଅନିଳ
ଅନ୍ତରୀକ୍ଷେ ନିରନ୍ତରେ
ଆଦେଶେ ଉଦଧି ନ ଲଂଘେ ଅବଧି
ଜୟ ଜଗଦୀଶ ହରେ ।
ତବ ଦିବ୍ୟ ଜ୍ୟୋତିଃ ପରକାଶେ ନୀତି
ଗ୍ରହ-ତାରା-ନୀଳାମ୍ବରେ
ତବ ପୁଣ୍ୟ ହାସେ କୁସୁମ ବିକଶେ
ଜୟ ଜଗଦୀଶ ହରେ ।
ପ୍ରକାଶି କରୁଣା ଯେ ପୁଣ୍ୟ ପ୍ରେରଣା
ଦେଇଅଛ ମୋ' ଅନ୍ତରେ
କର ତାହା ସିଦ୍ଧି କରୁଣା ବାରିଧି
ଜୟ ଜଗଦୀଶ ହରେ ।

ପୁଣ୍ୟାତ୍ମା ଗୋପବନ୍ଧୁଙ୍କର ବ୍ୟକ୍ତିତ୍ୱର ପ୍ରଭାବରେ ବନବିଦ୍ୟାଳୟ ସ୍ପର୍ଶମଣି ଭଳି କାର୍ଯ୍ୟ କରୁଥିଲା । ଦୁଷ୍ଟପିଲା ଏ





ପରିବେଶରେ ସୁଧାର ପାଲଟୁ ଥିଲେ । ପାଞ୍ଚ ଆଙ୍ଗୁଳି ସମାନ ନୁହେଁ । କିନ୍ତୁ ସେ ପାଞ୍ଚ ଆଙ୍ଗୁଳି ମିଶି ହାତର ମୁଠାକୁ ଟାଣ କରନ୍ତି । ଠିକ୍ ସେହିପରି ସବୁଛାତ୍ର ଯେ ମେଧାବୀ, ଶାନ୍ତ, ଧୀର ହେବେ - ଏପରି କହି ହେବ ନାହିଁ । ସମସ୍ତେ ଯେ ଉଚ୍ଚକୋଟୀର ପଣ୍ଡିତ ବା ବିଶେଷଜ୍ଞ ହେବେ - ଏପରି ଧାରଣା ରଖିବା ମଧ ଭୁଲ । ଶିକ୍ଷାର ଉଦ୍ଦେଶ୍ୟ ନୁହେଁ ଡାକ୍ତର, ଇଂଜିନିୟର୍, କାରିଗର, କବି-ଲେଖକ-କଳାକାର, କୂଟନୀତିଜ୍ଞ ଗଢ଼ିବା, ବରଂ ଭଲ ମଣିଷ ଗଢ଼ିବାରେ ଶିକ୍ଷାର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ସାଧିତ ହୋଇଥାଏ । ବନବିଦ୍ୟାଳୟର ଆଚାର୍ଯ୍ୟ ହରିହର ଦାସଙ୍କର ବାଣୀ ଥିଲା - 'ଭଲ ମଣିଷ ହୁଅ' । ଭଲ ମଣିଷ ଗଢ଼ି, ବନବିଦ୍ୟାଳୟ କାଳକାଳକୁ ସ୍ମରଣୀୟ ହୋଇ ରହିଛି ଓ ରହିଥିବ ମଧ । ଏହା ଆମ୍ଭମାନଙ୍କୁ ଉଚ୍ଚ ମୂଲ୍ୟବୋଧ ସୁରକ୍ଷା ପାଇଁ ପ୍ରେରଣା ଦେଉ ।

ସାରାଂଶ : ପୁଣ୍ୟାତ୍ମା ପଣ୍ଡିତ ଗୋପବନ୍ଧୁଙ୍କ ହାତଗଢ଼ା ବନବିଦ୍ୟାଳୟ ଓ ତା'ର ଛାତ୍ରାବାସ ଥିଲା ଜ୍ଞାନ-ଭକ୍ତି-କର୍ମ-ବିଭୂତିର ସ୍ଥଳ । ଏ ଜାତିର ସାଥୀ-ସାରଥୀ ଗୋପବନ୍ଧୁ, ଜ୍ଞାନ-ଧୂରୀଣ-ବାଗ୍ମୀ ନୀଳକଣ୍ଠ, ଦରଦୀକବି ଗୋଦାବରୀଶ, ଅନିସନ୍ଧିସ୍ନୁ କୃପାସିନ୍ଧୁ, ଆଚରଣସିଦ୍ଧ ଆଚାର୍ଯ୍ୟ ହରିହର, ନୀରବକର୍ମୀ ଉତ୍ତମ ଚରିତ୍ରବାନ୍ ରାମଚନ୍ଦ୍ର ରଥ ଆଦି ଶିକ୍ଷକ ଥିଲେ ଉଚ୍ଚକୋଟୀର ବ୍ୟକ୍ତିତ୍ୱ, ମଣିପରି ମୂଲ୍ୟବାନ ମଣିଷ । ଚୁମ୍ବକ ଲୁହାକୁ ଆକର୍ଷିତ କଲାପରି ପ୍ରୋକ୍ତ ଶିକ୍ଷକମାନଙ୍କର ପ୍ରଚଣ୍ଡ ବ୍ୟକ୍ତିତ୍ୱର ଚୁମ୍ବକ ଛାତ୍ରମାନଙ୍କୁ ଆକର୍ଷିତ କରି ରଖିଥିଲା । ଶିକ୍ଷକଙ୍କର ବ୍ୟକ୍ତିଗତ ଜୀବନାଦର୍ଶର ପ୍ରଭାବରେ ଉତ୍ତମ ମଣିଷ ଗଠନ ସମ୍ଭବପର ହୋଇପାରିଥିଲା । ଦୁଷ୍ଟପିଲା ସୁଧାର-ଭଦ୍ରମଣିଷ ହୋଇପାରୁଥିଲେ ।

ଈଶ୍ୱର ଗଢ଼ିଛନ୍ତି ଏ ବିରାଟ ବିଶ୍ୱ । ପଞ୍ଚଭୂତର ପୃଥିବୀ । ପଞ୍ଚଭୂତରେ ଗଢ଼ା ମଣିଷ ଆପଣା କାରିଗରୀରେ ପୃଥିବୀରେ ନଗର ଗଢ଼େ । ହୁଏ ନାଗରିକ । ଚିନ୍ତାଶୀଳ ମଣିଷ ସୃଷ୍ଟିର ଛନ୍ଦକୁ ବୁଝିବା ପାଇଁ ନିରନ୍ତର ତତ୍ପର ହୁଅନ୍ତି । ସାଧାରଣ ଜଗତରେ ସେମାନେ ହେଲେ ସଭ୍ୟ-ଶିକ୍ଷିତ-ସୁରୁଚି ସଂପନ୍ନ- ସୁନୀତି ନିଷ୍ଠ ମଣିଷ, ତ୍ୟାଗୀ ମହାତ୍ମା । ସେମାନଙ୍କର ମାର୍ଗ ହେଲା ସାଧନର ପଥ । ଲକ୍ଷ୍ୟ- ଶ୍ରେୟାନୁସନ୍ଧାନ । ସେଇଭଳି ମଣିଷ ବନବିଦ୍ୟାଳୟ ଗଢ଼ିଥିଲେ, ବନବିଦ୍ୟାଳୟ ମଧ ତତ୍ତୁଲ୍ୟ ମଣିଷ ଗଢ଼ିବାର ଲକ୍ଷ୍ୟ ରଖିଥିଲା । ଅତି ସଂକ୍ଷେପରେ କୁହାଯାଇ ପାରେ ଯେ ବନବିଦ୍ୟାଳୟ - ସାକ୍ଷୀଗୋପାଳ (ସତ୍ୟବାଦୀ)ର ବନବିଦ୍ୟାଳୟ ଥିଲା ଏକ ଆକାଙ୍କ୍ଷିତ ବିଦ୍ୟାପୀଠ, ଆଦର୍ଶର ପ୍ରଜ୍ଞାପନ, ମୂଲ୍ୟବୋଧର ପ୍ରଦୀପନ ।

ସୂଚନା ପୁସ୍ତକ :


୧. ଜୀବନ ଓ ଜୀବିକା - ଜଷ୍ଟିସ୍ ହରିହର ମହାପାତ୍ର

୨. ଅର୍ଦ୍ଧ ଶତାବ୍ଦୀର ଇତିହାସ ଓ ତହିଁରେ ମୋର ସ୍ଥାନ - ଗୋଦାବରୀଶ ମିଶ୍ର

୩. ଗୋପବନ୍ଧୁ ଦାସ - ଶ୍ରୀରାମଚନ୍ଦ୍ର ଦାସ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ



ଟିଚର ଏଡୁକେଟର
ଡି.ଆଇ.ଇ.ଟି., ଟିକାବାଲି
କନ୍ଧମାଳ


---

# ପ୍ରେସ୍ ଇସ୍ତାହାର

ଏତଦ୍ୱାରା ସର୍ବସାଧାରଣଙ୍କୁ ଜଣାଇ ଦିଆଯାଉଛି ଯେ ରାଷ୍ଟ୍ରାୟତ୍ତ ତୈଳ କଂପାନୀ ଦ୍ୱାରା ଦୁଇ ପ୍ରକାର ଇନ୍ଧନ ଗ୍ୟାସ ସିଲିଣ୍ଡର ଯୋଗାଇ ଦିଆଯାଇଥାଏ । ତନ୍ମଧ୍ୟରୁ ୧୪.୨ କେ.ଜି. ଓ ୫ କେ.ଜି. ଓଜନ ବିଶିଷ୍ଟ ସିଲିଣ୍ଡରଗୁଡ଼ିକ ଘରୋଇ ଇନ୍ଧନ ରୂପେ ବ୍ୟବହାର ପାଇଁ ଉଦ୍ଦିଷ୍ଟ । ଏତଦ୍‌ବ୍ୟତୀତ ଉକ୍ତ ଓଜନ ବିଶିଷ୍ଟ ସିଲିଣ୍ଡର ମଧ୍ୟ ସରକାରୀ ବା ମ୍ୟୁନିସିପାଲଟି ଚିକିତ୍ସାଳୟ, ସ୍କୁଲ ଏବଂ କଲେଜର ପରୀକ୍ଷାଗାର, ଛାତ୍ରାବାସ ଓ ମଧ୍ୟାହ୍ନ ଭୋଜନ କେନ୍ଦ୍ର, ସରକାରୀ କାର୍ଯ୍ୟାଳୟରେ ଥିବା କ୍ୟାଣ୍ଟିନ୍, ଆରକ୍ଷୀ ମେସ୍, ଅର୍ଦ୍ଧ-ସାମରିକ ଓ ସାମରିକ ପ୍ରତିଷ୍ଠାନ, ସମବାୟ ଦାତବ୍ୟ ପ୍ରତିଷ୍ଠାନ, ଗବେଷଣାଗାର ଅଧୀନସ୍ଥ ବିଶ୍ଳେଷଣାଗାର ଏବଂ ସମବାୟ ସମୂହ ଅଧୀନରେ ପ୍ରତିଷ୍ଠିତ ଭୋଜନାଳୟରେ ବ୍ୟବହାର କରାଯାଇପାରିବ ।

ଉପରୋକ୍ତ ଓଜନ ବିଶିଷ୍ଟ ସିଲିଣ୍ଡର ବ୍ୟତୀତ ୧୯ କେ.ଜି. ଓ ୪୭ କେ.ଜି. ଓଜନ ବିଶିଷ୍ଟ ସିଲିଣ୍ଡର ରାଷ୍ଟ୍ରାୟତ୍ତ କଂପାନୀମାନଙ୍କ ଦ୍ୱାରା ବଜାରରେ ଉପଲବ୍ଧ ହେଉଛି । ଏଗୁଡ଼ିକ ଭୋଜନାଳୟ, ଘରୋଇ ଚିକିତ୍ସାଳୟ, ରାଷ୍ଟ୍ରାୟତ୍ତ ଘରୋଇ ସଂସ୍ଥା ଅଧୀନସ୍ଥ ଅତିଥିଶାଳା ଓ ଭୋଜନାଳୟ, ରାସ୍ତାକଡ଼ ଢାବା ଓ ଚା' ଦୋକାନ ତଥା ଅନ୍ୟାନ୍ୟ ଶିଳ୍ପ ସମ୍ବନ୍ଧୀୟ ସଂସ୍ଥାମାନଙ୍କରେ ବ୍ୟବହାର ପାଇଁ ଉଦ୍ଦିଷ୍ଟ । ଉକ୍ତ ଓଜନ ବିଶିଷ୍ଟ ସିଲିଣ୍ଡରଗୁଡ଼ିକ ଯାନବାହନରେ ଇନ୍ଧନ ରୂପେ ବ୍ୟବହାର କରାଯାଇପାରିବ ନାହିଁ । କିନ୍ତୁ ଯାନବାହନରେ ଗ୍ୟାସକୁ ଇନ୍ଧନ ରୂପେ ବ୍ୟବହାର କରିବାକୁ ହେଲେ, ଉକ୍ତ ଯାନଗୁଡ଼ିକରେ ସ୍ୱତନ୍ତ୍ର ଟାଙ୍କିର ବ୍ୟବସ୍ଥା ରହିବା ଦରକାର ।

ଯଦି କୌଣସି ବ୍ୟବସାୟ ପ୍ରତିଷ୍ଠାନ ଯାନବାହନର ମାଲିକ ଏହି ନିୟମକୁ ଉଲଂଘନ କରନ୍ତି, ସେମାନେ ଲିକ୍ୟୁଇଫାଏଡ୍ ପେଟ୍ରୋଲିୟମ୍ ଗ୍ୟାସ୍ (ରେଗୁଲେସନ୍ ଅଫ୍ ସପ୍ଲାଇ ଏବଂ ଡିଷ୍ଟ୍ରିବ୍ୟୁସନ୍ ଅର୍ଡର-୨୦୦୦) (Liquified Petroleum Gas Regulation of Supply and Distribution Order-2000) ଆଇନ ଅନୁଯାୟୀ ଦଣ୍ଡିତ ହେବେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ନିକଟ ଅତୀତରେ ଭୁବନେଶ୍ୱରରେ କେତେକ ହୋଟେଲରେ ଇନ୍ଧନ ପାଇଁ ଉଦ୍ଦିଷ୍ଟ ଘରୋଇ ଗ୍ୟାସ୍‌ର ଅପବ୍ୟବହାର ସଂପର୍କରେ ଜଣାଯିବା ପରେ ଆଇନ ଅନୁସାରେ ସେମାନଙ୍କର ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଛି । ଯଦି କୌଣସି ବ୍ୟକ୍ତି କିମ୍ବା ଅନୁଷ୍ଠାନ ଏହି ଆଇନ ଉଲଂଘନ କରି ଘରୋଇ ବ୍ୟବହାର ନିମିତ୍ତ ଉଦ୍ଦିଷ୍ଟ ଇନ୍ଧନ ଗ୍ୟାସକୁ ବ୍ୟବସାୟିକ ଅନୁଷ୍ଠାନମାନଙ୍କରେ ଲାଭଜନକ କାର୍ଯ୍ୟରେ ବ୍ୟବହାର କରୁଥାନ୍ତି, ତେବେ ଜନସାଧାରଣ ସାମୂହିକ ସ୍ୱାର୍ଥ ନିମନ୍ତେ 'ପ୍ରମୁଖ ଶାସନ ସଚିବ, ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ବିଭାଗ, ସଚିବାଳୟ, ଭୁବନେଶ୍ୱର ।' ଠିକଣାରେ ଜଣାଇଲେ, ଆଇନ ଅନୁସାରେ ଅପବ୍ୟବହାରକାରୀ ସଂସ୍ଥା ଅବା ବ୍ୟକ୍ତି ବିଶେଷଙ୍କ ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ । ପ୍ରକାଶ ଥାଉ କି, ସୂଚନା ପ୍ରଦାନକାରୀ ନାଗରିକଙ୍କ ନାମ ସଂପୂର୍ଣ୍ଣ ଗୋପନ ରଖାଯିବ ।

ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ବିଭାଗ, ଓଡ଼ିଶା ସରକାର







# ଜନତାର ପ୍ରିୟ ନେତା ନୀଳମଣି ରାଉତରାୟ

ବୈକୁଣ୍ଠନାଥ ପ୍ରଧାନ

ବିଗତ ପଚାଶରୁ ଉର୍ଦ୍ଧ୍ୱ ବର୍ଷ ଧରି ଜଣେ ଖ୍ୟାତନାମା ସମାଜସେବୀ , ଛାତ୍ର ତଥା ଟ୍ରେଡ୍ ୟୁନିଅନ ନେତା, ସାମ୍ବାଦିକ ଓ ରାଜନୀତିଜ୍ଞଭାବେ ସ୍ୱର୍ଗତଃ ନୀଳମଣି ରାଉତରାୟ ତାଙ୍କର ସରଳ ଓ ନମ୍ର ବ୍ୟବହାର ପାଇଁ ଜନସାଧାରଣଙ୍କର ସ୍ନେହ, ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ ହୋଇପାରିଥିଲେ । ଓଡ଼ିଶା ରାଜନୀତି କ୍ଷେତ୍ରରେ ସେ ଜଣେ ସୁଚତୁର ରାଜନୀତିଜ୍ଞ ଓ ଦକ୍ଷ ପ୍ରଶାସକ ରୂପେ ବିଶେଷ ଭାବରେ ଖ୍ୟାତି ଅର୍ଜନ କରିବା ସହ ଲୋକଙ୍କ ପ୍ରିୟ ନେତା ହୋଇପାରିଥିଲେ । ଲୋକଙ୍କର ବିଭିନ୍ନ ସମସ୍ୟା ପାଇଁ ସେ ଆରମ୍ଭରୁ ଶେଷ ଯାଏଁ ସଂଗ୍ରାମୀ ହିସାବରେ ଯୁଝି ଆସିଥିଲେ । ତ୍ୟାଗପୂତ ସଂଗ୍ରାମ ମାର୍ଗରେ ସେ ଛାତ୍ର ଆନ୍ଦୋଳନରୁ ତାଙ୍କର ରାଜନୈତିକ ଜୀବନ ଆରମ୍ଭ କରିଥିଲେ । ସେ ଜନସାଧାରଣଙ୍କ ପାଇଁ ସଂଗ୍ରାମର ମାର୍ଗ ବାଛି ନେଇଥିଲେ । ସେହି ମାର୍ଗରେ ସେ ହୋଇପାରିଥିଲେ ଛାତ୍ର ଓ ଶ୍ରମିକ ନେତା, ସ୍ୱାଧୀନତା ସଂଗ୍ରାମୀ, ସମାଜସେବୀ, ସାମ୍ବାଦିକ, ବିଧାୟକ, ମନ୍ତ୍ରୀ, ଉପମୁଖ୍ୟମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଓ କେନ୍ଦ୍ର ମନ୍ତ୍ରୀ ।

ଅବିଭକ୍ତ ବାଲେଶ୍ୱର ଜିଲ୍ଲା ତଥା ବର୍ତ୍ତମାନର ଭଦ୍ରକ ଜିଲ୍ଲା ଅନ୍ତର୍ଗତ ତିହିଡ଼ି ଥାନାର ମୁକୁନ୍ଦପୁର ଗ୍ରାମରେ ସେ ୧୯୨୦ ମସିହା ମଇ ୨୪ ତାରିଖ ଦିନ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ଚନ୍ଦ୍ରଶେଖର ରାଉତରାୟଙ୍କର ପ୍ରଚୁର ଜମିବାଡ଼ି ଥିଲା । ଗାଁ ବିଦ୍ୟାଳୟରୁ ସେ ପ୍ରାଥମିକ ଶିକ୍ଷା ସମାପ୍ତ କଲାପରେ ଭଦ୍ରକ ହାଇସ୍କୁଲରେ ପଢ଼ି ଥିଲେ । ୧୯୩୬ ମସିହାରେ ସେ ରେଭେନ୍ସା ମହାବିଦ୍ୟାଳୟରେ କଳା ଶ୍ରେଣୀରେ ନାମ ଲେଖାଇଥିଲେ । ୧୯୩୨ ମସିହାରେ, ତାଙ୍କୁ ଯେତେବେଳେ ମାତ୍ର ୧୨ ବର୍ଷ, ସେତେବେଳେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ରେଭେନ୍ସା କଲେଜରେ ପଢୁଥିଲା ବେଳେ କଲେଜ ପରିସରରେ କଂଗ୍ରେସ ଦଳର ପତାକା ଉଡ଼ାଇବା ଅଭିଯୋଗରେ କଲେଜ କର୍ତ୍ତୃପକ୍ଷ ତାଙ୍କୁ ବି.ଏ. ପରୀକ୍ଷା ଦେବାପାଇଁ ବାରଣ କରିଥିଲେ । ଏହାର ପ୍ରତିବାଦରେ ତାଙ୍କ ନେତୃତ୍ୱରେ ମହାବିଦ୍ୟାଳୟରେ ଧର୍ମଘଟ ହୋଇଥିଲା । ତଥାପି କଲେଜ କର୍ତ୍ତୃପକ୍ଷ ତାଙ୍କୁ ପରୀକ୍ଷା ଦେବା ପାଇଁ ଅନୁମତି ଦେଇ ନଥିଲେ ଏବଂ ୧୯୪୦ ମସିହାରେ ସେ ରେଭେନ୍ସା କଲେଜରୁ ବହିଷ୍କୃତ ହୋଇଥିଲେ । ଫଳରେ ସେ ୧୯୪୧ ମସିହାରେ କଲିକତା ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ବିଦ୍ୟାସାଗର ମହାବିଦ୍ୟାଳୟରେ ବି.ଏ. ଶ୍ରେଣୀରେ ନାମ ଲେଖାଇଥିଲେ । ଏଠାରୁ ବି.ଏ. ପାଶ୍ କରିବା ପରେ ସେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଏମ୍.ଏ. (ରାଜନୀତି ବିଜ୍ଞାନ) ପାଠ୍ୟକ୍ରମରେ ନାମ ଲେଖାଇଥିଲେ । ଏଠାରୁ ସେ ଏମ୍.ଏ. ପ୍ରଥମ ଭାଗ ପାଶ୍ କରିଥିଲେ । ମାତ୍ର, ଭାରତଛାଡ଼ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିବା ଦୃଷ୍ଟେ ୧୯୪୨ ମସିହାରେ ବନାରସ ବିଶ୍ୱବିଦ୍ୟାଳୟରୁ ସେ ବହିଷ୍କୃତ ହୋଇଥିଲେ । ତେଣୁ ସେ ପୁନର୍ବାର କଲିକତା ବିଶ୍ୱବିଦ୍ୟାଳୟ ଯାଇ ଏଲ୍.ଏଲ୍.ବି. ପାଠ୍ୟକ୍ରମରେ ନାମ ଲେଖାଇଥିଲେ । ଏଠାରୁ ଏଲ୍.ଏଲ୍.ବି. ପାଶ୍ କରିଥିଲେ ମଧ୍ୟ ତାଙ୍କ ଏମ୍.ଏ. ପାଶ୍ କରିବା ସ୍ୱପ୍ନ ବାସ୍ତବରେ ରୂପାୟିତ ହୋଇପାରିନଥିଲା । ସ୍ୱାଧୀନତା ସଂଗ୍ରାମ, ଟ୍ରେଡ୍ୟୁନିୟନ ଆନ୍ଦୋଳନ ଓ ସମାଜସେବା କ୍ଷେତ୍ରରେ ତାଙ୍କର ଅବଦାନ ଉଲ୍ଲେଖନୀୟ ଥିଲା । କଲିକତାସ୍ଥିତ ଓଡ଼ିଆ ସମାଜର ସେ ସମ୍ପାଦକ ଥିଲେ । ୧୯୪୬ ମସିହା ସାମ୍ପ୍ରଦାୟିକ ଦଙ୍ଗା ହାଙ୍ଗାମରେ ସେ କଲିକତାରେ ବିପନ୍ନ ହୋଇଥିବା ଶିଳ୍ପ ଶ୍ରମିକମାନଙ୍କର ଯଥେଷ୍ଟ ସେବା କରିଥିଲେ । କଲେଜରେ ପଢୁଥିବାବେଳେ ସେ ଜଣେ ସକ୍ରିୟ ଛାତ୍ରନେତା ହିସାବରେ ସୁପରିଚିତ ଥିଲେ ଏବଂ ଅଖିଳ ଭାରତ ଛାତ୍ର ମହାସଙ୍ଘ ଓଡ଼ିଶା ଶାଖାର ସେ ଅନ୍ୟତମ ପ୍ରତିଷ୍ଠାତା ଥିଲେ । ଏଥିସହିତ ସମ୍ପୃକ୍ତ ରାଜନୀତିକ କାର୍ଯ୍ୟକଳାପ ପାଇଁ ସେ ବହୁବାର କାରାବରଣ କରିଥିଲେ । ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଶିକ୍ଷାଲାଭ କରୁଥିବାବେଳେ ସେ ଭାରତଛାଡ଼ ଆନ୍ଦୋଳନରେ ସଂଶ୍ଳିଷ୍ଟ ହେବା ଦୃଷ୍ଟେ ବନାରସର ଡିଭିଜନାଲ କମିଶନର ତାଙ୍କୁ ବନାରସ ଛାଡ଼ିବାକୁ ନିର୍ଦ୍ଦେଶ ଦେଇଥିଲେ ।

ସେ ୧୯୪୯ ମସିହାରେ ବିଶିଷ୍ଟ ସମାଜସେବୀ ଓ ସାହିତ୍ୟିକା ନଳିନୀ ଦେବୀଙ୍କୁ ବିବାହ କରିଥିଲେ । ସର୍ବଭାରତୀୟ ଶ୍ରମିକ ସଂଗଠନ ଭାରତୀୟ ଜାତୀୟ ଶ୍ରମିକ କଂଗ୍ରେସ (ଆଇ.ଏନ୍.ଟି.ୟୁ.ସି.)ର ଓଡ଼ିଶା ଶାଖାକୁ ସଂଗଠିତ କରି ସେ ଏହାର ସାଧାରଣ ସମ୍ପାଦକ ଓ ପରେ ୧୯୪୮ ମସିହାରେ ସଭାପତି ହୋଇଥିଲେ । କିଛିକାଳ ସେ ଦୈନିକ





'ପ୍ରଜାତନ୍ତ୍ର'ର ସମ୍ପାଦକ ଦାୟିତ୍ୱ ତୁଲାଇଥିଲେ । ୧୯୭୩ ମସିହା ଫେବୃଆରୀ ମାସରେ ତାଙ୍କର ପତ୍ନୀ ବିୟୋଗ ଘଟିଥିଲା ।

୧୯୪୬ ମସିହାରେ ସେ ନୀଳଗିରି ବିଧାନସଭା ନିର୍ବାଚନ ମଣ୍ଡଳୀରୁ ପ୍ରତିଦ୍ୱନ୍ଦ୍ୱିତା କରି ପ୍ରଥମଥର ପାଇଁ ବିଧାୟକ ହେବାର ସୌଭାଗ୍ୟ ଅର୍ଜନ କରିଥିଲେ । ୧୯୫୨ ମସିହାରେ ସେ ଉପମନ୍ତ୍ରୀ ହୋଇଥିଲେ । ୧୯୫୨ରୁ ୧୯୫୭ ପର୍ଯ୍ୟନ୍ତ ଉପମନ୍ତ୍ରୀ ଓ ୧୯୫୭ରୁ ୧୯୬୭ ପର୍ଯ୍ୟନ୍ତ ସେ କ୍ୟାବିନେଟ୍ ମନ୍ତ୍ରୀ ହୋଇଥିଲେ । ତା'ମଧ୍ୟରେ ଦୁଇବର୍ଷ ୧୯୬୩ରୁ ୧୯୬୫ ପର୍ଯ୍ୟନ୍ତ ଉପମୁଖ୍ୟମନ୍ତ୍ରୀ ମଧ୍ୟ ରହିଥିଲେ । ୧୯୭୧ରେ ସେ ବାସୁଦେବପୁର ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ୧୯୭୨ରେ ପୁଣି ଉପମୁଖ୍ୟମନ୍ତ୍ରୀ ହୋଇଥିଲେ । ୧୯୭୩ ଫେବୃଆରୀରେ ସେ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇଥିଲେ । ମନ୍ତ୍ରୀ ହିସାବରେ ସେ କାଳକ୍ରମେ ବହୁ ବିଭାଗର ଦାୟିତ୍ୱ ନେଇ ସୁଚାରୁ ରୂପେ ତୁଲାଇ ଥିଲେ । ୧୯୭୬ ମସିହାରେ ସେ ରାଜ୍ୟସଭାକୁ ନିର୍ବାଚିତ ହୋଇଥିଲେ । ତେବେ ରାଜନୈତିକ ପ୍ରେକ୍ଷାପଟ୍ଟର ପରିବର୍ତ୍ତନରେ ରାଜ୍ୟସଭା ପଦ ଛାଡ଼ି ସେ ସେହି ବର୍ଷ ଜୁନ୍‌ରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ । ୧୯୮୯ ମସିହାରେ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ପ୍ରତାପସିଂହଙ୍କ ମନ୍ତ୍ରିମଣ୍ଡଳରେ ସେ କେନ୍ଦ୍ର ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ମନ୍ତ୍ରୀଭାବେ ଦାୟିତ୍ୱ ଗ୍ରହଣ କରିଥିଲେ । ସେହି ମନ୍ତ୍ରିମଣ୍ଡଳରେ ସେ ଜଙ୍ଗଲ ଓ ପରିବେଶ ବିଭାଗର ମନ୍ତ୍ରୀ ମଧ୍ୟ ଥିଲେ ।

ତାଙ୍କ ଅଧିନାୟକତ୍ୱରେ ଏକ ପ୍ରତିନିଧି ଦଳ ୧୯୬୪ ମସିହାରେ ଜେନେଭାଠାରେ ଅନୁଷ୍ଠିତ ଆନ୍ତର୍ଜାତିକ ଶ୍ରମ ସମ୍ମିଳନୀରେ ଯୋଗ ଦେଇଥିଲା । ସେ ସୁଇଜରଲ୍ୟାଣ୍ଡ, ଜର୍ମାନ, ଫ୍ରାନ୍‌ସ, ଇଂଲଣ୍ଡ ଓ ରୁଷିଆ ପ୍ରଭୃତି ବିଭିନ୍ନ ଦେଶ ପରିଭ୍ରମଣ କରିଥିଲେ । ନିଜ ଆତ୍ମଜୀବନୀ ପୁସ୍ତକ 'ସ୍ମୃତି ଅନୁଭୂତି'ର ସେ ରଚୟିତା ।

ତାଙ୍କର ଦୀର୍ଘ ରାଜନୀତିକ ଜୀବନରେ ସେ ଯାହା ଉଚିତ ମନେ କରୁଥିଲେ, ତହିଁର ପରିଣାମ ପ୍ରତି ଭ୍ରୂକ୍ଷେପ ନକରି, ତାହାର ବାସ୍ତବ ରୂପାୟନ ପାଇଁ ଚେଷ୍ଟା କରୁଥିଲେ । ରାଜ୍ୟରେ କେନ୍ଦୁପତ୍ର ବ୍ୟବସାୟର ଜାତୀୟକରଣ ପାଇଁ ତାଙ୍କ ଉଦ୍ୟମକୁ ରାଜ୍ୟର ଅଗଣିତ ଆଦିବାସୀ ଜନସାଧାରଣ ଚିରଦିନ ମନେ ରଖିବେ । ଜାତୀୟ ଓ ଆନ୍ତର୍ଜାତୀୟ କ୍ଷେତ୍ରରେ ଘଟୁଥିବା ରାଜନୀତିକ ଘଟଣାବଳୀ ଅନୁଧ୍ୟାନ କରିବା ଓ ରାଜନୀତି ସଂକ୍ରାନ୍ତୀୟ ବିଭିନ୍ନ ପୁସ୍ତକ ଅଧ୍ୟୟନ କରିବା ତାଙ୍କର ପ୍ରଧାନ ଅଭିରୁଚି ଥିଲା ।

ବହୁ ରାଜନୈତିକ ଝଡ଼ଝଞ୍ଜା ମଧ୍ୟରେ ସେ କେବେ ହାର୍ ମାନି ନଥିଲେ । ଜଣେ ସଂସ୍କୃତିପ୍ରେମୀ, ବିଦ୍ୱାନ ଓ ଜାତୀୟ ସ୍ତରର ବୁଦ୍ଧିଜୀବୀ ତଥା ରାଜନେତା ହିସାବରେ ସେ ସୁପରିଚିତ ଥିଲେ । ଓଡ଼ିଶାର ଜଣେ ସୁଯୋଗ୍ୟ ସନ୍ତାନ ହିସାବରେ ସେ ସବୁଦିନ ପାଇଁ ଓଡ଼ିଆଙ୍କର ପ୍ରେରଣାର ଉତ୍ସ ହୋଇ ରହିବେ ।

ନାଇଦୋଳି
କୁମ୍ଭାରମୂଳି, ବାଲେଶ୍ୱର

# ଭୋଟର ତାଲିକାର ସ୍ୱତନ୍ତ୍ର ସଂକ୍ଷିପ୍ତ ସଂଶୋଧନ - ୨୦୦୫

ବିଶ୍ୱର ସର୍ବବୃହତ୍ ଗଣତାନ୍ତ୍ରିକ ରାଷ୍ଟ୍ର ଭାରତବର୍ଷରେ ଅବାଧ ଓ ନିରପେକ୍ଷ ନିର୍ବାଚନ ସଂଚାଳନ ନିମନ୍ତେ ଏକ ସଠିକ୍ ତଥା ଶୁଦ୍ଧ ଭୋଟର ତାଲିକା ଅପରିହାର୍ଯ୍ୟ ଅଟେ ।

ଲୋକ ପ୍ରତିନିଧିତ୍ୱ ଅଧିନିୟମ ୧୯୫୧ର ଧାରା ୬୨ରେ ପ୍ରତ୍ୟେକ ଯୋଗ୍ୟ ବ୍ୟକ୍ତି, କେବଳ ଯେଉଁମାନଙ୍କ ନାମ ଭୋଟର ତାଲିକା ଅନ୍ତର୍ଭୁକ୍ତ ସେହିମାନଙ୍କୁ ମତଦାନର ଅଧିକାର ପ୍ରଦାନ କରାଯାଇଛି । ଯଦି କୌଣସି ଯୋଗ୍ୟ ବ୍ୟକ୍ତି ନିଜର ନାମ ଭୋଟର ତାଲିକାରେ ଦରଜ ନିମନ୍ତେ ଆବେଦନ କରନ୍ତି ନାହିଁ କିମ୍ବା ଯଦି କୌଣସି ଯୋଗ୍ୟ ବ୍ୟକ୍ତିଙ୍କର ନାମ ତ୍ରୁଟିବଶତଃ ସେଥିରେ ସ୍ଥାନ ପାଏ ନାହିଁ, ତେବେ ସେ ମତଦାନ ଅଧିକାର ସାବ୍ୟସ୍ତରୁ ବଂଚିତ ହୋଇଥାଆନ୍ତି । ଭୋଟର ତାଲିକାରେ ନାମ ଅନ୍ତର୍ଭୁକ୍ତ ନିମନ୍ତେ ଆବେଦନ ଏକ ନିରନ୍ତର ପ୍ରକ୍ରିୟା ହୋଇଥିଲେ ମଧ୍ୟ ଜନସାଧାରଣଙ୍କ ମଧ୍ୟରେ ସଚେତନତା ତଥା ପ୍ରଶାସନିକ ଆବଶ୍ୟକତାକୁ ଦୃଷ୍ଟିରେ ରଖି ନିର୍ବାଚନ କମିଶନ ସମୟକ୍ରମେ ଭୋଟର ତାଲିକାର ସଘନ, ସଂକ୍ଷିପ୍ତ, ଆଂଶିକ ସଂକ୍ଷିପ୍ତ ଓ ଆଂଗିକ ସଘନ ତଥା ସ୍ୱତନ୍ତ୍ର ଭାବେ ସଂଶୋଧନପୂର୍ବକ ଏହାକୁ ନିର୍ଭୁଲ କରିବା ନିମନ୍ତେ ଭାରତୀୟ ସମ୍ବିଧାନର ଅନୁଚ୍ଛେଦ ୩୨୪ ଅଧୀନରେ ଆଦେଶ ପ୍ରଦାନ କରି ଥାଆନ୍ତି ।

ସଂପ୍ରତି ନିର୍ବାଚନ କମିଶନ ୧.୧.୨୦୦୫ ତାରିଖକୁ ଯୋଗ୍ୟତା ଭିତ୍ତିରେ ଭୋଟର ତାଲିକାର ସ୍ୱତନ୍ତ୍ର ସଂକ୍ଷିପ୍ତ ସଂଶୋଧନ ନିମନ୍ତେ କାର୍ଯ୍ୟକ୍ରମ ଘୋଷଣା କରିଛନ୍ତି । ଏହି କାର୍ଯ୍ୟକ୍ରମ ଅନୁଯାୟୀ ଚଳିତ ବର୍ଷ ସେପ୍ଟେମ୍ବର ମାସ ୧୫ ତାରିଖରୁ ଅକ୍ଟୋବର ମାସ ୧୫ ତାରିଖ ପର୍ଯ୍ୟନ୍ତ ରେଜିଷ୍ଟ୍ରେସନ ଅଧିକାରୀଙ୍କ କାର୍ଯ୍ୟାଳୟ, ଡାକଘର ତଥା ଭୋଟ ଗ୍ରହଣ ସୂଚିତ କେନ୍ଦ୍ରମାନଙ୍କରେ ଭୋଟର ତାଲିକାର ଚିଠା ପ୍ରକାଶନ କରାଯାଇ ଦାବି ଓ ଆପତ୍ତି ଦରଖାସ୍ତ ଗ୍ରହଣ କରାଯାଉଛି । ବିଗତ ବର୍ଷମାନଙ୍କ ଭଳି ସ୍ୱତନ୍ତ୍ର ପ୍ରଚାର ଦିବସମାନଙ୍କରେ ପ୍ରତ୍ୟେକ ଭୋଟ ଗ୍ରହଣ କେନ୍ଦ୍ରରେ ଦାବି ଓ ଆପତ୍ତି ଦରଖାସ୍ତ ମଧ୍ୟ ଗ୍ରହଣ କରାଯିବ ।

ଏହି କାର୍ଯ୍ୟକ୍ରମର ଆଭିମୁଖ୍ୟ ସାଧନ ନିମନ୍ତେ ଉପରୋକ୍ତ ସ୍ଥାନମାନଙ୍କରେ ସ୍ୱତନ୍ତ୍ର ଅଧିକାରୀଙ୍କୁ ନିୟୋଜିତ କରାଯାଇଛି । ଆମ ରାଜ୍ୟ ନିମନ୍ତେ ଏକ ନିର୍ଭୁଲ ତଥା ଅଦ୍ୟତନ ଭୋଟର ତାଲିକା ପ୍ରସ୍ତୁତିରେ ସହାୟତା କରି ଓଡ଼ିଶାର ଯୋଗ୍ୟ ମତଦାତାମାନଙ୍କୁ ସେମାନଙ୍କର ମତଦାନ ଅଧିକାର ସାବ୍ୟସ୍ତ କରିବାର ଲକ୍ଷ୍ୟ ସାଧନ ନିମନ୍ତେ ଆନ୍ତରିକ ପ୍ରଚେଷ୍ଟା ଓ ସମସ୍ତଙ୍କ ସହଯୋଗ କାମନା କରାଯାଉଛି ।

# ଓଡ଼ିଶାର ତାଳପତ୍ର ପୋଥି ପାଣ୍ଡୁଲିପି ବୈଭବ

ଡଃ ଚନ୍ଦ୍ରଭାନୁ ପଟେଲ

**ସ**ମଗ୍ର ବିଶ୍ୱରେ ଭାରତ ସର୍ବାଧିକ ପୋଥି ପାଣ୍ଡୁଲିପିର ଗନ୍ତାଘର । ଏହି ପାଣ୍ଡୁଲିପିଗୁଡ଼ିକ ଭାରତର ବିଭିନ୍ନ ଭାଷାରେ ଧର୍ମ, ଦର୍ଶନ, ବିଜ୍ଞାନ, କଳା ଓ ସାହିତ୍ୟ ଇତ୍ୟାଦି ବିଷୟରେ ଲିଖିତ ହୋଇଅଛି । ଏଗୁଡ଼ିକ ତାଳପତ୍ର, କାଠ, କାଗଜ, ପଥର, ବାଉଁଶପତ୍ର, ରୂପା, ପିତ୍ତଳ, ବଳ୍କଳ ଓ ବସ୍ତ୍ର ପ୍ରଭୃତିରେ ଲିଖିତ ଓ ଖୋଦିତ ହୋଇ ଭାରତ ତଥା ବିଶ୍ୱର କୋଣ ଅନୁକୋଣରେ ରହିଅଛି । ଏହି ଅମୂଲ୍ୟ ପୋଥିଗୁଡ଼ିକ ମଧ୍ୟରୁ କେତେକ ନଷ୍ଟ ହୋଇଯାଇଥିବାବେଳେ ବର୍ତ୍ତମାନ ଅନେକ ଧ୍ୱଂସାଭିମୁଖୀ । ଏହାର ସର୍ବେକ୍ଷଣ, ପଞ୍ଜିକରଣ, ରକ୍ଷଣାବେକ୍ଷଣ ଓ ଏଥିରେ ଥିବା ଲୁକ୍କାୟିତ ଜ୍ଞାନର ପରିପ୍ରକାଶ ଓ ପ୍ରଚାର ଉଦ୍ଦେଶ୍ୟରେ ଭାରତ ସରକାର ଜାତୀୟ ପାଣ୍ଡୁଲିପି ଅଭିଯାନ ପ୍ରତିଷ୍ଠା କରିଛନ୍ତି । ଏହି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଦେଶ ବିଦେଶର ପାଣ୍ଡୁଲିପି ସହ ଜଡ଼ିତ ଥିବା ସଂସ୍ଥାମାନଙ୍କ ଦ୍ୱାରା ସାଧିତ ହେଉଛି । ଉପରୋକ୍ତ କାର୍ଯ୍ୟକ୍ରମର ସଫଳ ରୂପାୟନ ନିମନ୍ତେ ଜାତୀୟ ପାଣ୍ଡୁଲିପି ଅଭିଯାନ ଏ ପର୍ଯ୍ୟନ୍ତ ଏଥିସହ ଜଡ଼ିତ ଥିବା କେତେକ ପ୍ରମୁଖ ସଂସ୍ଥାଗୁଡ଼ିକୁ ପାଣ୍ଡୁଲିପି ସମ୍ଭାର କେନ୍ଦ୍ର ଭାବରେ ଚିହ୍ନିତ କରିଛନ୍ତି । ଇନ୍ଦିରାଗାନ୍ଧୀ ରାଷ୍ଟ୍ରୀୟ କଳାକେନ୍ଦ୍ର, ନୂଆଦିଲ୍ଲୀ, କେନ୍ଦ୍ରୀୟ ସଂସ୍ଥା ଭାବରେ କାର୍ଯ୍ୟ କରୁଥିବା ସମୟରେ ଓଡ଼ିଶାରେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟକୁ ପାଣ୍ଡୁଲିପି ସମ୍ଭାର କେନ୍ଦ୍ର ଭାବରେ ଚିହ୍ନିତ କରାଯାଇଛି । ରାଜ୍ୟ ସଂଗ୍ରହାଳୟର ଅଧୀକ୍ଷକ ଡକ୍ଟର ଚନ୍ଦ୍ରଭାନୁ ପଟେଲଙ୍କୁ ପ୍ରକଳ୍ପ-ସଂଯୋଜକ ଭାବରେ ମନୋନୀତ କରାଯାଇଛି । ଓଡ଼ିଶା ରାଜ୍ୟ ସଂଗ୍ରହାଳୟର କଳା ସଂରକ୍ଷଣ କେନ୍ଦ୍ରକୁ ପାଣ୍ଡୁଲିପି ସଂରକ୍ଷଣ କେନ୍ଦ୍ର ଭାବରେ ଚିହ୍ନିତ କରାଯାଇଛି । ଏ ସମସ୍ତ କାର୍ଯ୍ୟର ସଫଳ ରୂପାୟନ ନିମନ୍ତେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ପାଣ୍ଡୁଲିପି ସମ୍ଭାର କେନ୍ଦ୍ର, ରାଜ୍ୟର ବିଭିନ୍ନ ପ୍ରାନ୍ତରେ ଜନ ସଚେତନତା ଶିବିର, ପୋଥି ପଞ୍ଜୀକରଣ କାର୍ଯ୍ୟ ପରିଚାଳନା କରୁଅଛି । ଏଥିସହ ବ୍ୟକ୍ତିବିଶେଷ ଓ ଅନୁଷ୍ଠାନମାନଙ୍କରୁ କେନ୍ଦ୍ର ସରକାରଙ୍କ ଅଧୀନରେ ନୂଆଦିଲ୍ଲୀଠାରେ ପ୍ରସ୍ତାବିତ ଏକ ଜାତୀୟ ପାଣ୍ଡୁଲିପି ଗ୍ରନ୍ଥାଗାର ପ୍ରତିଷ୍ଠା ନିମନ୍ତେ ପୋଥି ବିନା ମୂଲ୍ୟରେ ଗ୍ରହଣ କରୁଛନ୍ତି । ଏହି ପୋଥି ପ୍ରକଳ୍ପ ଅଧୀନରେ ନଭେମ୍ବର ୨୨ ରୁ ୨୬, ୨୦୦୪ ତାରିଖ ମଧ୍ୟରେ ସମଗ୍ର



ଓଡ଼ିଶାରେ ଏକ ବ୍ୟାପକ ପାଣ୍ଡୁଲିପି ସର୍ବେକ୍ଷଣ କାର୍ଯ୍ୟ କରାଯିବ । ଏହାର ସଫଳତା ନିମନ୍ତେ ସମସ୍ତଙ୍କର ସାହାଯ୍ୟ ଓ ସହଯୋଗ ଏକାନ୍ତ କାମ୍ୟ ।

ଓଡ଼ିଶା ଉତ୍କୃଷ୍ଟ ମୂଲ୍ୟବାନ ତାଳପତ୍ର ପୋଥି ସଂପଦକୁ ନେଇ ଯେତିକି ବୁଦ୍ଧିମନ୍ତ ଉତ୍ତର ଓଡ଼ିଶାର ଉପାନ୍ତ ଅଂଚଳରୁ ସଂଗୃହୀତ ହୋଇଥିବା ପୋଥି ସମୂହକୁ ନେଇ ମଧ୍ୟ ସେତିକି ବୈଭବମୟ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ଏବଂ ବହୁ ବେସରକାରୀ ସଂସ୍ଥାରେ ଗଚ୍ଛିତ ଥିବା ବିଭିନ୍ନ ତାଳପତ୍ର ପୋଥି ପ୍ରାୟ ଦଶମ ଶତାବ୍ଦୀଠାରୁ ଓଡ଼ିଶାର ଐତିହ୍ୟ, ପ୍ରାଚୁର୍ଯ୍ୟ ଏବଂ ମହାନ୍ ପରଂପରାର ଗାଥା ବହନ କରି ଆସୁଛି । ଏହା ବାଲେଶ୍ୱର ଜିଲ୍ଲାର ଗାଂଧୀବେଧା ନିକଟରୁ ମିଳିଥିବା ଜୈନଭିକ୍ଷୁ କୁମାର ସେନଙ୍କ ଅଭିଲେଖରୁ ପ୍ରମାଣ ମିଳେ । ଓଡ଼ିଶାର ଐତିହ୍ୟ, ସଂସ୍କୃତି, କଳା ଓ କାରୁକାର୍ଯ୍ୟ ସଂପର୍କରେ ଏଗୁଡ଼ିକ ଯେ ଜ୍ଞାନର ଗନ୍ତାଘର, ଏଥିରେ ଦ୍ୱିରକ୍ତି ନାହିଁ । ଯେହେତୁ ଓଡ଼ିଶାରେ ତାଳପତ୍ର ବହୁଳ ଭାବରେ ଉପଲବ୍ଧ ହୁଏ, ତେଣୁ ଏଠାରେ ତାଳପତ୍ର ପୋଥି ପରଂପରାକ୍ରମେ ଅଧିକରୁ ଅଧିକ ଲୋକପ୍ରିୟ ହେବାକୁ ଲାଗିଲା । ବିଭିନ୍ନ ବିଷୟବସ୍ତୁକୁ ଲୌହ ଲେଖନୀ ସାହାଯ୍ୟରେ ଖୋଦନ କରିବା ମଧ୍ୟ କ୍ରମେ ସହଜ ମନେ ହେଲା । ଓଡ଼ିଆ ଲିପିର ଗୋଲାକୃତି ଶୈଳୀ ଯୋଗୁଁ ଏହା ଉନ୍ନତମାନର ହେବା ସହଜ ହୋଇପାରିବା ସଂଗେ ସଂଗେ ଏହି ପରଂପରା ଅଧୁନା ମଧ୍ୟ ଅପରିବର୍ତ୍ତିତ ରହିଛି ।

ସବୁଠାରୁ କୌତୁହଳର କଥା ହେଲା ଯେ, ଊନବିଂଶ ଶତାବ୍ଦୀରେ ବହୁ ସଂଖ୍ୟକ ପାଶ୍ଚାତ୍ୟ ଗବେଷକ ଓଡ଼ିଶାର ତାଳପତ୍ର ପୋଥି ପ୍ରତି ଆକୃଷ୍ଟ ହୋଇଥିବା ଜଣାପଡ଼େ । ରେଭରେଣ୍ଡ ଜେ. ଲଙ୍ଗ ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗଲରେ ପ୍ରଥମ ଗବେଷଣାତ୍ମକ ପ୍ରବନ୍ଧ ପ୍ରକାଶ ପାଇଥିଲା ଏବଂ ପରେ ପରେ ମାକେଂଜି, ସାର.ଜନ୍. ବିମ୍‌ସ, ବାଲେଶ୍ୱରର ତତ୍‌କାଳୀନ ଜିଲ୍ଲାପାଳ ଆର୍.ଏଲ. ମିତ୍ର, ଏମ.ଏମ୍. ଚକ୍ରବର୍ତ୍ତୀ, ଏଚ୍.ପି. ଶାସ୍ତ୍ରୀ ଏବଂ ପ୍ରଫେସର ମ୍ୟାଡୋନାଲ ପ୍ରଭୃତି ଓଡ଼ିଶାର ତାଳପତ୍ର ପୋଥି ପରଂପରା ସଂପର୍କରେ ଗବେଷଣା କରି ଏହାର ବିସ୍ତୃତ ଉତ୍କଳ ସଂସ୍କୃତି ଉପରେ ନୂତନ ଆଲୋକପାତ କରିଛନ୍ତି ।

୧୯୩୬ ମସିହାରେ ଓଡ଼ିଶା ଯେତେବେଳେ ଏକ ସ୍ୱତନ୍ତ୍ର ପ୍ରଦେଶ ଭାବେ ସ୍ୱୀକୃତି ପାଇଲା, ସେତେବେଳେ ସ୍ଥାନୀୟ ପଣ୍ଡିତମାନଙ୍କ ସାହାଯ୍ୟରେ ଓଡ଼ିଶା ତଥା ଉତ୍ତର ଓଡ଼ିଶାର ଉପାନ୍ତ ଅଂଚଳ ଯଥା ମେଦିନାପୁର, ଖଡଗପୁର, ପୁରୁଲିଆ, ଦୀଘା, ଜଳେଶ୍ୱର ଓ ବାଲେଶ୍ୱର ପ୍ରଭୃତି ସ୍ଥାନରେ ସୁରକ୍ଷିତ ଥିବା ତାଳପତ୍ର ପୋଥିଗୁଡ଼ିକର ତାଲିକା ପ୍ରସ୍ତୁତ କରିବା ପାଇଁ ପଦକ୍ଷେପ ନିଆଗଲା । ଏହିଭଳି ପ୍ରାୟ ୧୫ ହଜାର ପୋଥିର ଏକ ତାଲିକା ପ୍ରସ୍ତୁତ କରାଗଲା । ତନ୍ମଧ୍ୟରୁ ଏଗାର ହଜାର ପୋଥି ସଂପ୍ରତି ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସୁରକ୍ଷିତ ହୋଇ ରଖାଯାଇଛି । ପରବର୍ତ୍ତୀ ସମୟରେ ପ୍ରଫେସର ଜି.ଏସ୍. ଦାଶ ଏବଂ ପ୍ରଫେସର ଏନ୍. ବାନାର୍ଜୀଙ୍କର ପ୍ରଚେଷ୍ଟାରେ ଓଡ଼ିଶା ସରକାରଙ୍କର ଶିକ୍ଷା ବିଭାଗ ପକ୍ଷରୁ ଅନେକଗୁଡ଼ିଏ ତାଳପତ୍ର ପୋଥି ସାରା ଓଡ଼ିଶାରୁ ସଂଗ୍ରହ କରାଯାଇଥିଲା । ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ, ପୂର୍ଣ୍ଣଚନ୍ଦ୍ର ରଥ ଏବଂ କେଦାରନାଥ ମହାପାତ୍ରଙ୍କ ପରି ଗବେଷକମାନେ ସରକାରୀ ଏବଂ ବ୍ୟକ୍ତିଗତ ଭାବରେ ଅନେକ ପୋଥି ସଂଗ୍ରହ କରି ଓଡ଼ିଶା ତଥା ଉପାନ୍ତ ଅଞ୍ଚଳର ପୋଥି ସଂପଦକୁ ବହୁ ଭାବରେ ସମୃଦ୍ଧ କରିଛନ୍ତି ।



ଭାରତୀୟ ଦର୍ଶନରେ ଓଡ଼ିଆ ତାଳପତ୍ର ପୋଥି ଲେଖକମାନଙ୍କର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି । ବୌଦ୍ଧଧର୍ମର ପ୍ରସାର ପରଠାରୁ ଧର୍ମକୀର୍ତ୍ତି, କବି ଡିଣ୍ଡି, ଜୀବ ଦେବାଚାର୍ଯ୍ୟ, ଆଚାର୍ଯ୍ୟ ନୃସିଂହ ବାଜପେୟୀ, ବଳଦେବ ବିଦ୍ୟାଭୂଷଣ, ଇନ୍ଦ୍ରଭୂତି, ଲକ୍ଷ୍ମୀକରା ଆଦି ଭାରତୀୟ ଦାର୍ଶନିକମାନଙ୍କର ପୋଥିଜଗତକୁ ଦାନ ଅତୁଳନୀୟ । ନବମ ଶତାବ୍ଦୀର ପୁରୁଷୋତ୍ତମଦେବଙ୍କ ରଚିତ ତ୍ରିକାଣ୍ଡ ସେଶ ଏବଂ ହାରାବଳୀ ଏବଂ ମେଦିନୀ କରଙ୍କ ରଚିତ ମେଦିନି କୋଷ ଆଦି ଓଡ଼ିଆ ଅଭିଧାନ ଭାରତବର୍ଷରେ ସର୍ବତ୍ର ପ୍ରସାର ଲାଭ କରିଛି ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ବେଦ ଉପରେ ବିଶେଷ ପୋଥି ଦେଖିବାକୁ ମିଳେ ନାହିଁ । କାରଣ ଓଡ଼ିଶାର ଲୋକମାନେ ସାଧାରଣତଃ ରକ୍ଷଣଶୀଳ ହୋଇଥିବାରୁ ସେମାନେ ବ୍ୟକ୍ତିଗତ ପୋଥିଗୁଡ଼ିକୁ ଦାନ କରିବାକୁ ରାଜି ହୁଅନ୍ତି ନାହିଁ । ଏହି ପୋଥିର ବର୍ଣ୍ଣନା ଅନୁସାରେ ସେମାନେ ନାନା ପ୍ରକାରର ପୂଜା ଅର୍ଚ୍ଚନା କରଥାନ୍ତି । ଏହି କାରଣରୁ ପ୍ରାୟ ପ୍ରତ୍ୟେକ ଓଡ଼ିଆ ଘରେ ବହୁ ସଂଖ୍ୟାରେ ତାଳପତ୍ର ପୋଥି ଦେଖିବାକୁ ମିଳେ । ଯଜୁର୍ବେଦ ଓ ଅଥର୍ବବେଦର କେତେକ ପୋଥି ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲାରୁ ସଂଗ୍ରହ କରାଯାଇଅଛି । ଏହି ପୋଥିଗୁଡ଼ିକ ପାଠ କଲେ ତାହା ଓଡ଼ିଆ ପୋଥି ଲେଖାଳୀମାନଙ୍କ ଦ୍ୱାରା ଲିଖିତ ବୋଲି ପରିଷ୍କାର ଜଣାପଡ଼େ ।

ପଞ୍ଚଦଶ ଏବଂ ଷୋଡ଼ଶ ଶତାବ୍ଦୀର ମଧ୍ୟବର୍ତ୍ତୀ ସମୟ ଓଡ଼ିଆ ଭାଷାର ସୁବର୍ଣ୍ଣଯୁଗ । ଏହି ସମୟରେ ରାମ ଓ କୃଷ୍ଣଙ୍କ ବିଷୟରେ ଅନେକ ରଚନା ଓଡ଼ିଆ ସାହିତ୍ୟରେ ସ୍ଥାନ ପାଇଥିଲା । ଓଡ଼ିଆ ଗବେଷକମାନେ ଏହି ସମୟରେ ଶହ ଶହ ସଂଖ୍ୟାରେ ଛାନ୍ଦ, କାବ୍ୟ, ବୋଲି, ହାରାହାରି ପାଞ୍ଚ ହଜାର ଚଉତିଶା, ଏକ ଲକ୍ଷ ଚଉପଦୀ, କୋଡ଼ିଏ ହଜାର ପୋଇ, ପଚାଶରୁ ଊର୍ଦ୍ଧ୍ୱ କୋଇଲି ରଚନା କରିଥିଲେ । ପରିବର୍ତ୍ତୀ କାଳରେ ଅନେକ କବି ଏହା ଦ୍ୱାରା ଅନୁପ୍ରାଣିତ ହୋଇ ଆହୁରି କେତେକ ମୂଲ୍ୟବାନ ପୋଥି ରଚନା କରିଥିଲେ । ପିତାମ୍ବର ଦେବଙ୍କର ଅଖିଳ ରଥଦ ଚିନ୍ତାମଣି, କେଶବ ରଥଙ୍କର ଅନଙ୍ଗ ରାଗିଣୀ, ଶ୍ୟାମସୁନ୍ଦର ଦେବଙ୍କର ଅନୁରାଗ କଳ୍ପଲତା ଓ ରାମଚନ୍ଦ୍ର ପଟ୍ଟନାୟକଙ୍କର ହାରାବତୀ, ଏଗୁଡ଼ିକ ମଧ୍ୟରୁ ଅନ୍ୟତମ । ଇତିହାସକୁ ନେଇ ଅନେକ ତାଳପତ୍ର ପୋଥି ମଧ୍ୟ ଆମେ ଦେଖିବାକୁ ପାଉ । ଓଡ଼ିଆ ଗବେଷକମାନଙ୍କ ରଚିତ ଅନେକ ବେଙ୍ଗଲି ଏବଂ ହିନ୍ଦୀ ପୋଥି ମଧ୍ୟ ରହିଛି । ଓଡ଼ିଆ କବିମାନଙ୍କ ରଚିତ ବେଙ୍ଗଲି ପୋଥି ମଧ୍ୟରୁ ରାମଚନ୍ଦ୍ର ପଟ୍ଟନାୟକଙ୍କର କୃଷ୍ଣଲୀଳା, ଦ୍ୱାରୀକା ଦାସଙ୍କର ମାନସମନ୍ଥନ, ଗୌରଚନ୍ଦ୍ର ପରିଚ୍ଛାଙ୍କର ଗୋବର୍ଦ୍ଧନ ଉତ୍ସବ, ପିଣ୍ଡିକା ଶ୍ରୀଚନ୍ଦନଙ୍କର ବସନ୍ତରାସ, ନଟବର ଦାସଙ୍କର ଦୋଳରାସ, ଜଗନ୍ନାଥ ଦାସଙ୍କର ଗଙ୍ଗା ମାହାତ୍ମ୍ୟ ଅନ୍ୟତମ । ଏହା ବ୍ୟତୀତ ବର୍ତ୍ତମାନ ତେଲୁଗୁ, ତାମିଲ, ପାର୍ଶୀ, ଉର୍ଦ୍ଦୁ ଭାଷାରେ ବହୁ ପୋଥି ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସଂଗୃହିତ ହୋଇ ରହିଅଛି । ବେଦାର୍ଥ ପ୍ରବେଶ ଟୀକା, ଅଥର୍ବବେଦର ପିପ୍ପଲଦା ସଂହିତା, ନାମାବଳୀ ତନ୍ତ୍ର, ଦୁର୍ଗା ଜଣାଣ ଦୀପିକା, ଭୁବନେଶ୍ୱରୀ ପ୍ରକାଶ, ତାରିଣୀ କୁଳସୁଦ୍ଧା ତରଂଗିଣୀ, କ୍ରିତ୍ୟ କୈମୁଦି, ଗୀତା ପ୍ରକାଶ, ସଂଗୀତ ନାରାୟଣ, ସଂଗୀତ କଳ୍ପଲତା,





ମଣିମାଳା ନାଟିକା, ରୁକ୍ମଣୀ ପରିଣୟ, ଗୀତଗୋବିନ୍ଦ, ଭରତାମୃତ୍ୟ, ମହାକାବ୍ୟ ଆଦି ଅନେକ ପୋଥି ସଂଗ୍ରହ କରାଯାଇ ଗବେଷକମାନଙ୍କର ଆବଶ୍ୟକ ପାଇଁ ରଖାଯାଇଛି ।

ନିମ୍ନଲିଖିତ ସତାଇଶଟି ବିଭାଗରେ ରାଜ୍ୟ ସଂଗ୍ରହାଳୟର ପୋଥି ସବୁକୁ ବିଭକ୍ତ କରାଯାଇଛି । ଯଥା- ବେଦ, ତନ୍ତ୍ର, ଜ୍ୟୋତିଷ, ଧର୍ମଶାସ୍ତ୍ର, ଆୟୁର୍ବେଦ, ଗଣିତ, ଶିଳ୍ପଶାସ୍ତ୍ର, ସଂଗୀତ, ଅଭିଧାନ, ବ୍ୟାକରଣ, ସଂସ୍କୃତ ପୁରାଣ, ସଂସ୍କୃତ କାବ୍ୟ, ଅଳଂକାର, ବେଙ୍ଗଲି(ସଂସ୍କୃତ), ବେଙ୍ଗଲି, ଦେବନାଗରୀ, ଓଡିଆ ପୁରାଣ, ଓଡିଆ କାବ୍ୟ, ଓଡିଆ ଗଦ୍ୟ ସାହିତ୍ୟ, ଓଡିଆ ଇତିହାସ, କାଗଜ ପୋଥି (ସଂସ୍କୃତ), କାଗଜ ପୋଥି (ଓଡିଆ), ନକଲ ପୋଥି, ଆରବିକ୍, ଦର୍ଶନ, ତେଲୁଗୁ ଏବଂ ଚିତ୍ରିତ ତାଳପତ୍ର ।

ଓଡିଶାର ଉପାନ୍ତ ଅଂଚଳରେ ଅନେକ ପୋଥି ଉପଯୁକ୍ତ ଯତ୍ନ ଅଭାବରୁ ଗାଁ ଗହଳରେ ଅବହେଳିତ ଅବସ୍ଥାରେ ପଡିରହିଛି । ଆମ ସାଂସ୍କୃତିକ ଐତିହ୍ୟ ବହନ କରୁଥିବା ସେହି ପୋଥିଗୁଡିକର ବିଭିନ୍ନ ଅନୁଷ୍ଠାନ ତଥା ବ୍ୟକ୍ତି ସମୂହଙ୍କ ଦ୍ୱାରା ଉପଯୁକ୍ତ ଯତ୍ନ ନିଆଯାଇପାରିଲେ ଓଡିଶାର ତାଳପତ୍ର ପୋଥି ସଂପଦକୁ ଅକ୍ଷୁଣ୍ଣ ରଖାଯାଇ ପାରନ୍ତା ।

ଓଡିଶାରେ ବର୍ତ୍ତମାନ ଭାରତ ସରକାରଙ୍କର ପୋଥି ପାଣ୍ଡୁଲିପି ଅଭିଯାନ ରାଜ୍ୟ ସଂଗ୍ରହାଳୟ ଜରିଆରେ ଆରମ୍ଭ କରାଯାଇଛି । ଏହି ପ୍ରକଳ୍ପ ମାଧ୍ୟମରେ ଅଦ୍ୟାବଧି ୮୦ ହଜାରରୁ ଊର୍ଦ୍ଧ୍ୱ ନୂତନ ତାଳପତ୍ର



ପୋଥି ସର୍ବେକ୍ଷଣ ଓ ପଞ୍ଜୀକରଣ କରାଯାଇଛି । ଏହି ସର୍ବେକ୍ଷଣ କାର୍ଯ୍ୟକ୍ରମ ବର୍ତ୍ତମାନ ଚାଲୁ ରହିଛି । ଏକ ପ୍ରାରମ୍ଭିକ ଆକଳନରୁ ସାରାଭାରତରେ ୫୦ ଲକ୍ଷରୁ ଊର୍ଦ୍ଧ୍ୱ ଓ ଓଡିଶାରେ ୫ ଲକ୍ଷରୁ ଊର୍ଦ୍ଧ୍ୱ ତାଳପତ୍ର ପୋଥି ଥିବାର ପ୍ରାକ୍ ଆକଳନ କରାଯାଇଛି । ସର୍ବେକ୍ଷଣରୁ ଆହୁରି ମଧ୍ୟ ଜଣାଯାଇଛି ଯେ, ଖାଲି ତାଳପତ୍ର ନୁହେଁ ଅନ୍ୟାନ୍ୟ ମାଧ୍ୟମ ଯଥା ତମ୍ବାପଟା, ରୂପାପଟା, ବାଉଁଶପତ୍ର, ବଲ୍କଳ, ହାତ ତିଆରି କାଗଜ ଚମଡା ତଥା ବସ୍ତ୍ର ଦେହରେ ମଧ୍ୟ ଅନେକ ପୋଥି ଓ ପାଣ୍ଡୁଲିପି ଥିବାର ଜଣାଯାଇଛି । ଏହି ସର୍ବେକ୍ଷଣ କାର୍ଯ୍ୟ ସଂପୂର୍ଣ୍ଣ ହେଲେ ଓଡିଶାର ପୋଥି ପାଣ୍ଡୁଲିପି ବୈଭବର ଅନେକ ନୂତନ ଦିଗନ୍ତ ଉନ୍ମୋଚିତ ହେବ ବୋଲି ଆଶା କରାଯାଏ ।

ଅଧ୍ୟକ୍ଷ, ରାଜ୍ୟ ସଂଗ୍ରହାଳୟ,
ଭୁବନେଶ୍ୱର

---

# କହ ମାତା ଆଉ ଥରେ ଆସିବ କି ନାହିଁ ?

ଅଧ୍ୟାପକ ବିକ୍ରମ କେଶରୀ ବର୍ମା

ବିଳାସ ବ୍ୟସନେ ବୁଡ଼ି ରହି
ଯେବେ ହୀନ ବଳ ହେଲେ ଦେବଗଣ
ଅସୁର ରାଜା ମହିଷା
ପ୍ରତାପୀ ଶୁମ୍ଭ ନିଶୁମ୍ଭଙ୍କ ସାଥେ
ଧାଡ଼ି ଦେଲା ସ୍ୱର୍ଗଭୂମି
ଅଧିକାର କଲା ସ୍ୱର୍ଗ ସିଂହାସନ

(୨)

ଭୀତତ୍ରସ୍ତ ଦେବଗଣେ ହରିପାଦେ ପଶିଲେ ଶରଣ
ଅସୁର ନିଧନ ଅର୍ଥେ
ମହାମାୟା ସୃଷ୍ଟି କଲେ ନାରାୟଣ ।

(୩)

ଦୁର୍ଗାଦେବୀ ଦେବଗଣେ କରିଲେ ଆହ୍ୱାନ
ସର୍ବ ଶକ୍ତି ମୋର ଅଙ୍ଗେ କର ସମର୍ପଣ
ବ୍ରହ୍ମ ଅସ୍ତ୍ର ପାଶୁପତ ଆଉ ବଜ୍ରବାଣ
ସବୁ ଦେବତାଙ୍କ ଅସ୍ତ୍ର ମୋର ହସ୍ତେ କରନ୍ତୁ ଅର୍ପଣ

(୪)

ଷୋଳ ଭୁଜା ଦୁର୍ଗା ଦେବ ଅସ୍ତ୍ର ଧରି ନିଜ କରେ
ପ୍ରବେଶ ହୋଇଲେ ଯାଇ ମହିଷା ପୁରରେ
କରି ଘୋର ରଣ
ଶୁମ୍ଭ ନିଶୁମ୍ଭଙ୍କ ସହ ମହିଁଷା ଅସୁର କହିଲେ ନିଧନ ।

(୫)

ସେଦିନୁ ଅପାରଯୁଗ ଗଲାଣିତ ବହି
ନୂତନ ମହିଁଷା କେତେ
ଅତ୍ୟାଚାର କରନ୍ତି ଏଠାରେ
ସେମାନଙ୍କ ବିନାଶ ନିମିତ୍ତ
କହ ମାତା ଆଉ ଥରେ ଆସିବ କି ନାହିଁ ?

ବିଧାୟକ, ମାହାଙ୍ଗା
ଡି.ଏସ୍.-୧୭/୧, ୟୁନିଟ-୪, ଭୁବନେଶ୍ୱର





# ସ୍ୱୟଂ ସହାୟକ ଗୋଷ୍ଠୀ ମାଧ୍ୟମରେ ଗ୍ରାମୀଣ ମହିଳାମାନଙ୍କ ଆତ୍ମନିଯୁକ୍ତି

ସୌରଜିତ ଦାସ

ନୂତନ ସହସ୍ରାବ୍ଦର ପ୍ରାରମ୍ଭରେ ପ୍ରଳୟଙ୍କରୀ ମହାବାତ୍ୟା ଓ ବନ୍ୟା ରାଜ୍ୟର ଜନଜୀବନକୁ ସମ୍ପୂର୍ଣ୍ଣ ରୂପେ ବିପର୍ଯ୍ୟସ୍ତ କରି ଦେଇଥିବାବେଳେ ଉତ୍କଟ ଆର୍ଥିକ ସଙ୍କଟ ରାଜ୍ୟକୁ ବସ୍ତୁତଃ ପଙ୍ଗୁ କରି ଦେଇଥିଲା । ଏହାର ମୁକାବିଲା କରିବା ପାଇଁ ରାଜ୍ୟ ସରକାରଙ୍କ ପକ୍ଷରୁ ବ୍ୟାପକ ଜନହିତକର ପଦକ୍ଷେପମାନ ଗ୍ରହଣ କରାଯାଇଛି । ଏହା ସହିତ ରାଜ୍ୟର ସାମାଜିକ ଓ ଅର୍ଥନୈତିକ ବିକାଶ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବା ନିମନ୍ତେ ସରକାରଙ୍କ ପକ୍ଷରୁ ଦୀର୍ଘ ଓ ସ୍ୱଳ୍ପ ମିଆଦୀ ଯୋଜନାମାନ ସମୟସୀମା ମଧ୍ୟରେ କାର୍ଯ୍ୟକାରୀ କରିବା ଦିଗରେ ସମସ୍ତ ପ୍ରୟାସ ଜାରି ରହିଛି । ଉଦାହରଣ ସ୍ୱରୂପ - ମହିଳା ସଶକ୍ତିକରଣ, ଦୁର୍ନୀତି ମୁକ୍ତ ଶାସନ, ପଞ୍ଚାୟତିରାଜ ବ୍ୟବସ୍ଥାର ସୁଦୃଢ଼ୀକରଣ, ପ୍ରାକୃତିକ ବିପର୍ଯ୍ୟୟର ମୁକାବିଲା, ଗ୍ରାମ୍ୟ ବିକାଶ ଇତ୍ୟାଦି ।

ରାଜ୍ୟ ସରକାର ମହିଳା ସଶକ୍ତିକରଣ କ୍ଷେତ୍ରରେ ଅଗ୍ରାଧିକାର ଦେଇ ମହିଳାମାନଙ୍କୁ କ୍ଷମତା ପ୍ରଦାନ କରିବା ଦିଗରେ ସମସ୍ତ ପଦକ୍ଷେପ ଗ୍ରହଣ କରିଛନ୍ତି । ସରକାର ମହିଳାମାନଙ୍କୁ କ୍ଷମତା ପ୍ରଦାନ, ପ୍ରଗତିର ଏକ ଗୁରୁତ୍ୱପୂର୍ଣ୍ଣ ପରିମାପକ ବୋଲି ପ୍ରକାଶ କରିବା ସଂଗେସଂଗେ ରାଜ୍ୟକୁ ଏକ ଦୁର୍ନୀତିମୁକ୍ତ ଶାସନ ପ୍ରଦାନ କରିବେ ବୋଲି ଆଶାପୋଷଣ କରିଛନ୍ତି ।

୨୦୦୧ ମସିହା ଆନ୍ତର୍ଜାତିକ ମହିଳା ଦିବସ ଅବସରରେ 'ମିଶନ ଶକ୍ତି' ନାମକ ଏକ ସ୍ୱୟଂ ସହାୟକ ଗୋଷ୍ଠୀ ଯୋଜନା ଆରମ୍ଭ କରିବା ସଂଗେସଂଗେ 'ମହିଳା କ୍ଷମତାପନ୍ନ' ବର୍ଷଭାବେ ଘୋଷଣା କରାଯାଇଥିଲା । ଏହି କାର୍ଯ୍ୟକ୍ରମ ମାଧ୍ୟମରେ ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ କରାଯାଇ ମହିଳାମାନଙ୍କୁ କ୍ଷମତାପନ୍ନ କରିବା କାର୍ଯ୍ୟକ୍ରମକୁ ପ୍ରାଧାନ୍ୟ ଦିଆଯାଉଛି ।

ମିଶନ ଶକ୍ତି କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ ହୋଇଥିବା ମହିଳା ସ୍ୱୟଂ ସହାୟକ ଗୋଷ୍ଠୀର ସଦସ୍ୟାମାନଙ୍କ ଆର୍ଥିକ ଅଭିବୃଦ୍ଧି ପାଇଁ ସେମାନଙ୍କୁ ମତ୍ସ୍ୟଚାଷ, କୁକୁଡ଼ାପାଳନ, ଫଳଚାଷ, ଶ୍ରମଭିତ୍ତିକ କାର୍ଯ୍ୟ ସହିତ ଖୁଚୁରା କିରୋସିନି ବିକ୍ରି, ସାଧାରଣ ବଣ୍ଟନ ବ୍ୟବସ୍ଥା ଇତ୍ୟାଦି କାର୍ଯ୍ୟପ୍ରତି ଉତ୍ସାହିତ କରାଯିବା ସଂଗେସଂଗେ ସେମାନଙ୍କର ଆର୍ଥିକ ମାନଦଣ୍ଡକୁ ସୁଦୃଢ଼ କରାଯିବା ପାଇଁ କାର୍ଯ୍ୟପନ୍ଥାମାନ ସରକାରଙ୍କ ପକ୍ଷରୁ ଗ୍ରହଣ କରାଯାଉଛି । ମିଶନ ଶକ୍ତି କାର୍ଯ୍ୟକ୍ରମରେ ରାଜ୍ୟରେ ବର୍ତ୍ତମାନ ସୁଦ୍ଧା ୧୨ ଲକ୍ଷ ୪୨ ହଜାର ୩୧୩ ଜଣ ସଦସ୍ୟାଙ୍କୁ ନେଇ ୧ ଲକ୍ଷ ୧୯ ହଜାର ୧୯୪ଟି ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ କରାଯାଇ ପାରିଛି । ସେଥିମଧ୍ୟରୁ ୫୮,୫୬୯ଟି ସ୍ୱୟଂ ସହାୟକ ଗୋଷ୍ଠୀଙ୍କୁ ବିଭିନ୍ନ ଜାତୀୟକରଣ ବ୍ୟାଙ୍କରୁ ୭୩.୯୭ କୋଟି ଟଙ୍କା ସହାୟତା ଯୋଗାଇ ଦିଆଯାଇଛି । ଏ ସମସ୍ତ ସ୍ୱୟଂ ସହାୟକ ଗୋଷ୍ଠୀ ଦ୍ୱାରା ୪୫.୮୫ କୋଟି ଟଙ୍କା ସଞ୍ଚୟ କରାଯାଇ ପାରିଛି । ଏହାଛଡ଼ା ଜନଶ୍ରୀ ବୀମା ଯୋଜନାରେ ୯୦,୭୩୯ଟି ମହିଳା ସ୍ୱୟଂ ସହାୟକ ଗୋଷ୍ଠୀକୁ ଅନ୍ତର୍ଭୁକ୍ତ କରାଯାଇଛି । ରାଜ୍ୟର ଦକ୍ଷିଣାଞ୍ଚଳ ଜିଲ୍ଲା ତଥା ଆଦିବାସୀବହୁଳ ଜିଲ୍ଲାମାନଙ୍କରେ ମିଶନ ଶକ୍ତି କାର୍ଯ୍ୟକ୍ରମ ପ୍ରତି ମହିଳାମାନଙ୍କର ବେଶ୍ ଆଗ୍ରହ ସୃଷ୍ଟି ହୋଇଥିବାର ପରିଲକ୍ଷିତ ହେଉଛି । ଏହାଛଡ଼ା ବୌଦ୍ଧ ସମେତ କେ.ବି.କେ. ଜିଲ୍ଲାର ୩୬ଟି ବ୍ଲକ୍‌ରେ ମହିଳାମାନଙ୍କୁ ଅଧିକ କ୍ଷମତା ଦେବା ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ ୮୪୧ଟି କେନ୍ଦ୍ରୀୟ ସହାୟତାରେ 'ସ୍ୱୟଂସିଦ୍ଧ ଯୋଜନା' ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଜରିଆରେ କାର୍ଯ୍ୟକାରୀ ହେଉଛି । ଗ୍ରାମପଞ୍ଚାୟତର ପୋଖରୀକୁ ମାଛ ଚାଷ ପାଇଁ ବିଭିନ୍ନ ସ୍ୱୟଂ ସହାୟକ ଗୋଷ୍ଠୀକୁ ଲିଜ୍ ସୂତ୍ରରେ ଦିଆଯାଇଛି । ଏଥିମଧ୍ୟରୁ ଦକ୍ଷିଣାଞ୍ଚଳ ଜିଲ୍ଲାମାନଙ୍କରେ ୪୮୧ଟି ପୋଖରୀକୁ ଲିଜ୍ ଦିଆଯାଇଛି । ସେହିପରି ୩୪୧ଟି ସ୍ୱୟଂ ସହାୟକ ଗୋଷ୍ଠୀକୁ ଉନ୍ନତମାନର କଦଳୀଚାଷ ପାଇଁ ଆର୍ଥିକ ସହାୟତା ଯୋଗାଇ ଦିଆଯାଇଛି । ଏତଦ୍‌ବ୍ୟତୀତ ଗୋଷ୍ଠୀର ସଦସ୍ୟାମାନଙ୍କର ଦକ୍ଷତା ବୃଦ୍ଧି ନିମନ୍ତେ ସେମାନଙ୍କୁ ଧନ୍ଦାମୂଳକ ତାଲିମର ମଧ୍ୟ ବ୍ୟବସ୍ଥା କରାଯାଇଛି ।

ସ୍ୱୟଂ ସହାୟକ ଗୋଷ୍ଠୀ ଦ୍ୱାରା ଉତ୍ପାଦିତ ଦ୍ରବ୍ୟର ବଜାର ବ୍ୟବସ୍ଥା, ଗୋଷ୍ଠୀ ପିଛା ଋଣ ସହାୟତା ୧୭,୦୦୦ରୁ ୪୦,୦୦୦ ଟଙ୍କାକୁ ବୃଦ୍ଧି କରିବା, ବର୍ତ୍ତମାନ ସୁଦ୍ଧା ଗଠନ କରାଯାଇଥିବା ଗୋଷ୍ଠୀଗୁଡ଼ିକୁ ଅଧିକ ସୁଦୃଢ଼ କରିବା, ଜିଲ୍ଲା ସ୍ତରରେ ଜିଲ୍ଲା ସମ୍ବଳ କେନ୍ଦ୍ର ପ୍ରତିଷ୍ଠା କରାଯିବା ଏବଂ ଗୋଷ୍ଠୀଗୁଡ଼ିକୁ ମହାସଂଘରେ ଅନୁବନ୍ଧିତ କରିବା ପ୍ରଭୃତି କାର୍ଯ୍ୟ ପ୍ରତି ଗୁରୁତ୍ୱ ଦିଆଯାଇ ପଦକ୍ଷେପ ନିଆଯିବ ବୋଲି ବିଭାଗୀୟ ସୂତ୍ରରୁ ପ୍ରକାଶ ।





ସ୍ୱୟଂ ସହାୟକ ଗୋଷ୍ଠୀ କେବଳ ସାଧାରଣବର୍ଗ ମହିଳାମାନଙ୍କ ମଧ୍ୟରେ ସୀମିତ ନ ରହି ବର୍ତ୍ତମାନ ଏହା ଆଦିବାସୀ ବହୁଳ ଅଞ୍ଚଳର ମହିଳାମାନଙ୍କ ମଧ୍ୟରେ ଆଦୃତ ହେଲାଣି ।

ବୌଦ୍ଧ ଜିଲ୍ଲାର ଗୁଣ୍ଡୁରୀ ସାହି ଏକ ଆଦିବାସୀ ବହୁଳ ଅଞ୍ଚଳ । ଏହି ଅଞ୍ଚଳର ମହିଳାମାନେ ଏକତ୍ର ହୋଇ ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଗଠନ କରିଥିଲେ । ଛେଳି ପାଳନ କାର୍ଯ୍ୟକ୍ରମ ପାଇଁ ସ୍ୱର୍ଣ୍ଣ ଜୟନ୍ତୀ ଗ୍ରାମ୍ୟ ସ୍ୱରୋଜଗାର ଯୋଜନା ମାଧ୍ୟମରେ ସେମାନଙ୍କୁ ବ୍ୟାଙ୍କ ଋଣ ଭାବେ ୨.୭୦ ଲକ୍ଷ ଟଙ୍କା ଯୋଗାଇ ଦିଆଯାଇଥିଲା । ସେହି ଅର୍ଥରୁ ୧.୨୫ ଲକ୍ଷ ଟଙ୍କା ସବ୍‌ସିଡ଼ି ମିଳିଥିଲା । ଏହି ଋଣରେ ୧୦୦ଟି ଛେଳି ଓ ୧୦ଟି ବୋଦା (ଅଣ୍ଡିରା ଛେଳି) ଯୋଗାଇ ଦିଆଯାଇଥିଲା । ଏଥିମଧ୍ୟରୁ ୨୫ଟି ଛୁଆ ଜନ୍ମ କରିସାରିଲେଣି ଏବଂ ୪୫ଟି ଛେଳି ନିକଟରେ ଛୁଆ ଜନ୍ମ କରିବେ । ଏହା ଦ୍ୱାରା ହିତାଧିକାରୀମାନେ ନିଜର ଆର୍ଥିକ ମାନଦଣ୍ଡ ବଢ଼ାଇବା ସଂଗେସଂଗେ ନିଜର ପିଲାମାନଙ୍କର ଶିକ୍ଷାଦାନ ପ୍ରତି ଉପଯୁକ୍ତ ଧ୍ୟାନ ଦେଇ ପାରୁଛନ୍ତି ଏବଂ ଋଣ ପରିଶୋଧ ଦିଗରେ ନିଜର ଆତ୍ମବିଶ୍ୱାସ ସୃଷ୍ଟି କରିପାରିଛନ୍ତି ।

ଜଗତସିଂହପୁର ଜିଲ୍ଲାର ଗ୍ରାମାଞ୍ଚଳ ଲୋକମାନଙ୍କର ପ୍ରାୟତଃ କୃଷି ଓ ପଶୁପାଳନ ମୁଖ୍ୟ ଜୀବିକା ନିର୍ବାହ ପନ୍ଥା । ତେଣୁ ସେ ଅଞ୍ଚଳର କେତେକ ସ୍ୱୟଂ ସହାୟକ ଗୋଷ୍ଠୀ କୁକୁଡ଼ା ପାଳନ ଓ ଛେଳି ପାଳନ ବ୍ୟବସାୟ କରି ନିଜ ନିଜର ଆର୍ଥିକ ସ୍ଥିତି ସୁଦୃଢ଼ କରିବା ସଂଗେସଂଗେ ନିଜ ଭିତରେ ଏକତା ଓ ଶକ୍ତି ପ୍ରଦର୍ଶନ କରିପାରିଛନ୍ତି । ସେହି ସ୍ୱୟଂ ସହାୟକ ଗୋଷ୍ଠୀ ମଧ୍ୟରୁ 'ମା' ସ୍ୱୟଂ ସହାୟକ ଗୋଷ୍ଠୀ ଅନ୍ୟତମ । ଏହି ସ୍ୱୟଂ ସହାୟକ ଗୋଷ୍ଠୀର ବିଭିନ୍ନ କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ଡେଙ୍ଗା ପୋଲରେ ଥିବା ସିଣ୍ଡିକେଟ ବ୍ୟାଙ୍କ ସ୍ୱର୍ଣ୍ଣ ଜୟନ୍ତୀ ଗ୍ରାମ୍ୟ ସ୍ୱରୋଜଗାର ଯୋଜନା ମାଧ୍ୟମରେ ୨.୫ ଲକ୍ଷ ଟଙ୍କା ଆର୍ଥିକ ସହାୟତା ଯୋଗାଇ ଦେଇଛନ୍ତି । ଉକ୍ତ ଅର୍ଥରେ ମା' ସ୍ୱୟଂ ସହାୟକ ଗୋଷ୍ଠୀ ୬୦ଟି ଛେଳି କିଣିବା ସହିତ ତାଙ୍କର ରହିବା ପାଇଁ ସେଡ୍ ନିର୍ମାଣ କରିଛନ୍ତି । ଏହାଛଡ଼ା ୦.୮୦ ଏକର ଜମିରେ ମାଛଚାଷ କରିବା ସହିତ କଦଳୀ ଚାଷ ମଧ୍ୟ କରିଛନ୍ତି । ଏଥିପାଇଁ କିଣାବିକା ବଜାରର କୌଣସି ଅସୁବିଧା ନାହିଁ ବୋଲି ଦର୍ଶାଇଛନ୍ତି । ଏହାଦ୍ୱାରା ଗୋଷ୍ଠୀରେ ଥିବା ସଭ୍ୟ/ସଭ୍ୟାମାନଙ୍କର ଜୀବନଧାରାରେ ପରିବର୍ତ୍ତନ ଆସିଛି । ମା' ସ୍ୱୟଂ ସହାୟକ ଗୋଷ୍ଠୀ ଆଣିଥିବା ଋଣ ମଧ୍ୟରୁ ୫୦ ହଜାର ଟଙ୍କା ପରିଶୋଧ କରିସାରିଲେଣି । ତାଙ୍କର ପ୍ରାୟ ମାସିକ ୧୦ ହଜାର ଟଙ୍କା ଲାଭ ହେଉଛି ବୋଲି ପ୍ରକାଶ କରିଛନ୍ତି ।

ମୟୂରଭଞ୍ଜ ଜିଲ୍ଲାର ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମରେ କାପ୍ତିପଦା ବ୍ଲକ୍‌ର ବଡ଼ଖଲାଡ଼ି ଗ୍ରାମର 'ନବଦିଗନ୍ତ ସ୍ୱୟଂ ସହାୟକ ଗୋଷ୍ଠୀ' ଆଶାତୀତ ସଫଳତା ଲାଭ କରିପାରିଛନ୍ତି । ଏହି ସ୍ୱୟଂ ସହାୟକ ଗୋଷ୍ଠୀ ଡୋକ୍‌ରା କାର୍ଯ୍ୟକ୍ରମରେ ଅନ୍ତର୍ଭୁକ୍ତ । ଏହି ସଂସ୍ଥା ପ୍ରଥମେ ଗୋଷ୍ଠୀ ଭିତରେ ୧୫ ହଜାର ଟଙ୍କା ସଂଗ୍ରହ କରି ହଳଦୀ ଗୁଣ୍ଡ ବ୍ୟବସାୟ ଆରମ୍ଭ କରିଥିଲେ । ଏହା ଦ୍ୱାରା 'ନବ ଦିଗନ୍ତ' ସ୍ୱୟଂ ସହାୟକ ଗୋଷ୍ଠୀ ବ୍ୟାଙ୍କ ଋଣ ପାଇବା ପାଇଁ ସୁଯୋଗ ପାଇଲା । ସେମାନଙ୍କ ଭିତରେ ଭରି ରହିଥିବା ବ୍ୟବସାୟିକ ମନୋଭାବ ଏବଂ ଆହୁରି କିଛି କରିବା ପାଇଁ ଆଗ୍ରହକୁ ଦୃଷ୍ଟିରେ ରଖି ବ୍ୟାଙ୍କ ଋଣ ଭାବେ ଉକ୍ତ ଗୋଷ୍ଠୀକୁ ୮୪ ହଜାର ଟଙ୍କାର ସବ୍‌ସିଡ଼ି ସହିତ ୨ ଲକ୍ଷ ଟଙ୍କାର ଋଣ ମଂଜୁର କରାଯାଇଥିଲା । ଏହି ଋଣରେ ଗୋଷ୍ଠୀ ମାଧ୍ୟମରେ ହଳଦୀଗୁଣ୍ଡ ଭଳି ବିଭିନ୍ନ ମସଲାଗୁଣ୍ଡ ଯଥା- ଲଙ୍କାଗୁଣ୍ଡ, ଜିରାଗୁଣ୍ଡ, ଗରମ ମସଲାଗୁଣ୍ଡ ପ୍ରଭୃତି ପ୍ରସ୍ତୁତ କରି ହାଟରେ ବିକ୍ରି କରିବା ସହିତ ଘର ଘର ବୁଲି ବିକ୍ରି କରିବାର ବ୍ୟବସ୍ଥା କରିପାରିଛନ୍ତି । ଏଥିସହିତ ଜିଲ୍ଲା ଭିତରେ ବିଭିନ୍ନ ବିଦ୍ୟାଳୟର ମଧ୍ୟାହ୍ନ ଭୋଜନ ନିମନ୍ତେ ଏହି ସ୍ୱୟଂ ସହାୟକ ଗୋଷ୍ଠୀ ତାଙ୍କର ବିଭିନ୍ନ ପ୍ରସ୍ତୁତ ସାମଗ୍ରୀ ମଧ୍ୟ ଯୋଗାଇ ଦେଉଛନ୍ତି । ବର୍ତ୍ତମାନ ଗୋଷ୍ଠୀର ସଭ୍ୟମାନେ ୧୫ ଶହ ଟଙ୍କା ରୋଜଗାର କରିପାରୁଛନ୍ତି ।

ସ୍ୱାବଲମ୍ବନଶୀଳ ସମାଜ ଗଠନ ଲକ୍ଷ୍ୟରେ ସରକାର ମହିଳାମାନଙ୍କର ସାମଗ୍ରିକ ବିକାଶ ଓ ମହିଳା ସଶକ୍ତିକରଣ ଉପରେ ସର୍ବାଧିକ ଗୁରୁତ୍ୱ ଆରୋପ କରୁଛନ୍ତି । ରାଜ୍ୟରେ ମିଶନ୍ ଶକ୍ତିର ବିକାଶ ପ୍ରକ୍ରିୟାରେ ମହିଳାମାନଙ୍କର ପ୍ରତ୍ୟକ୍ଷ ଅଂଶ ଗ୍ରହଣକୁ ପ୍ରୋତ୍ସାହନ ଦିଆଯାଇ ସଞ୍ଚୟ ଓ ଅନ୍ୟାନ୍ୟ ଆୟବୃଦ୍ଧିକାରୀ କାର୍ଯ୍ୟରେ ସେମାନଙ୍କୁ ସଂଶ୍ଳିଷ୍ଟ କରାଯିବା ପାଇଁ ପ୍ରୟାସ ଜାରି ରହିଛି । ଏଥିରୁ କେବଳ ଯେ ଦାରିଦ୍ର୍ୟ ସୀମାରେଖା ତଳେ ବସବାସ କରୁଥିବା ତଥା ସମାଜର ନିମ୍ନ ଆୟକାରୀ ପରିବାରର ମହିଳାମାନେ ଉପକୃତ ହେଉଛନ୍ତି ତା'ନୁହେଁ, ପରନ୍ତୁ ସମାଜର ଅନ୍ୟାନ୍ୟ ବର୍ଗର ମହିଳାମାନେ ମଧ୍ୟ ଏଥିରେ ସାମିଲ ହୋଇ ନିଜ ନିଜ ପରିବାରର ଆୟବୃଦ୍ଧିରେ ବେଶ୍ ସହାୟକ ହୋଇପାରୁଛନ୍ତି । ଏ ଦିଗରେ ସରକାରଙ୍କର ମହିଳା ଓ ଶିଶୁ ବିକାଶ ବିଭାଗ ପକ୍ଷରୁ ସମସ୍ତ ପ୍ରକାର ସରକାରୀ ସହାୟତା ପ୍ରଦାନ କରାଯାଉଛି । ବାସ୍ତବିକ ସରକାରଙ୍କର 'ମିଶନ ଶକ୍ତି' ଯୋଜନା ଭବିଷ୍ୟତରେ ନିଶ୍ଚୟ ରାଜ୍ୟର ମହିଳାମାନଙ୍କ ସାମାଜିକ ତଥା ଆର୍ଥିକ ସ୍ଥିତିରେ ପରିବର୍ତ୍ତନ ଆଣି ଦେବ ଏଥିରେ ସନ୍ଦେହ ନାହିଁ ।

ଡି.ଆଇ.ପି.ଆର୍.ଓ.
ସୂଚନା ଓ ଲୋକ ସଂପର୍କ ବିଭାଗ
ୟୁନିଟ୍-୭, ଭୁବନେଶ୍ୱର








# ସମ୍ବାଦ ପରିକ୍ରମା



## ଏକ ଲକ୍ଷ ଆଦିବାସୀଙ୍କ ପାଇଁ ନିଯୁକ୍ତି ସୁଯୋଗ ସୃଷ୍ଟି କରାଯିବ - ମୁଖ୍ୟମନ୍ତ୍ରୀ

ରାଜ୍ୟର ଆଦିବାସୀମାନଙ୍କର ଓ ଆଦିବାସୀ ବହୁଳ ଅଂଚଳର ବିକାଶ ପାଇଁ କାର୍ଯ୍ୟକାରୀ କରାଯାଉଥିବା କାର୍ଯ୍ୟକ୍ରମ ଓ ଯୋଜନା ସଂପର୍କରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ସଚିବାଳୟଠାରେ ଏକ ଉଚ୍ଚସ୍ତରୀୟ ବୈଠକରେ ସମୀକ୍ଷା କରିଥିଲେ ।

ରାଜ୍ୟର ଆଦିବାସୀମାନଙ୍କର ଆର୍ଥିକ ଅବସ୍ଥାରେ ଉନ୍ନତି ଆଣିବା ସଂଗେସଂଗେ ଏକ ଲକ୍ଷ ଆଦିବାସୀଙ୍କୁ ତିରୋଟ ସମୟରେ କାମଧନ୍ଦା ଯୋଗାଇଦେବା ପାଇଁ ଜଂଗଲ କାମ, ବାଉଁଶ, ଜଳ ସଂରକ୍ଷଣ ଏବଂ ଫଳ ଓ ପନିପରିବା ଚାଷ, ଯୋଗାଯୋଗ ବ୍ୟବସ୍ଥା ଏବଂ ଗୋଷ୍ଠୀଗତ ଜଳସେଚନ ପ୍ରକଳ୍ପ ମାଧ୍ୟମରେ କାମଧନ୍ଦା ଓ ଆତ୍ମନିଯୁକ୍ତିର ସୁଯୋଗ ସୃଷ୍ଟି କରାଯିବ । ବିକାଶ କାର୍ଯ୍ୟକ୍ରମକୁ ଲୋକଙ୍କ ପାଖକୁ ଦେବା ପାଇଁ ଆଦିବାସୀ ଅଂଚଳରେ ଖାଲି ପଡ଼ିଥିବା ବିଭିନ୍ନ ସରକାରୀ ପଦବୀ ଶୀଘ୍ର ପୂରଣ କରିବା ପାଇଁ ଜରୁରୀ କାଳୀନ ପଦକ୍ଷେପ ନେବା ପାଇଁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଥିଲେ ।

ଆଦିବାସୀ ଅଂଚଳରେ ସ୍ୱାସ୍ଥ୍ୟ ସେବାରେ ଉନ୍ନତି ଆଣିବା ପାଇଁ ଖାଲି ପଡ଼ିଥିବା ଡାକ୍ତର ପଦବୀ ଅଗ୍ରାଧିକାର ଭିତ୍ତିରେ ପୂରଣ କରାଯିବ ଓ ଡାକ୍ତରୀ ଦଳ ମାଧ୍ୟମରେ ସ୍ୱାସ୍ଥ୍ୟ ଶିବିରମାନ ଆୟୋଜନ କରାଯିବା ପାଇଁ ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଥିଲେ । ପାରା ମେଡ଼ିକାଲ ପଦବୀଗୁଡ଼ିକ ପୂରଣ ପାଇଁ ପଦକ୍ଷେପ ନିଆଯିବା ସଂଗେସଂଗେ ଏ କ୍ଷେତ୍ରରେ ଉପଯୁକ୍ତ ତାଲିମପ୍ରାପ୍ତ ଯୁବକ ଯୁବତୀ ମିଳୁ ନଥିବାରୁ କୋରାପୁଟଠାରେ ଏକ ନର୍ସିଂ ଓ ଫାର୍ମାସୀ କଲେଜ ଖୋଲିବା ପାଇଁ ଉଦ୍ୟମ କରାଯିବ । ଏତଦ୍‌ବ୍ୟତୀତ ଆଦିବାସୀମାନଙ୍କର ବିକାଶ ପାଇଁ ନିମ୍ନୋକ୍ତ କାର୍ଯ୍ୟକ୍ରମମାନ ଗ୍ରହଣ କରାଯିବା ପାଇଁ ବୈଠକରେ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । (୧) ଆଦିବାସୀ ଅଂଚଳମାନଙ୍କରେ କାମ କରୁଥିବା ମହିଳା ସ୍ୱୟଂ ସହାୟକ ଗୋଷ୍ଠୀଗୁଡ଼ିକୁ ଅନ୍ତତଃପକ୍ଷେ ୫୦ କୋଟି ଟଙ୍କା ଋଣ ଯୋଗାଇ ଦିଆଯିବ । (୨) ଆଦିବାସୀ ଜିଲ୍ଲାମାନଙ୍କରେ ଜିଲ୍ଲାପାଳମାନେ ବ୍ୟାପକ ଗସ୍ତ କରିବା ସହିତ ପ୍ରତି ମାସ ସାତ ରାତି ବ୍ଲକ୍ ଅଂଚଳରେ ରହିବେ ଓ ତନ୍ମଧ୍ୟରୁ ଅନ୍ତତଃପକ୍ଷେ ଦୁଇଟି ଦୁଇ ଦିନିଆ ଗସ୍ତ ରହିବା ଆବଶ୍ୟକ । (୩) ଉପଯୁକ୍ତ ପ୍ରଚାର ସହ ତହସିଲଦାରମାନେ କ୍ୟାଂପ୍ କୋର୍ଟ ଆୟୋଜନ କରିବେ ଯଦ୍ୱାରା ଆଦିବାସୀମାନଙ୍କୁ ଜମିଜମା ମୋକଦ୍ଦମା ପାଇଁ ତହସିଲର ସଦର ମହକୁମାକୁ ଯିବାକୁ ପଡ଼ିବ ନାହିଁ । (୪) ଘର ଡିହ ନଥିବା ଆଦିବାସୀମାନଙ୍କୁ ଘରଡିହ ଯୋଗାଇ ଦିଆଯିବ । ଏହି କାର୍ଯ୍ୟ ଏକ ବର୍ଷ ମଧ୍ୟରେ ଶେଷ କରାଯିବ । (୫) ଆଦିବାସୀ ଗ୍ରାମଗୁଡ଼ିକର ବିଦ୍ୟୁତୀକରଣ ପାଇଁ ତ୍ୱରିତ ପଦକ୍ଷେପ ନିଆଯିବ । (୬) ଆଦିବାସୀ ଅଂଚଳମାନଙ୍କରେ ଥିବା ଜଂଗଲ ସଂକ୍ରାନ୍ତୀୟ ଲଘୁ ମାମଲାଗୁଡ଼ିକ ପ୍ରତ୍ୟାହାର କରାଯିବ । (୭) ଚଳିତ ବର୍ଷ ବାଉଁଶ କାରବାର ଆରମ୍ଭ କରାଯାଇ ଏହା ମାଧ୍ୟମରେ ଆଦିବାସୀମାନଙ୍କୁ କାମଧନ୍ଦା ଯୋଗାଇ ଦିଆଯିବ । (୮) ୧୯୮୦ ମସିହା ପୂର୍ବରୁ ଆଦିବାସୀମାନଙ୍କର ଥିବା ଜଂଗଲ ଜମିଗୁଡ଼ିକୁ ବନ୍ଦୋବସ୍ତ କରିବା ପାଇଁ ଆଶୁ ପଦକ୍ଷେପ ନିଆଯିବ । (୯) ବନ ସୁରକ୍ଷା ବିକାଶ ସମିତିଗୁଡ଼ିକର କାର୍ଯ୍ୟକ୍ରମର ସଂପ୍ରସାରଣ ପାଇଁ ଜଂଗଲ ବିଭାଗ ପକ୍ଷରୁ ପଦକ୍ଷେପ ନିଆଯିବ । (୧୦) ରାଜସ୍ୱ ବିଭାଗ ଓ ରାଜସ୍ୱ କମିଶନରମାନେ ଜିଲ୍ଲା ଓ ସବ୍‌ଡିଭିଜନ ସ୍ତରରେ ଆଦିବାସୀମାନଙ୍କୁ ସେମାନଙ୍କ ଜମି ଫେରାଇ ଦେବାପାଇଁ ଗଠନ କରାଯାଇଥିବା ଟାସ୍କ ଫୋର୍ସର କାର୍ଯ୍ୟ ନିୟମିତ ସମୀକ୍ଷା କରିବେ ।

ଉନ୍ନୟନ କମିଶନର ଏହିସବୁ ନୂତନ କାର୍ଯ୍ୟକ୍ରମର ନିୟମିତ ଭାବେ ତଦାରଖ କରିବେ ଏବଂ ପ୍ରତିମାସରେ ମୁଖ୍ୟମନ୍ତ୍ରୀଙ୍କୁ ଅବଗତ କରାଇବେ ବୋଲି ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଇଛନ୍ତି ।

ଏହି ସମୀକ୍ଷା ବୈଠକରେ ମୁଖ୍ୟ ଶାସନ ସଚିବ ଡଃ ସୁବାସ ପାଣି, ଉନ୍ନୟନ କମିଶନର ଶ୍ରୀ ଅଜିତ୍ କୁମାର ତ୍ରିପାଠୀ, କୃଷି ଉତ୍ପାଦନ କମିଶନର ଶ୍ରୀ ଗୌତମ ବୁଦ୍ଧ ମୁଖାର୍ଜୀ, ମୁଖ୍ୟମନ୍ତ୍ରୀଙ୍କ ପ୍ରମୁଖ ସଚିବ ଶ୍ରୀ ବିଜୟ କୁମାର ପଟ୍ଟନାୟକଙ୍କ ସମେତ ରାଜସ୍ୱ ବିଭାଗର ପ୍ରମୁଖ ସଚିବ, ଜଂଗଲ ଓ ତଫସିଲଭୁକ୍ତ ଜାତି ଉପଜାତି ବିକାଶ ବିଭାଗର ଶାସନ ସଚିବମାନେ ଉପସ୍ଥିତ ଥିଲେ ।

## କ୍ରୀଡ଼ା ବିଭାଗକୁ କ୍ରିୟାଶୀଳ କରିବା ଲାଗି ବ୍ୟାପକ ଅଭିଯାନ - ସ୍ପୋର୍ଟସ୍ ଡିରେକ୍ଟୋରୀ ପ୍ରକାଶ ପାଇବ

ରାଜ୍ୟର ପ୍ରତିଭାବାନ କ୍ରୀଡ଼ାବିତ୍‌ମାନଙ୍କ ସଂପର୍କରେ ପୂର୍ଣ୍ଣାଙ୍ଗ ତଥ୍ୟକୁ ସଂକଳିତ କରି ଏକ 'ସ୍ପୋର୍ଟସ୍ ଡିରେକ୍ଟୋରୀ' ପ୍ରକାଶ ପାଇବାକୁ ଯାଉଛି । କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକଙ୍କ ନିର୍ଦ୍ଦେଶକ୍ରମେ କ୍ରୀଡ଼ା ବିଭାଗ ପକ୍ଷରୁ ସଂପ୍ରତି ଏହି ଡିରେକ୍ଟୋରୀ ସଂକଳନ କାର୍ଯ୍ୟ ଆରମ୍ଭ ହୋଇଛି ।





କ୍ରୀଡ଼ା ବିଭାଗକୁ ଅଧିକ କ୍ରିୟାଶୀଳ କରିବା ଉଦ୍ଦେଶ୍ୟରେ ବିଭାଗ ପକ୍ଷରୁ ବ୍ୟାପକ ପଦକ୍ଷେପ ଗ୍ରହଣ କରାଯାଇଛି । କ୍ରୀଡ଼ା କ୍ଷେତ୍ରରେ ଉତ୍କର୍ଷତା ଆଣି ଓଡ଼ିଶାକୁ ଦେଶରେ ଏକ ଅଗ୍ରଣୀ କ୍ରୀଡ଼ା ରାଜ୍ୟର ମାନ୍ୟତା ପ୍ରଦାନ ଲକ୍ଷ୍ୟ ନେଇ କ୍ରୀଡ଼ା ବିଭାଗକୁ ଅଧିକ ଚଳଚଂଚଳ ଓ କ୍ରିୟାଶୀଳ କରାଯିବାର ପ୍ରକ୍ରିୟା ଆରମ୍ଭ ହୋଇଛି । ଏହି ପରିପ୍ରେକ୍ଷୀରେ କ୍ରୀଡ଼ାର ଉନ୍ନତି ଓ ପ୍ରସାର ନିମନ୍ତେ ବ୍ୟାପକ ପଦକ୍ଷେପ ଗ୍ରହଣ କରାଯିବା ସାଂଗକୁ ଉଦୀୟମାନ କ୍ରୀଡ଼ାବିତ୍‌ମାନଙ୍କୁ ପ୍ରୋତ୍ସାହନ ପ୍ରଦାନ ଏବଂ କୃତୀ କ୍ରୀଡ଼ାବିତ୍‌ମାନଙ୍କ ପାଇଁ ନଗଦ ଅର୍ଥ ପୁରସ୍କାର ବ୍ୟବସ୍ଥା କରାଯାଇଛି । ଉଦୀୟମାନ କ୍ରୀଡ଼ାବିତ୍‌ମାନଙ୍କୁ ଉପଯୁକ୍ତ ତାଲିମ ପ୍ରଦାନ ଏବଂ କ୍ରୀଡ଼ା ଭିତ୍ତିଭୂମିର ବିକାଶ ଉପରେ ବିଶେଷ ଗୁରୁତ୍ୱ ଦିଆଯିବା ସହ ଏ ଦିଗରେ ପ୍ରୟାସ ଜାରି ରହିଛି ।

କଟକସ୍ଥିତ ଜବାହରଲାଲ ନେହେରୁ ଇନ୍‌ଡୋର ଷ୍ଟାଡ଼ିୟମ୍, ଭୁବନେଶ୍ୱରର କଳିଙ୍ଗ ଷ୍ଟାଡ଼ିୟମ୍, ବ୍ରହ୍ମପୁର କ୍ରୀଡ଼ା ପ୍ରକଳ୍ପ, ପାନପୋଷ ଆଷ୍ଟ୍ରୋଟର୍ଫ ହକି ପଡ଼ିଆକୁ ଅଧିକ କ୍ରିୟାଶୀଳ କରାଯିବା ପାଇଁ ପଦକ୍ଷେପ ଗ୍ରହଣ କରାଯିବା ସହିତ ୨୬ଟି ବ୍ୟବହାରିକ ଷ୍ଟାଡ଼ିୟମ୍ କାର୍ଯ୍ୟ ଆଗେଇ ଚାଲିଛି । ବର୍ତ୍ତମାନ ପାଇଁ ଆଉ ଅଧିକ ନୂତନ ପ୍ରକଳ୍ପ କାର୍ଯ୍ୟ ହାତକୁ ନନେଇ ଅସଂପୂର୍ଣ୍ଣ ପ୍ରକଳ୍ପଗୁଡ଼ିକୁ ଯଥାଶୀଘ୍ର ସଂପୂର୍ଣ୍ଣ କରାଯିବା ଉପରେ ବିଭାଗୀୟ ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକଙ୍କ ଗୁରୁତ୍ୱ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ।

ସେହିପରି ବିଭାଗ ତରଫରୁ ରାଜ୍ୟର ପୁରାତନ ତଥା ନୂତନ କୃତୀ କ୍ରୀଡ଼ାବିତ୍‌ମାନଙ୍କ ସଂପର୍କରେ ଏକ 'ସ୍ପୋର୍ଟସ୍ ଡିରେକ୍ଟୋରୀ' ପ୍ରସ୍ତୁତ କରିବା ପାଇଁ ମନ୍ତ୍ରୀ ଶ୍ରୀ ନାୟକଙ୍କ ନିର୍ଦ୍ଦେଶ ଉଲ୍ଲେଖନୀୟ । ମନ୍ତ୍ରୀ ଶ୍ରୀ ନାୟକଙ୍କ ନିର୍ଦ୍ଦେଶକ୍ରମେ କ୍ରୀଡ଼ା ଓ ଯୁବସେବା ବିଭାଗ ପକ୍ଷରୁ ବର୍ତ୍ତମାନ ଏ ଦିଗରେ ଜୋର୍‌ସୋର୍ ଉଦ୍ୟମ ଆରମ୍ଭ ହୋଇଛି । ରାଜ୍ୟର ୩୦ଟିଯାକ ଜିଲ୍ଲାରେ ଥିବା ଏହି ପ୍ରତିଭାମାନଙ୍କ ସଂପର୍କରେ ବିଶେଷ ତଥ୍ୟ ସଂଗ୍ରହ କରାଯାଇ ଲିପିବଦ୍ଧ କରାଯିବ । ଏହାଦ୍ୱାରା ଦେଶ ପାଇଁ ଓ ରାଜ୍ୟ ପାଇଁ ଗୌରବ ଆଣି ଦେଇଥିବା ଏବଂ ଦେଉଥିବା କୃତୀ କ୍ରୀଡ଼ାବିତ୍‌ମାନଙ୍କ ପରବର୍ତ୍ତୀ ସାମାଜିକ ଜୀବନ ଉପରେ ସରକାର ଅବଗତ ହୋଇପାରିବା ସହିତ ଆବଶ୍ୟକ ସ୍ଥଳେ ସହାୟତା ପ୍ରଦାନ ଏବଂ କ୍ରୀଡ଼ାର ବିକାଶ ଓ ଉନ୍ନତି ଦିଗରେ ସେମାନଙ୍କ ସେବା ମଧ୍ୟ ଉପଲବ୍ଧ ହୋଇପାରିବ ।

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନିର୍ଦ୍ଦେଶକ୍ରମେ କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକଙ୍କ ନେତୃତ୍ୱରେ କ୍ରୀଡ଼ା ଓ ଯୁବସେବା ବିଭାଗ ପକ୍ଷରୁ ବହୁବିଧ କାର୍ଯ୍ୟକ୍ରମମାନ ଗ୍ରହଣ କରାଯିବା ସହିତ ଓଡ଼ିଶାକୁ ଦେଶର ଏକ ଅଗ୍ରଣୀ କ୍ରୀଡ଼ା ରାଜ୍ୟର ମାନ୍ୟତା ପ୍ରଦାନ ନିମନ୍ତେ ବ୍ୟାପକ ଉଦ୍ୟମ ଆରମ୍ଭ କରାଯାଇ ବିଭିନ୍ନ କ୍ରୀଡ଼ା ସଂଗଠନ ଓ ସଂସ୍ଥାମାନଙ୍କର ସହଯୋଗ ଲୋଡ଼ା ଯାଇଛି ।

## ଗଣମାଧମ, ପୋଲିସ୍ ଓ ପରିବହନ ସଂସ୍ଥାର ସହଯୋଗ ମିଳିଲେ, ରାସ୍ତା ଦୁର୍ଘଟଣା ହ୍ରାସ ପାଇବ - ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ଶ୍ରୀ ମିଶ୍ର

ଗତ ସେପ୍ଟେମ୍ବର ୨୭ ତାରିଖ ଅପରାହ୍ନରେ ହୋଟେଲ ସ୍ୱସ୍ତି ପ୍ଲାଜାଠାରେ ଓଡ଼ିଶା ମୋଟର ଯାନ ବିଭାଗ ତରଫରୁ ନୂତନ ୱେବସାଇଟ୍ ଓ ରାଜ୍ୟ ପରିବହନ କର୍ତ୍ତୃପକ୍ଷ ଏବଂ ଓଡ଼ିଶା ରାସ୍ତା ନିରାପତ୍ତା ସୋସାଇଟି, କଟକ ତରଫରୁ ଆୟୋଜିତ ରାଜ୍ୟସ୍ତରୀୟ ରାସ୍ତା ନିରାପତ୍ତା ଆଲୋଚନାଚକ୍ରକୁ ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ଶ୍ରୀ ଜୟ ନାରାୟଣ ମିଶ୍ର ଉଦ୍‌ଘାଟନ କରି କହିଲେ ଯେ ଗଣମାଧମ, ପୋଲିସ୍ ଓ ପରିବହନ ସଂସ୍ଥାର ସହଯୋଗ ମିଳିଲେ, ରାସ୍ତା ଦୁର୍ଘଟଣା ହ୍ରାସ ପାଇପାରିବ । ରାଜ୍ୟ ସରକାର ଖୁବ୍‌ଶୀଘ୍ର ଏକ ନୂତନ ପରିବହନ ନୀତି ଘୋଷଣା କରିବାକୁ ଯାଉଛନ୍ତି ବୋଲି ମନ୍ତ୍ରୀ ଶ୍ରୀ ମିଶ୍ର ସୂଚନା ଦେଇ ରାସ୍ତା ଦୁର୍ଘଟଣାକୁ ହ୍ରାସ କରିବା ନିମନ୍ତେ ପରିବହନ ନୀତିରେ ଅନେକ ପରିବର୍ତ୍ତନ ଅଣାଯିବ ବୋଲି କହିଥିଲେ । ଜନସଚେତନତା ବୃଦ୍ଧି ହେଲେ, ରାସ୍ତା ଦୁର୍ଘଟଣାକୁ ନିଶ୍ଚିତ ଭାବେ ରୋକାଯାଇ ପାରିବ । ୱେବ୍‌ସାଇଟ୍ ସଂକ୍ରାନ୍ତରେ ସେ କହିଲେ ଯେ ଏହି ୱେବ୍‌ସାଇଟ୍‌ରେ କେନ୍ଦ୍ରୀୟ ମୋଟର ଯାନ ଆଇନ ଓ ନିୟମ, ରାଜ୍ୟ ପରିବହନ ନିୟମ ଉପଲବ୍ଧ ହେବା ସହିତ ଗାଡ଼ି ରେଜିଷ୍ଟ୍ରେସନ୍ ଫର୍ମ ଓ ଅନ୍ୟାନ୍ୟ ଆନୁଷଙ୍ଗିକ କାଗଜାତ ମିଳିପାରିବ । ଜନସାଧାରଣ ଏହି ୱେବ୍‌ସାଇଟ୍ ମାଧମରେ ସେମାନଙ୍କର ଆପତ୍ତି ଅଭିଯୋଗ ବିଭାଗୀୟ ମନ୍ତ୍ରୀ, ପରିବହନ କମିଶନର ଓ ପରିବହନ ବିଭାଗକୁ ଦେଇପାରିବେ ।

ବାଣିଜ୍ୟ ଓ ପରିବହନ ବିଭାଗ ଶାସନ ସଚିବ ଶ୍ରୀ ଏନ୍.ସି. ବାସୁଦେବନ୍ ଏଥିରେ ସମ୍ମାନିତ ଅତିଥି ଭାବେ ଯୋଗ ଦେଇ ଗାଡ଼ି ଚାଳକମାନଙ୍କୁ ଉପଯୁକ୍ତ ତାଲିମ ପ୍ରଦାନ ସହ ଜନସାଧାରଣଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରାଯାଇପାରିଲେ, ରାସ୍ତା ଦୁର୍ଘଟଣା, ବହୁମାତ୍ରାରେ ହ୍ରାସ ପାଇବ ବୋଲି କହିଥିଲେ ।

ରାଜ୍ୟ ପରିବହନ କମିଶନର ଶ୍ରୀ ପ୍ରଦୀପ କୁମାର ଜେନା ଏଥିରେ ସଭାପତିତ୍ୱ କରି କହିଲେ ଯେ ରାସ୍ତା ନିରାପତ୍ତା ସରକାର ଓ ଜନସାଧାରଣଙ୍କ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ସମସ୍ୟା । ଦେଶରେ ସଡ଼କ ଦୁର୍ଘଟଣା ଓ ତଦ୍‌ଜନିତ ମୃତ୍ୟୁ ମଧ୍ୟରେ ଓଡ଼ିଶାର ସ୍ଥାନ ପ୍ରଥମ । ଖରାପ ରାସ୍ତା ଓ ଗାଡ଼ିଚାଳକମାନଙ୍କ ବେପରୁଆ ଗାଡ଼ି ଚାଳନା ଏହାର ମୁଖ୍ୟ କାରଣ ଅଟେ । ଗାଡ଼ିଚାଳକମାନଙ୍କୁ ବିନା ତାଲିମରେ ଡ୍ରାଇଭିଂ ଲାଇସେନ୍‌ସ ପ୍ରଦାନ ଯୋଗୁଁ ଏଭଳି ଦୁର୍ଘଟଣା ଘଟୁଛି । ଏହି ଦୁର୍ଘଟଣାକୁ ରୋକିବା ପାଇଁ ସ୍ୱୟଂସେବୀ ସଂସ୍ଥାମାନେ ଜନସଚେତନତା ସୃଷ୍ଟି କଲେ, ରାସ୍ତା ଦୁର୍ଘଟଣାକୁ ରୋକାଯାଇ ପାରିବ ।

ବାଣିଜ୍ୟ ଓ ପରିବହନ ବିଭାଗ ସ୍ୱତନ୍ତ୍ର ଶାସନ ସଚିବ ଶ୍ରୀ ପି.କେ. ମିଶ୍ର କହିଲେ ଯେ ରାସ୍ତା ଦୁର୍ଘଟଣା ରୋକିବା ପାଇଁ ଗାଡ଼ିଚାଳକମାନଙ୍କୁ ପ୍ରତି ତିନିବର୍ଷରେ ଥରେ ଅଧିକ ସଚେତନ ପାଠ୍ୟକ୍ରମ ତାଲିମ ଦେବା ସହିତ ଆଖି ପରୀକ୍ଷା କରାଇବା ଉଚିତ । ଗାଡ଼ି ପରିବହନ ମାଲିକ ସଂଘ ଗାଡ଼ି ଚାଳନାର ବେଗ ବିଷୟରେ ସଜାଗ ରହିଲେ, ଦୁର୍ଘଟଣାକୁ ରୋକାଯାଇ ପାରିବ । ଏଥିପାଇଁ ନିୟମିତ ଭାବେ ଗାଡ଼ିଗୁଡ଼ିକର ଯାଂଚ କାର୍ଯ୍ୟକ୍ରମ ତ୍ୱରାନ୍ୱିତ କରିବା ସରକାରଙ୍କର ମୁଖ୍ୟ କାର୍ଯ୍ୟ ଅଟେ । ଶେଷରେ ଅତିରିକ୍ତ ପରିବହନ କମିଶନର ଶ୍ରୀ କାଶୀନାଥ ସାହୁ ଧନ୍ୟବାଦ ଅର୍ପଣ କରିଥିଲେ ।




# ଶକ୍ତି - ସ୍ୱରୂପା ମା'




ସୁନୀଳ ଆକାଶରେ କେରା କେରା ଭସା ମେଘ, ପ୍ଲାବିତ ଜଳଧାରାର ସ୍ୱଚ୍ଛତା, ବାୟୁମଣ୍ଡଳରେ ନିର୍ମଳତା, ପ୍ରକୃତିର ପରିଚ୍ଛନ୍ନ ପ୍ରକାଶ କାଶତଣ୍ଡିର ଶୁଦ୍ଧ ଶୁଭ୍ର ବିକାଶ ସୂଚେଇ ଦିଏ, ଏ ପାର୍ବଣର ଋତୁ, ଅମୃତ ଦୃଷ୍ଟିରେ ପରିବ୍ୟାପ୍ତ ଜଗତସାରା । ଏ ଆସିବା ସ୍ୱାଭାବିକ । କେହି କେବେ ଏ ଅମୃତର ଧାରାକୁ ଆବାହନ ନକଲେ ବି ସମୟ ହେଲେ ସେ ଆସେ । ସଂଚରିଯାଏ ସବୁରି ପ୍ରାଣକୁ, ପୂର୍ଣ୍ଣ ଦୃଷ୍ଟିରେ ସମ୍ମୋହିତ କରି ଦିଏ ଜଳ-ସ୍ଥଳ-ଆକାଶର ବ୍ୟାପ୍ତିକୁ ।

ଏ ଶକ୍ତି-ମାତୃଶକ୍ତି, ସମ୍ମୋହିତ କରିବାର ଶକ୍ତି-ପରି ପାଳନର ଶକ୍ତି - ଜାଗତିକ ଅଭାବ ବୋଧରୁ ମୁକ୍ତ କରିବାର ଏକ ପ୍ରୟାସ ସିଦ୍ଧ ମନ୍ତ୍ରୋଚାରଣ ।

ଏ ମନ୍ତ୍ରରୁ ଜାତ ଚିନ୍ମୟୀ ଶକ୍ତି ଜଗଦ୍ଧାତ୍ରୀ, ଦୁର୍ଗତୀ ନାଶିନୀ ମା' ଦୁର୍ଗା ହିଁ ହୃଦୟ ଭିତରୁ କାମନାର ମହିଷାସୁରକୁ ବଧ କରି ମନୁଷ୍ୟୋଚିତ ଶୁଭ ଗୁଣଗୁଡ଼ିକୁ ପ୍ରକଟିତ ହେବାକୁ ସୁଯୋଗ ଦେବେ । ଭୋଗ, ବିଳାସ ଓ ସ୍ୱାର୍ଥପରତା ଘୁଞ୍ଚି ଯିବ । ତ୍ୟାଗ ଓ କ୍ଷମା ବଳରେ ସଫଳ ମଣିଷଟିଏ ପ୍ରତି ମୁହୂର୍ତ୍ତରେ ଦୁଃଖ, ଦୁର୍ଭାଗ୍ୟ ସହିତ ଲଢ଼ି ଶିଖିବ । ମଣିଷ ଭିତରୁ ଲୋଭ, ପାପ, ଅତ୍ୟାଚାର, ହିଂସା, ଦ୍ୱେଷ ଆଦି ଆସୁରିକ ଗୁଣକୁ ଜଗତଜନନୀ ମା' ଦୁର୍ଗା ନାଶ କରିବେ । ସମଗ୍ର ବିଶ୍ୱ ହେବ ମଧୁମୟ ଓ ମଙ୍ଗଳମୟ । ଆସନ୍ତୁ ଆଜି ଏ ଶାରଦୀୟ ପୂଜା ଅବସରରେ ମା' ଦୁର୍ଗାଙ୍କଠାରେ ପ୍ରାର୍ଥନା କରିବା -

''ଶରଣାଗତ ଦୀନାର୍ତ୍ତ ପରିତ୍ରାଣ ପରାୟଣେ
ସର୍ବସ୍ୟାର୍ତ୍ତିହରେ ଦେବୀ ନାରାୟଣୀ ନମସ୍ତୁତେ ।''

ଅକ୍ଟୋବର ମାସରେ - ଜାତିର ଜନକ ମହାତ୍ମା ଗାନ୍ଧୀ, ଭାରତର ପୂର୍ବତନ ପ୍ରଧାନମନ୍ତ୍ରୀ ଲାଲବାହାଦୂର ଶାସ୍ତ୍ରୀ ଓ ପୂଣ୍ୟାତ୍ମା ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ଜୟନ୍ତୀ ପାଳିତ ହେଉଥିବା ଅବସରରେ ଏ ଜାତି ସେମାନଙ୍କ ପ୍ରତି ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ଏହି ଯୋଗଜନ୍ମା ମହାପୁରୁଷଙ୍କ ସମ୍ବନ୍ଧରେ ଆମେ କେତେକ ପ୍ରବନ୍ଧ ଉତ୍କଳ ପ୍ରସଙ୍ଗରେ ସ୍ଥାନିତ କରିଛୁ ।

ବର୍ଷିୟାନ୍ ସ୍ୱାଧୀନତା ସଂଗ୍ରାମୀ ରାଜ୍ୟର ପୂର୍ବତନ ମୁଖ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ ଓ ଜନନେତା ଶ୍ରୀ ନୀଳମଣି ରାଉତରାୟଙ୍କ ପରଲୋକରେ ଓଡ଼ିଶା ତା'ର ଜଣେ ସୁଯୋଗ୍ୟ ସନ୍ତାନଙ୍କୁ ହରାଇଲା । ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ବହୁବାର କାରାବରଣ କରିଥିଲେ । ସ୍ୱାଧୀନତାର ପରବର୍ତ୍ତୀ ସମୟରେ କେନ୍ଦ୍ର ତଥା ରାଜ୍ୟରେ ବିଭିନ୍ନ ପଦପଦବୀରେ ରହି ଓଡ଼ିଶାର ଜନସାଧାରଣଙ୍କର ସେବା କରିଯାଇଛନ୍ତି । ତାଙ୍କର ଏହି ଅବର୍ତ୍ତମାନରେ ତାଙ୍କ ପରିବାରଙ୍କର ଅପୂରଣୀୟ କ୍ଷତି ଘଟିବା ସଂଗେସଂଗେ ରାଜ୍ୟର ମଧ୍ୟ ଅଭୂତପୂର୍ବ କ୍ଷତି ଘଟିଲା । 'ଉତ୍କଳ ପ୍ରସଙ୍ଗ' ତରଫରୁ ଆମେ ତାଙ୍କର ଶୋକ ସନ୍ତପ୍ତ ପରିବାରବର୍ଗଙ୍କୁ ଗଭୀର ସମବେଦନା ଜଣାଇବା ସଂଗେସଂଗେ ଦିବଂଗତ ଆତ୍ମାଙ୍କ ପୁଣ୍ୟ ସ୍ମୃତିରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ ।

ଶରତ ଚନ୍ଦ୍ର ସାମନ୍ତରାୟ

